



ନବମ କୋଣାର୍କ ନୃତ୍ୟ ଉତ୍ସବକୁ ପର୍ଯ୍ୟଟନ ଓ ସଂସ୍କୃତିମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ପ୍ରଦୀପ ଜାଳି ଉଦ୍‌ଘାଟନ କରୁଛନ୍ତି



ରମାଦେବୀ ମହିଳା ମହାବିଦ୍ୟାଳୟର ବାର୍ଷିକ ଉତ୍ସବକୁ ବିଶିଷ୍ଟ ସମାଜସେବୀ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ପ୍ରଦୀପ ଜାଳି ଉଦ୍‌ଘାଟନ କରୁଛନ୍ତି

# ଉତ୍କଳ ପ୍ରସଙ୍ଗ

୫୪ ଭାଗ ୬ ସଂଖ୍ୟା | ପୌଷ-ମାଘ | ୧୯୧୯ ଶକାବ୍ଦ ଜାନୁଆରୀ ୧୯୯୮





ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ ରେ ମୁଦ୍ରିତ ।

**ବାର୍ଷିକ ଦେୟ : ଟ ୨୦.୦୦**
**ପ୍ରତିଖଣ୍ଡ : ଟ ୨.୦୦**

# ସୂଚୀ

# ଜାତୀୟ ସଙ୍ଗୀତ

"ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶୀଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।"

# ଭାରତର ସଂଶୋଧିତ ପ୍ରସ୍ତାବନା

ଭାରତୀୟ ସମ୍ବିଧାନର ପ୍ରସ୍ତାବନା (PREAMBLE) ବା ଉପକ୍ରମଣିକା ୪୨ତମ ସମ୍ବିଧାନ ସଂଶୋଧନ ବିଲ୍ ଅନୁଯାୟୀ ୧୯୭୬ ଡିସେମ୍ବର ୧୮ ତାରିଖରୁ ସଂଶୋଧିତ ହୋଇ କାର୍ଯ୍ୟକାରୀ ହେଉଛି ।

ତାହା ହେଲା -

"ଆମେ ଭାରତର ଜନସାଧାରଣ ଭାରତକୁ ଗୋଟିଏ ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ରୂପେ ଗଠନ କରିବା ନିମିତ୍ତ ଏବଂ ଏ ଦେଶର ସମସ୍ତ ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ, ଚିନ୍ତା ଅଭିବ୍ୟକ୍ତି, ବିଶ୍ୱାସ, ଧର୍ମ ଓ ଉପାସନାର ସ୍ୱାଧୀନତା, ସାମାଜିକ ପ୍ରତିଷ୍ଠା ଓ ସୁଯୋଗ ଦିଗରେ ସମତା ହାସଲ କରିବା ତଥା ବ୍ୟକ୍ତି ବିଶେଷର ମର୍ଯ୍ୟାଦା ଓ ଜାତିର ଏକତା ଏବଂ ଅଖଣ୍ଡତା ପାଇଁ ନିଶ୍ଚିତ ବ୍ୟବସ୍ଥା କରି ସେମାନଙ୍କ ମଧ୍ୟରେ ଭ୍ରାତୃ ଭାବର ବିକାଶ ସାଧନ ନିମନ୍ତେ ଦୃଢ଼ ସଂକଳ୍ପ ହୋଇ ଆମ୍ଭମାନଙ୍କର ଏହି ସମ୍ବିଧାନ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ମାସର ଷଡ଼ବିଂଶ ଦିବସରେ ଏତଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକୃତ, ଅଧିନିୟମିତ ଓ ଆତ୍ମାର୍ପିତ କରିଛୁ ।"



# ୪୯ତମ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ
## ଓଡ଼ିଶାର ମାନ୍ୟବର ରାଜ୍ୟପାଳ
## ଶ୍ରୀ କେ.ଭି. ରଘୁନାଥ ରେଡ୍ଡୀଙ୍କ
## ବାର୍ତ୍ତା

*ପ୍ରିୟ ଭାଇ ଓ ଭଉଣୀମାନେ,*

ଆଜି ୪୯ତମ ସାଧାରଣତନ୍ତ୍ର ଦିବସର ଶୁଭ ଅବସରରେ ମୁଁ ଓଡ଼ିଶାର ଜନସାଧାରଣଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

ଜାନୁଆରୀ ୨୬ ତାରିଖ ଦିନଟି ଆମ ଦେଶର ଲୋକମାନଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ୪୮ ବର୍ଷ ପୂର୍ବେ, ୧୯୫୦ ମସିହା ଜାନୁଆରୀ ଛବିଶ ତାରିଖ ଦିନ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ହିସାବରେ ଘୋଷଣା କରିବା ଲାଗି ଆମେ, ସମଗ୍ର ଭାରତବାସୀ, ଏକ ସମ୍ବିଧାନ ପ୍ରଣୟନ କରିଥିଲେ । ସମ୍ବିଧାନ ଅନୁଯାୟୀ ଏହି ସାଧାରଣତନ୍ତ୍ର କାର୍ଯ୍ୟକରିବ ବୋଲି ୧୯୫୦ ମସିହା ଜାନୁଆରୀ ୨୬ ତାରିଖଠାରୁ ଭାରତର ସମ୍ବିଧାନ ପ୍ରଚଳିତ ହେଲା ।

ସାମାଜିକ ତଥା ଅର୍ଥନୈତିକ ନ୍ୟାୟ ପ୍ରଦାନ ମାଧ୍ୟମରେ ରାଜ୍ୟର ସବୁ ଶ୍ରେଣୀର ଲୋକମାନଙ୍କର କଲ୍ୟାଣ ପାଇଁ ଆମେ ପ୍ରତିଶ୍ରୁତିବଦ୍ଧ । ଏହି ସ୍ମରଣୀୟ ଦିବସରେ ଆମ ଦେଶର ଅସଂଖ୍ୟ ବୀର ଶହୀଦ ଓ ଦେଶପ୍ରେମୀ,ଯେଉଁମାନେ ବିଦେଶୀ ଶାସନ କବଳରୁ ଦେଶମାତୃକାକୁ ମୁକ୍ତ କରିବାଲାଗି ଚରମ ତ୍ୟାଗ କରିଥିଲେ ଏବଂ ଦୃଢ଼ ମନୋବଳ ସହିତ ନିରବଚ୍ଛିନ୍ନ ଭାବେ ସ୍ୱାଧୀନତା ସଂଗ୍ରାମ ଅବ୍ୟାହତ ରଖିଥିଲେ, ସେହିମାନଙ୍କୁ ଆଜି ସଶ୍ରଦ୍ଧ ସ୍ମରଣ କରିବା ଏକାନ୍ତ ସ୍ୱାଭାବିକ ଏବଂ ଅପରିହାର୍ଯ୍ୟ । ଆମେ ସେହି ଦକ୍ଷ ରାଷ୍ଟ୍ରନୀତିଜ୍ଞ ଓ ଆମ ସମ୍ବିଧାନର ପ୍ରଣେତାମାନଙ୍କର କୃତିତ୍ୱକୁ ଗର୍ବର ସହିତ ମନେ ପକାଇବା ଆବଶ୍ୟକ । ଆଜିର ଏହି ଦିବସରେ ପୁନର୍ବାର ଆସ୍ଥା ସ୍ଥାପନପୂର୍ବକ ଦୃଢ଼ ନିଷ୍ଠା ଓ ଉତ୍ସର୍ଗୀକୃତ ମନୋଭାବ ସହିତ ଜାତୀୟ ଲକ୍ଷ୍ୟ ହାସଲ କରିବା ଲାଗି ନେଇଥିବା ଶପଥକୁ ଆମ୍ଭମାନଙ୍କୁ ଅଧିକ ଦୃଢ଼ୀଭୂତ କରିବାକୁ ହେବ । ଜାତିର ଜନକ ମହାତ୍ମାଗାନ୍ଧୀ ଆମକୁ ଶିକ୍ଷା ଦେଇଛନ୍ତି ଯେ, ''ଆମର ପ୍ରତ୍ୟେକ ଅଧିକାର କର୍ତ୍ତବ୍ୟ ଉପରେ ପର୍ଯ୍ୟବସିତ''। ଆଜି ଆମ୍ଭମାନଙ୍କ ଲାଗି ପ୍ରକୃଷ୍ଟ ସମୟ ଆସିଛି । ଆମେ ଜାତିର ଜନକ ମହାତ୍ମାଗାନ୍ଧୀଙ୍କର ଏହି ଉପଦେଶକୁ ଆମ ଚିନ୍ତା ତଥା କାର୍ଯ୍ୟରେ ଗ୍ରହଣ କରି ଜାତିକୁ ସତ୍ୟ, ତ୍ୟାଗ, ସେବା ରୂପକ ଦୃଢ଼ ମୂଳଦୁଆ ଉପରେ ପୁନର୍ଗଠନ କରିବା ।

ମହାତ୍ମାଜୀ, ଯାହାଙ୍କୁକି ପଣ୍ଡିତ ନେହେରୁ ଆମ ପୀଢ଼ିର ଜଣେ ମହାମାନବ ରୂପେ ଅଭିହିତ କରିଥିଲେ, ସେ ଦେଶର ତତ୍କାଳୀନ କ୍ଷୟସାଧନକାରୀ ଗୋଷ୍ଠୀବିଦ୍ୱେଷ ଓ ଘୃଣାଭାବ,

ଂପ୍ରଦାୟିକତା, ହିଂସା ଏବଂ ବିଶୃଙ୍ଖଳା ରୂପକ ବିଷକ୍ରିୟା ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ ରିଥିଲେ। ଅସୀମ ତ୍ୟାଗ ବଳରେ ସେ ଆମ ଦେଶର ଧର୍ମନିରପେକ୍ଷତାର ଭିତ୍ତିଭୂମି ପ୍ରତିଷ୍ଠା ରିଥିଲେ। ତାଙ୍କର ଜୀବନ ସମସ୍ତଙ୍କ ପାଇଁ ଆଦର୍ଶ ଥିଲା । ଧର୍ମନିରପେକ୍ଷତା, ସାଂପ୍ରଦାୟିକ ଦ୍ଭାବ, ସମସ୍ତଙ୍କ ପ୍ରତି ସଦିଚ୍ଛା ଏବଂ ଦେଶ ତଥା ମାନବ ଜାତି ବିରୁଦ୍ଧରେ ସମସ୍ତ ପ୍ରକାର ଂସାର ପରିହାର, ଯାହାକି ଗାନ୍ଧିଜୀଙ୍କର ଆଦର୍ଶ ଥିଲା, ସେହିସବୁ ପ୍ରତି ଆମ୍ଭେମାନେ ନିଜକୁ ୁନଃଉତ୍ସର୍ଗୀକୃତ କରିପାରିଲେ, ତାହା ହିଁ ହେବ ଭାରତର ଏହି ମହାନ୍ ବରପୁତ୍ରଙ୍କ ପ୍ରତି ଆମର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ଇତିମଧ୍ୟରେ ୪୮ ଟି ଘଟଣା ବହୁଳ ବର୍ଷ ଅତିବାହିତ ହୋଇଯାଇଛି । ଆମ୍ଭେମାନେ ବହୁ ତିବନ୍ଧକ ଅତିକ୍ରମ କରିଛେ ଏବଂ ପୂର୍ବାପେକ୍ଷା ନିଜକୁ ଅଧିକ ଶକ୍ତିଶାଳୀ କରି ଗଢ଼ି ତୋଳିଛେ । ଣତନ୍ତ୍ରର ଭିତ୍ତି ସୁଦୃଢ଼ ହେବା ସଙ୍ଗେ ସଙ୍ଗେ ସାମାଜିକ -ଅର୍ଥନୈତିକ ପ୍ରଗତି ମଧ୍ୟ ହାସଲ ହୋଇପାରିଛି। ସମଗ୍ର ବିଶ୍ୱରେ ଆମ ଦେଶ ଏକ ସମୁନ୍ନତ ସ୍ଥାନ ଅଧିକାର କରିପାରିଛି । ଏହା ିଃସନ୍ଦେହ ଯେ, ଆମେ ହାସଲ କରିଥିବା ସଫଳତା ପ୍ରଶଂସନୀୟ, ତଥାପି ଆମକୁ ଆହୁରି ଦୀର୍ଘ ଥ ଅତିକ୍ରମ କରିବାକୁ ହେବ । ୫୦ ବର୍ଷ ସ୍ୱାଧୀନତାର ପୂର୍ତ୍ତିପାଳନ ଅବସରରେ ଆମେ ସଫଳତା ଓ ବିଫଳତାର ପର୍ଯ୍ୟାଲୋଚନା କରିବା ଲାଗି ସୁଯୋଗ ପାଇଛେ । ଏବେ ସମୟ ଆସିଛି ବିଫଳତାରୁ ଆମେ ଶିକ୍ଷାକରିବା ଏବଂ ଆମ ନାଗରିକମାନଙ୍କର, ବିଶେଷକରି ସୁଯୋଗ-ବଞ୍ଚିତ ଜନତାର ଜୀବନମାନର ଉନ୍ନତି ପାଇଁ ଅଧିକ ନିଷ୍ଠାପର ଉଦ୍ୟମ କରିବା ।

ଆମର ସ୍ୱାଧୀନତା ସଂଗ୍ରାମରେ ମହିଳାମାନେ ଏକ ଐତିହାସିକ ତଥା ବୈପ୍ଳବିକ ଭୂମିକା ଗ୍ରହଣ କରିଥିଲେ । ''ଦେଶର ସୁପରିଚାଳନା ନିମନ୍ତେ ସହଯୋଗଭିତ୍ତିକ ଗଣତନ୍ତ୍ରର ଆବଶ୍ୟକତା ରହିଛି ଯାହାକି ନାରୀ ଓ ପୁରୁଷ ମଧ୍ୟରେ ସମାନତା ଆଣି ପାରିବା ଦ୍ୱାରା ହିଁ ସମ୍ଭବ ହୋଇପାରିବ।'' ୧୯୯୬ ମସିହା ମାନବ ବିକାଶ ରିପୋର୍ଟ ଅନୁଯାୟୀ ''ନାରୀମାନଙ୍କର ଦକ୍ଷତା ବିନିଯୋଗ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ କ୍ଷମତା ପ୍ରଦାନ କରାଗଲେ ଏହା ଦେଶର ଆର୍ଥିକ ଅଭିବୃଦ୍ଧି ସହିତ ସର୍ବାଙ୍ଗୀନ ବିକାଶ ପ୍ରତି ନିଶ୍ଚିତ ରୂପେ ସହାୟକ ହେବ। ଆମର ସମାଜବାଦୀ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ, ସାଧାରଣତନ୍ତ୍ରର ଭିତ୍ତିଭୂମିକୁ ସୁରକ୍ଷିତ ରଖିବା ପାଇଁ ଆମକୁ ନିଶ୍ଚିତ ଭାବେ ଦୃଷ୍ଟି ଦେବାକୁ ପଡ଼ିବ ।

ଏହି ସାଧାରଣତନ୍ତ୍ର ଦିବସରେ ଆସନ୍ତୁ, ଆମ୍ଭେମାନେ ଜାତିର କଲ୍ୟାଣ ଲାଗି ତଥା ରାଜ୍ୟର ସର୍ବାଙ୍ଗୀନ ବିକାଶ ଲାଗି ନିଜକୁ ପୁନଃ ଉତ୍ସର୍ଗୀକୃତ କରିବା ।

ଜୟହିନ୍ଦ୍

# ୪୯ତମ ସାଧାରଣତନ୍ତ୍ର ଦିବସ ପାଳନ ଉପଲକ୍ଷେ
## ମୁଖ୍ୟମନ୍ତ୍ରୀ
# ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ
# ବାର୍ତ୍ତା



ପବିତ୍ର ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ମୁଁ ରାଜ୍ୟବାସୀ ଭାଇଭଉଣୀମାନଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା, ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସାଧାରଣତନ୍ତ୍ର ଦିବସ ଆମ ଜାତୀୟ ଜୀବନର ଏକ ମହତ୍ତ୍ୱପୂର୍ଣ୍ଣ ଦିବସ । ଆଜିକୁ ୪୮ ବର୍ଷ ତଳେ ଏହି ଦିବସରେ ଭାରତୀୟ ସଂବିଧାନ କାର୍ଯ୍ୟକାରୀ ହୋଇଥିଲା ଏବଂ ଭାରତବର୍ଷ ପୃଥିବୀର ସର୍ବବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ରରୂପେ ପରିଗଣିତ ହୋଇଥିଲା । ସେହି ଦିନ ଦେଶକୁ ସାର୍ବଭୌମ, ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରୂପେ ଗଢ଼ିତୋଳିବା ପାଇଁ ଭାରତବାସୀ ଯେଉଁ ସଂକଳ୍ପ ଗ୍ରହଣ କରିଥିଲେ ଓ ଆଦର୍ଶ ନାଗରିକ ଜୀବନ ଓ ସାମାଜିକ ଜୀବନ ପ୍ରତିଷ୍ଠା ପାଇଁ ଯେଉଁ ଦିଗ୍‌ଦର୍ଶନ ଦେଖାଇ ଥିଲେ ତାହା ଧୀରେ ଧୀରେ ରୂପାୟିତ ହୋଇଛି । ତଥାପି ସଂବିଧାନରେ ଘୋଷିତ ଆମର ଲକ୍ଷ୍ୟ ଓ ଆଦର୍ଶ ଏପର୍ଯ୍ୟନ୍ତ ପୂରଣ ହୋଇପାରି ନାହିଁ । ଗଣତାନ୍ତ୍ରିକ ମୂଲ୍ୟବୋଧ, ମୌଳିକ ଅଧିକାର, ଧର୍ମନିରପେକ୍ଷ ବିଚାରଧାରା ଓ ସାମାଜିକ ନ୍ୟାୟ ପ୍ରଦାନ କ୍ଷେତ୍ରରେ ସଂବିଧାନ ପ୍ରଣେତାମାନଙ୍କର ଯେଉଁ ସ୍ୱପ୍ନ ରହିଥିଲା, ତାକୁ ସାକାର କରିବା ପାଇଁ ଆମର ସଂକଳ୍ପକୁ ଆଜିର ଏହି ଦିବସରେ ପୁଣି ଥରେ ଦୋହରାଇବାକୁ ପଡ଼ିବ ।

ଭାରତବର୍ଷ ବହୁ ଭାଷା, ଜାତି, ବର୍ଣ୍ଣ, ସାଂସ୍କୃତିକ ଓ ସାମାଜିକ ବିବିଧତାକୁ ନେଇ ଗଠିତ । ଅନୈକ୍ୟ ମଧ୍ୟରେ ଐକ୍ୟ ହେଉଛି ଭାରତୀୟ ସଂସ୍କୃତିର ବିଶେଷତା । ହିମାଳୟଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଓ ଗୁଜୁରାଟଠାରୁ ଆସାମ ପର୍ଯ୍ୟନ୍ତ ଭାରତର ୯୦ କୋଟି ଜନସାଧାରଣ ସାଂସ୍କୃତିକ ଏକତାର ସୂତ୍ରରେ ଗୁନ୍ଥା ହୋଇଛନ୍ତି । ଜାତି, ଧର୍ମ ଓ ଭାଷା ନାଁରେ ଆମର ଭାବଗତ ଓ ସାଂସ୍କୃତିକ ଏକତାକୁ କେବେହେଲେ କ୍ଷୁଣ୍ଣ ହେବାକୁ ଦିଆଯିବା ଉଚିତ ନୁହେଁ । ପାରସ୍ପରିକ ସ୍ନେହ, ଶ୍ରଦ୍ଧା, ମୈତ୍ରୀ ଓ ଭ୍ରାତୃତ୍ୱ ଆମର ଅସଲ ସଂପଦ । ଏହାକୁ ପାଥେୟ କରି ଭାରତବର୍ଷ ପୃଥିବୀର ସର୍ବଶ୍ରେଷ୍ଠ ରାଷ୍ଟ୍ର ରୂପେ ନିଶ୍ଚୟ ମୁଣ୍ଡ ଟେକିବ ।

ଆମ ଦେଶ ସ୍ୱାଧୀନତା ହେବାର ପଚାଶ ବର୍ଷ ପୂର୍ଣ୍ଣ ହୋଇଛି । ଆମେ ଚଳିତ ବର୍ଷ ଭାରତ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛୁ । ଜାତିର ଜନକ ମହାତ୍ମାଗାନ୍ଧୀ ଓ ଅନ୍ୟ ରାଷ୍ଟ୍ରନାୟକମାନେ କ୍ଷୁଧା, ଦାରିଦ୍ର୍ୟ ଓ ଅସମାନତାକୁ ଦୂର କରି ରାମ ରାଜ୍ୟ ପ୍ରତିଷ୍ଠାର ଯେଉଁ ସ୍ୱପ୍ନ ଦେଖିଥିଲେ ତାହା ଏବେ ବି ଅଧୁରା ରହିଛି । ଅଜ୍ଞତା, ନିରକ୍ଷରତା, ଦାରିଦ୍ର୍ୟ, ପୁଷ୍ଟିହୀନତା,

ଯୌତୁକ, ବଧୂ ନିର୍ଯ୍ୟାତନା ଆଦି ସାମାଜିକ କୁପ୍ରଥା ଓ କୁସଂସ୍କାର ସମାଜକୁ ଘେରି ରହିଛି । ପାରସ୍ପରିକ କଳହ, କ୍ଷୁଦ୍ରତା, ସଂକୀର୍ଣ୍ଣତା ଓ ଭେଦଭାବର ଉର୍ଦ୍ଧ୍ୱକୁ ଆମେ ଉଠିପାରିନାହୁଁ । ଆଞ୍ଚଳିକତା, ଭାଷାଗତ୍ ବିବାଦ, ଜାତିଆଣ ମନୋଭାବ ଓ ଧର୍ମଗତ ବିଦ୍ୱେଷ ଆମକୁ କବଳିତ କରି ରଖିଛି । ଏଗୁଡ଼ିକୁ ସମୂଳେ ଦୂର କରି ଏକ ସୁସ୍ଥ ସମାଜ ପ୍ରତିଷ୍ଠା କରିବା ପାଇଁ ଐକ୍ୟବଦ୍ଧ ସଂଗ୍ରାମ ଲୋଡ଼ା । ସ୍ୱାଧୀନତା ଆନ୍ଦୋଳନ ସମୟରେ ଦେଶବାସୀଙ୍କ ଭିତରେ ଯେଉଁ ଉତ୍ସାହ, ଦେଶଭକ୍ତି ଓ ତ୍ୟାଗ ମନୋଭାବ ସୃଷ୍ଟି ହୋଇଥିଲା ସେହି ଉଚ୍ଚତର ମୂଲ୍ୟବୋଧଗୁଡ଼ିକୁ ପୁଣି ଥରେ ଜାଗ୍ରତ କରିବାକୁ ପଡ଼ିବ । ରାଷ୍ଟ୍ରର ପୁନର୍ନିର୍ମାଣ ପାଇଁ ଭାରତର ପ୍ରାଚୀନ ସାଂସ୍କୃତିକ ଐତିହ୍ୟ ଓ ଗୌରବମୟ ପରମ୍ପରା ଆମକୁ ନିଶ୍ଚିତଭାବେ ପ୍ରେରଣା ଯୋଗାଇବ ।

ଆଜିର ଏହି ପବିତ୍ର ଦିବସ ପାଳନ ଅବସରରେ ରାଜ୍ୟବାସୀ ଭାଇଭଉଣୀମାନଙ୍କୁ ମୋର ବିନମ୍ର ନିବେଦନ- ସମସ୍ତ ପ୍ରକାର ଭେଦଭାବକୁ ପଛରେ ପକାଇ ଦେଇ ଐକ୍ୟବଦ୍ଧ ଭାବରେ ଦେଶର ଏକତା ଓ ସଂହତିର ସୁରକ୍ଷା ସହ ଭାରତବର୍ଷକୁ ପ୍ରଗତି ପଥରେ ଆଗେଇ ନେବା ପାଇଁ ସମସ୍ତେ ସଂକଳ୍ପବଦ୍ଧ ହୁଅନ୍ତୁ ।

**ଜୟହିନ୍ଦ୍**



୪୯ତମ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ
ରାଜ୍ୟ ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ

# ଶ୍ରୀ ନେତ୍ରାନନ୍ଦ ମଲ୍ଲିକଙ୍କ ବାର୍ତ୍ତା

୪୯ତମ ପବିତ୍ର ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ମୁଁ ଆପଣମାନଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି । ସାଧାରଣତନ୍ତ୍ର ଦିବସ ଦେଶ ପ୍ରଗତିର ଏକ ମାଇଲଖୁଣ୍ଟ ସଦୃଶ । ସ୍ୱାଧୀନତାର ଦୁଇ ବର୍ଷ ପାଞ୍ଚ ମାସ ଏଗାର ଦିନ ପରେ ଭାରତ ଏକ ସାର୍ବଭୌମ, ଗଣତାନ୍ତ୍ରିକ ରାଷ୍ଟ୍ର ଭାବରେ ଘୋଷିତ ହେଲା । ଏହି ଦିବସ ଆମକୁ ଆତ୍ମସମୀକ୍ଷା କରିବାକୁ ସୁଯୋଗ ଦେବା ସଙ୍ଗେ ସଙ୍ଗେ, ଆମେ ଆମ ଜାତୀୟ ଲକ୍ଷ୍ୟ ପଥରେ କେତେ ଦୂର ଅଗ୍ରସର ହୋଇ ପାରିଛୁ, ସେ ବିଷୟରେ ଆମଁକୁ ସମ୍ୟକ୍ ଧାରଣା ଦେଇଥାଏ । ସମ୍ବିଧାନରେ ଯେଉଁ ମୌଳିକ ଅଧିକାର ରହିଛି, ତାହା ଜନସାଧାରଣଙ୍କ କର୍ତ୍ତବ୍ୟଭିତ୍ତିକ । ଦୁର୍ଭାଗ୍ୟବଶତଃ ଆମେ ଆମର କର୍ତ୍ତବ୍ୟଗୁଡ଼ିକୁ ଭୁଲି ଯାଇ ସଦାସର୍ବଦା ନିଜର ଅଧିକାର ପ୍ରତି ଅଧିକ ସଚେତନ ହୋଇ ଉଠୁଛୁ । କିନ୍ତୁ ବର୍ତ୍ତମାନ ଏଭଳି ମନୋଭାବ ପରିହାର କରି ଦେଶକୁ ସତ୍ୟ, ତ୍ୟାଗ, ସାଧୁତା ଓ ସେବାର ଏକ ଦୃଢ଼ ଭିତ୍ତିଭୂମି ଉପରେ ପୁନଃ ନିର୍ମାଣ କରିବାର ଏହା ହେଉଛି ପ୍ରକୃଷ୍ଟ ସମୟ । ଆମେ ଯେତେବେଳେ ଏକବିଂଶ ଶତାବ୍ଦୀର ନିକଟବର୍ତ୍ତୀ ହେବାକୁ ଯାଉଛେ, ଆମକୁ ଦେଶରୁ ବିଚ୍ଛିନ୍ନତାବାଦୀ ଶକ୍ତି ଯଥା-ଆଞ୍ଚଳିକତାବାଦ, ଜାତିବାଦ, ସାଂପ୍ରଦାୟିକତାବାଦ ଆଦି ଯାହାକି ଆମ ଜାତୀୟ ସଂହତି, ଐତିହ୍ୟବୋଧ ଓ ପରମ୍ପରାକୁ ଦୁର୍ବଳ କରିବାର ଆଶଙ୍କା ରହିଛି, ସେସବୁକୁ ଲୋପ କରି ଏକ ଶକ୍ତିଶାଳୀ ଓ ସଂଗଠିତ ଭାରତବର୍ଷ ନିର୍ମାଣ କରିବାକୁ ପଡ଼ିବ ।

ପ୍ରାକୃତିକ ସଂପଦରେ ପରିପୂର୍ଣ୍ଣ ଓ ମାନବ ସମ୍ବଳରେ ଓଡ଼ିଶା ଏକ ସମୃଦ୍ଧ ରାଜ୍ୟ । ଆଜିର ଏହି ପବିତ୍ର ସାଧାରଣତନ୍ତ୍ର ଦିବସରେ ଆସନ୍ତୁ, ଆମେ ଶପଥ ନେବା ଯେ, ଏଣିକି ଭେଦଭାବ ଓ ସଂକୀର୍ଣ୍ଣ ମନୋଭାବ ତ୍ୟାଗ କରି ନୂତନ ଉନ୍ମାଦନାରେ ଓଡ଼ିଶାକୁ ଏକ ସମୃଦ୍ଧ ଓ ଶକ୍ତିଶାଳୀ ରାଜ୍ୟରେ ପରିଣତ କରିବା, ଯାହା ଦ୍ୱାରା ଭାରତର ଅଗ୍ରଣୀ ରାଜ୍ୟମାନଙ୍କ ମଧ୍ୟରେ ଓଡ଼ିଶା ଅନ୍ୟତମ ଅଗ୍ରଣୀ ରାଜ୍ୟ ଭାବରେ ଉପଯୁକ୍ତ ମାନ୍ୟତା ପାଇପାରିବ ।

ଜୟହିନ୍ଦ

# ସଂଗ୍ରାମୀଙ୍କୁ ସମ୍ମାନ : ଓଡ଼ିଶାବାସୀଙ୍କ ସମ୍ମାନ

*ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ*

ସ୍ୱାଧୀନତା ସଂଗ୍ରାମ ଚିରଦିନ ପାଇଁ ଆମ୍ଭମାନଙ୍କର ପ୍ରେରଣାର ଉତ୍ସ ହୋଇ ରହିବ । ସ୍ୱାଧୀନତାଠାରୁ ଅନ୍ୟ କୌଣସି ମୂଲ୍ୟବାନ ଜିନିଷ ନାହିଁ । ସ୍ୱାଧୀନତା ପୂର୍ବରୁ କିଭଳି ଭାବରେ ବ୍ରିଟିଶ୍ ଶାସନ ଥିଲା, କିଭଳି ଭାବରେ ଗଡ଼ଜାତ ଶାସନ ଥିଲା, ଲୋକଙ୍କର କହିବାର ଅଧିକାର ନଥିଲା, ଲେଖିବାର ଅଧିକାର ନଥିଲା, ଛାତ୍ରମାନେ ସ୍କୁଲ କଲେଜରୁ ରଷ୍ଟିଗେଟ୍ ହେଉଥିଲେ, ଜେଲ ବରଣ କରୁଥିଲେ, ଆନ୍ଦୋଳନରେ ଯୋଗଦେଲେ, ସଭାସମିତିରେ ଯୋଗଦେଲେ-ଏସବୁ ସ୍ୱାଧୀନତା ପରେ ଯେଉଁମାନଙ୍କର ଜନ୍ମ, ସେମାନେ ଜେବେ କଳ୍ପନା କରି ପାରିବେ ନାହିଁ । ଯେଉଁମାନଙ୍କ ଯୋଗୁଁ ଆଜି ସ୍ୱାଧୀନୋତ୍ତର ଭାରତବର୍ଷରେ ଆମ୍ଭେମାନେ ବିଭିନ୍ନ ଅଧିକାର ପାଇଲେ, ଯେଉଁମାନଙ୍କର ତ୍ୟାଗରେ ଏ ସ୍ୱାଧୀନତା ଆସିଛି, ସେମାନଙ୍କୁ ଅତି କୃତଜ୍ଞତାର ସହିତ ସ୍ମରଣ କରିବା ଦରକାର । ଭାରତବର୍ଷରେ ଯେଉଁମାନେ ହସି ହସି ଫାଶିଖୁଣ୍ଟରେ ଚଢ଼ିଛନ୍ତି, ଯେଉଁମାନେ କୌଣସି ଅନ୍ୟାୟ, ଅତ୍ୟାଚାରର ସାମନା କରିବାକୁ ପଛେଇ ନାହାନ୍ତି, ପ୍ରତିଶୋଧ ନେବାକୁ ପଛେଇ ନାହାନ୍ତି, ସେମାନେ ଆମର ନମସ୍ୟ । ଜାଲିଆନା ୱାଲା ହତ୍ୟାକାଣ୍ଡର ନାୟକ ଡାୟାରଙ୍କ ପ୍ରତିଶୋଧ ନେଇଥିଲେ ଏ ଦେଶରବୀର ଶହୀଦ । ସେ ତାଙ୍କର ବିଚାର ବେଳେ ମୁକ୍ତ କଣ୍ଠରେ କହିଥିଲେ, ମୁଁ ଜଣେ ଆତତାୟୀର ପ୍ରତିଶୋଧ ନେଇଛି । ଜନ୍ମଭୂମିକୁ ଏହାଠାରୁ ବଳି ବଡ଼ ଦାନ କିଛି ହୋଇ ନପାରେ । ଲାଲପତ ରାୟଙ୍କୁ ସାଇମନ କମିଶନ ବର୍ଜନ ବେଳେ ମାଡ଼ ହେଲା । ସେହିପରି ତାର ପ୍ରତିଶୋଧ ନିଆଗଲା । କୌଣସି କ୍ଷେତ୍ରରେ ଭାରତୀୟ ଯୁବକ ଦେଶର ଆତ୍ମସମ୍ମାନକୁ ବଳିଦେବା ପାଇଁ ଚେଷ୍ଟା କରିନାହିଁ । ଯେତେବେଳେ ଆହ୍ୱାନ ଆସିଛି, ସେ ନିଜର ଆତ୍ମବଳି ଦେଇ ଦେଶର ଆତ୍ମସମ୍ମାନ ରକ୍ଷା କରିଛି । ମହାତ୍ମା ଗାନ୍ଧିଙ୍କ ଡ଼ାକରାରେ ୧୯୪୨ ଆନ୍ଦୋଳନ ବେଳେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଶହୀଦଗଣ ମାତୃଭୂମିର ମୁକ୍ତି ପାଇଁ ପ୍ରାଣ ବିସର୍ଜନ ଦେଇଛନ୍ତି । ସ୍ୱାଧୀନ ଭାରତ ଦେଖିବାକୁ ସେମାନେ ରହିଲେ ନାହିଁ । କିନ୍ତୁ ସେମାନଙ୍କର ଆତ୍ମବଳି ପାଇଁ ଆଜି ଆମେ ଗର୍ବିତ ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜନ୍ମ ହୋଇଛି ଓଡ଼ିଶାର କଟକ ସହରରେ । ଦେଶର ସ୍ୱାଧୀନତା ପାଇଁ ସବୁଠାରୁ ମହାନ୍ ଦାନ ହେଉଛି ତାଙ୍କର । ଭାରତର ସ୍ୱାଧୀନତା ଆସିବାର ଯଦି କେତୋଟି କାରଣ ଥାଏ, ତା'ଭିତରୁ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଗଠିତ ଆଜାଦ୍ ହିନ୍ଦ୍ ଫୌଜ ଅନ୍ୟତମ । ଭାରତୀୟ ସୈନ୍ୟ ବାହିନୀ ଭିତରେ ଏହା ଏକ ବିଦ୍ରୋହର ବହ୍ନି ଜାଗରିତ କରିଥିଲା ।

ମହାତ୍ମା ଗାନ୍ଧୀ ବାରମ୍ବାର ଓଡ଼ିଶାକୁ ଆସିଥିଲେ । ସେ ମଧ୍ୟ ଓଡ଼ିଶାବାସୀଙ୍କୁ ଜାଗରିତ କରିବାରେ ବହୁତ ସାହାଯ୍ୟ କରିଥିଲେ ।

ପଣ୍ଡିତ ଗୋପବନ୍ଧୁ ଦାସ କଂଗ୍ରେସକୁ ଓଡ଼ିଶାକୁ ଆଣିଥିଲେ । ସେତେବେଳେ ସମ୍ବଲପୁରଠାରୁ ଆରମ୍ଭ କରି କଟକ, ବାଲେଶ୍ୱର, ଗଞ୍ଜାମ ପର୍ଯ୍ୟନ୍ତ ବହୁ ବ୍ୟକ୍ତି କଂଗ୍ରେସରେ ଯୋଗଦେଇ ଥିଲେ । ସମ୍ବଲପୁର ଜିଲ୍ଲାରେ ଚନ୍ଦ୍ରଶେଖର ପଟ୍ଟନାୟକ, ଉପକୂଳବର୍ତ୍ତୀ ଜିଲ୍ଲାରେ ହରେକୃଷ୍ଣ ମହତାବ, ଭାଗିରଥୀ ମହାପାତ୍ର, ନବକୃଷ୍ଣ ଚୌଧୁରୀ, ଗଞ୍ଜାମର ନିରଞ୍ଜନ ପଟ୍ଟନାୟକ ଏମାନେ ସମସ୍ତେ ୧୯୨୦ ମସିହାରେ ନାଗପୁର ଅଧିବେଶନରେ ଯୋଗ ଦେବା ପାଇଁ ଯାଇଥିଲେ । ପରେ ପରେ ଯେତେ ଆନ୍ଦୋଳନ ହୋଇଥିଲା, ସେ ଆନ୍ଦୋଳନରେ ହଜାର ହଜାର ଯୁବକ ଜେଲ୍ ଯାଇଥିଲେ । ଲକ୍ଷ୍ମଣ ନାଏକ ଫାଶୀ ଖୁଣ୍ଟରେ ଚଢ଼ିବା ପାଇଁ ପଛେଇ ନଥିଲେ ।

ମୃତ୍ୟୁ ପୂର୍ବରୁ ସେ ଯେଉଁ ଗୀତ ଲେଖିଥିଲେ, ତାହା ଏବେ ମଧ୍ୟ ଆମ୍ଭମାନଙ୍କୁ ଉତ୍ସାହିତ କରିବ । ଯେଉଁଦିନ ସେ ଜେଲ୍‌ରେ ଫାଶୀ ପାଇଲେ, ତା' ପୂର୍ବଦିନ ରାତିରେ ସେ ଲେଖିଥିଲେ, ଆଜି ଭାରତ ମାତାର ମୁକ୍ତି ପାଇଁ ମୁଁ ଶହୀଦ ହେଲି । ଏହାଠାରୁ ବଳି ବଡ଼କଥା କିଛି ନାହିଁ । ଇଂରେଜ ରାଜତ୍ୱ ସହିତ ଓଡ଼ିଶାର ଜନସାଧାରଣ କେବେହେଲେ ସମଝୋତା କରିନଥିଲେ । ସେଥିପାଇଁ ସେମାନଙ୍କୁ ବହୁତ ଦୁଃଖ କଷ୍ଟ ଭୋଗ କରିବାକୁ ହୋଇଥିଲା । ଇଂରେଜ ରାଜତ୍ୱ ଆସିବା ପରେ ପରେ ଖୋର୍ଦ୍ଧା ରାଜବିଦ୍ରୋହ, ତା'ପରେ ପରେ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ପାଇକ ଏବଂ ବୀର ସୁରେନ୍ଦ୍ର ସାଏଙ୍କ ସଶସ୍ତ୍ର ବିପ୍ଳବ । ଭାରତୀୟ ସୈନ୍ୟବାହିନୀରେ ଓଡ଼ିଶାର ଲୋକଙ୍କୁ ନିଆଗଲା ନାହିଁ । ସବୁଠି ରେଜିମେଣ୍ଟ ରହିଲା । କିନ୍ତୁ ଓଡ଼ିଶାର ରେଜିମେଣ୍ଟ ରହିଲା ନାହିଁ; ପାଇକ ବାହିନୀ ରହିଲା ନାହିଁ । ତା'ର ଏକମାତ୍ର କାରଣ ହେଲା ଓଡ଼ିଶାର ଲୋକମାନଙ୍କ ବିଦ୍ରୋହ । ଘୁମୁସର ବିଦ୍ରୋହ ଫଳରେ କନ୍ଧମାନଙ୍କୁ ବ୍ରିଟିଶ ସୈନ୍ୟବାହିନୀରେ ନିଆଗଲା ନାହିଁ । ପାଇକ ମାନଙ୍କୁ ନିଆଗଲା ନାହିଁ ।

ବ୍ରିଟିଶ୍ ଶାସନ କାଳରେ ଓଡ଼ିଶା କିଛି ପାଇଲା ନାହିଁ । କେବଳ ଗରିବରୁ ଗରିବ ହୋଇ ରହିଲା । ସବୁଠାରୁ ବ୍ରିଟିଶ ରାଜତ୍ୱର କ୍ରୁର ଉପହାସ ହେଉଛି ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ । ଏସବୁ ସତ୍ତ୍ୱେ ସ୍ୱାଧୀନତା ଲାଭ ପରେ ଆମେ ଆଜି ଯେଉଁ ସୁଯୋଗ ପାଉଛେ ସେ ସୁଯୋଗର ସଦ୍‌ବ୍ୟବହାର କରିବା ଦରକାର । ଯେଉଁମାନେ ଶହୀଦ ହୋଇଛନ୍ତି, ଯେଉଁମାନେ ସଂଗ୍ରାମ କରିଛନ୍ତି, ସମସ୍ତଙ୍କ ପ୍ରତି ଆମେ ସମ୍ମାନ ଦେଖେଇବା ଦରକାର । ଆମେ ଦେଖିବା ଦରକାର, ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ, ସେମାନଙ୍କୁ ଆମେ ଯେପରି କୌଣସି ମତେ ଅସମ୍ମାନିତ ହେବାକୁ ଦେବା ନାହିଁ । ସେମାନଙ୍କର ସମ୍ମାନ ହେଉଛି ଓଡ଼ିଶାବାସୀଙ୍କର ସମ୍ମାନ ।

୧୯୯୭ ନଭେମ୍ବର ୧୯ ଜାତୀୟ ଏକତା ଦିବସ (ଇନ୍ଦିରା ଗାନ୍ଧିଙ୍କ ଜନ୍ମତିଥି) ଉପଲକ୍ଷେ ସୂଚନା ଭବନଠାରେ ଅନୁଷ୍ଠିତ ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଭାଷଣରୁ ।

## ସ୍ୱାଧୀନତା ସଂଗ୍ରାମୀ ଦିବସ ମହୋତ୍ସବ

ଗତ ଜାନୁଆରୀ ୩ ତାରିଖ ଦିନ ସ୍ଥାନୀୟ ସ୍ୱାଧୀନତା ସଂଗ୍ରାମୀ ଭବନଠାରେ ରାଜ୍ୟ ସ୍ୱାଧୀନତା ସଂଗ୍ରାମୀ ସମିତି ଆନୁକୂଲ୍ୟରେ ଆୟୋଜିତ ଏକାଦଶ ସ୍ୱାଧୀନତା ସଂଗ୍ରାମୀ ଦିବସ ମହୋତ୍ସବରେ ଓଡ଼ିଶାର ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ ମୁଖ୍ୟ ଅତିଥିରୂପେ ଯୋଗ ଦେଇ ଏହି ମହୋତ୍ସବକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳ ନବ ଉତ୍କଳର ନିର୍ମାତା ଡ଼ଃ ହରେକୃଷ୍ଣ ମହତାବଙ୍କ ତିରୋଧାନ ଦିବସକୁ ସ୍ୱାଧୀନତା ସଂଗ୍ରାମୀ ଦିବସ ମହୋତ୍ସବ ଭାବେ ପାଳନ ପରିପ୍ରେକ୍ଷୀରେ ତାଙ୍କର ସ୍ମୃତି ଚାରଣ କରି କହିଲେ ଯେ ଡ଼ଃ ମହତାବ ଥିଲେ ଜଣେ ଏଭଳି ବହୁମୁଖୀ ପ୍ରତିଭାର ଅଧିକାରୀ, ଯାହାଙ୍କର ବିଷୟରେ ଯେତେ ଗୁଣଗାନ କଲେ ମଧ୍ୟ ତାହା ଯଥେଷ୍ଟ ନୁହେଁ । ସେ ଏକ ଅନୁଷ୍ଠାନ, ଏକ ସର୍ବଗୁଣ ସଂପନ୍ନ ବ୍ୟକ୍ତିତ୍ୱ । ସେ ଆହୁରି କହିଲେ ଯେ ଭାରତର ସ୍ୱାଧୀନତା ପାଇଁ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଯେଉଁ ମହାପୁରୁଷମାନେ ଉତ୍ସର୍ଗୀକୃତ ଭାବେ ଆତ୍ମବଳିଦାନ ଦେଇ ଶହୀଦ ହୋଇଯାଇଛନ୍ତି, ସେମାନଙ୍କର ନୀତି ଓ ଆଦର୍ଶରେ ବର୍ତ୍ତମାନର ଯୁବପୀଢ଼ି ଅନୁପ୍ରାଣିତ ହେବା ଉଚିତ । ଭାରତ ସ୍ୱାଧୀନତାର ୫୦ ବର୍ଷ ପୂର୍ତ୍ତି ପାଳନ କରୁଥିବା ବେଳେ ଅନେକ କ୍ଷେତ୍ରରେ ପ୍ରଗତି ହାସଲ କରିଥିଲେ ମଧ୍ୟ ଆଶାନୁରୂପ ହୋଇପାରିନାହିଁ । କାରଣ ଦେଶର କ୍ରମବର୍ଦ୍ଧିଷ୍ଣୁ ଜନ ବିସ୍ଫୋରଣ ଓ ନୈତିକ ମୂଲ୍ୟବୋଧର ଅବକ୍ଷୟ ଯୋଗୁଁ ଆଜି ଦେଶ ଏକ ବିପଦ ଜନକ ପରିସ୍ଥିତିର ସମ୍ମୁଖୀନ ହେବାକୁ ଯାଉଛି । ସ୍ୱାଧୀନତା ସଂଗ୍ରାମୀମାନେ ଦେଶର ଏକତା ଓ ସାର୍ବଭୌମତ୍ୱ ବଜାୟ ରଖିବା ପାଇଁ ଆଜିର ଯୁବପୀଢ଼ିକୁ ନୂତନ ଦିଗ୍‌ଦର୍ଶନ ଦେବାକୁ ଶ୍ରୀ ବିଶ୍ୱାଳ ଆହ୍ୱାନ ଦେଇଥିଲେ । ଏହି ଅବସରରେ ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳ ସ୍ୱାଧୀନତା ସଂଗ୍ରାମୀ ଯୁବ ସାହିତ୍ୟ ତରଫରୁ ପ୍ରକାଶିତ 'ବାନର ସେନା' ପୁସ୍ତକଟିକୁ ଉନ୍ମୋଚନ କରିଥିଲେ ।

ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ତଥା ଅବକାରୀ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୁରେଶ ରାଉତରାୟ ଡ଼ଃ ମହତାବଙ୍କ ସ୍ମୃତି ଚାରଣ କରି ନବ ଉତ୍କଳ ନିର୍ମାଣରେ ଡ଼ଃ ମହତାବଙ୍କ ଅତୁଳନୀୟ ଅବଦାନ ରହିଛି ବୋଲି କହିବା ସଙ୍ଗେ ସଙ୍ଗେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଭତ୍ତା ବୃଦ୍ଧି କରିବା ପାଇଁ ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱାଳଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ଏହି ମହୋତ୍ସବରେ ମଣିପୁରର ପୂର୍ବତନ ରାଜ୍ୟପାଳ ତଥା ସର୍ବଭାରତୀୟ ସ୍ୱାଧୀନତା ସଂଗ୍ରାମୀ ସମିତିର ଅଧ୍ୟକ୍ଷ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ଅଧ୍ୟକ୍ଷତା କରି ଡ଼ଃ ମହତାବଙ୍କ କର୍ମମୟ ଜୀବନ ଉପରେ ଆଲୋକପାତ କରିବା ସଙ୍ଗେ ସଙ୍ଗେ ସାମ୍ପ୍ରତିକ ପରିସ୍ଥିତିରେ ଦେଶର ଅଖଣ୍ଡତା ଅକ୍ଷୁଣ୍ଣ ରଖିବା ପାଇଁ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ସମେତ ଯେଉଁମାନେ ଶହୀଦ ହୋଇଯାଇଛନ୍ତି, ସେମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ପାଇଁ ପରାମର୍ଶ ଦେଇଥିଲେ ।

ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ବିଧାୟକ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ରବୀନ୍ଦ୍ର ମୋହନ ଦାସ ଓ ଶ୍ରୀ ରାମ ପ୍ରସାଦ ମହାନ୍ତି ପ୍ରମୁଖ ଯୋଗ ଦେଇ ଡ଼ଃ ମହତାବଙ୍କ ବହୁମୁଖୀ ପ୍ରତିଭାର ସ୍ମୃତି ଚାରଣ କରିଥିଲେ ।

# ପ୍ରଗତି ପଥେ ଭାରତ

ଶ୍ରୀ ପଠାଣି ପଟ୍ଟନାୟକ

### ମହାତ୍ମାଗାନ୍ଧୀଙ୍କର ସ୍ୱପ୍ନର ଭାରତ

୧୯୨୧ ମସିହାରେ ଓଡ଼ିଶା ବୋଲି ସ୍ୱତନ୍ତ୍ର ପ୍ରଦେଶଟିଏ ନଥିଲା । ଓଡ଼ିଆମାନଙ୍କର ଭାଗ୍ୟ ଗୁଣ୍ଡା ହୋଇଥାଏ ବିହାର ପ୍ରଦେଶ ସହିତ । ଏତଦ୍‌ବ୍ୟତୀତ ତତ୍କାଳୀନ ମାଡ୍ରାଜ ପ୍ରଦେଶ, ମଧ୍ୟ ପ୍ରଦେଶ ଓ ବଙ୍ଗପ୍ରଦେଶରେ ଲକ୍ଷ ଲକ୍ଷ ଓଡ଼ିଆଭାଷୀ ବିଚ୍ଛିନ୍ନ ହୋଇ ନାନା ଅବହେଳା ଓ ବୈମାତୃକ ବ୍ୟବହାରର ସମ୍ମୁଖୀନ ହେଉଥାଆନ୍ତି । ଓଡ଼ିଆମାନେ ଆନ୍ଦୋଳନ କରି ଜାଣନ୍ତି ନାହିଁ ବୋଲି ଭାରତର ବଡ଼ଲାଟ ଲର୍ଡ଼ କର୍ଜନ ମତ ପ୍ରକାଶ କରିଥିଲେ । ଏହିପରି ସନ୍ଧିକ୍ଷଣରେ ମହାତ୍ମାଗାନ୍ଧୀ ଭାରତୀୟ ରାଜନୀତିରେ ନେତୃତ୍ୱ ଗ୍ରହଣ କରି ଓଡ଼ିଶାକୁ ପରିଦର୍ଶନରେ ଆସିଥିଲେ ଆମର ସମସ୍ୟାକୁ ପ୍ରତ୍ୟକ୍ଷରେ ଅନୁଭବ କରିବାପାଇଁ । ସେ ଅତ୍ୟନ୍ତ ବିକଳ ହୋଇ ଲେଖିଥିଲେ - ''ଓଡ଼ିଶାରେ କଙ୍କାଳର ଦୃଶ୍ୟ ଦେଖିବି ବୋଲି ମୁଁ ପ୍ରସ୍ତୁତ ଥିଲି । କିନ୍ତୁ ଯାହା ଦେଖିଲି, ତାହା ଆହୁରି ଭୀଷଣ । ସେହି ଅସ୍ଥି ଚର୍ମସାର ସ୍ତ୍ରୀପୁରୁଷ ଆଉ ପିଲାମାନଙ୍କର କରୁଣ ଚେହେରା କେବେ ବି ଭୁଲିବାର ନୁହେଁ । ସେମାନେ ଚିତ୍କାର କରି କହୁଥିଲେ, ଆମେ ଖାଦ୍ୟ ଚାହୁଁ । ଏହିଭଳି ଲୋକଙ୍କର ପାଖରେ ସ୍ୱରାଜ୍ୟର ଅର୍ଥ କଣ ଥାଇପାରେ ?''

ସ୍ୱାଧୀନତାର ଆଜି ପଚାଶବର୍ଷ ପୂର୍ତ୍ତି ଉତ୍ସବ ପାଳନ କରାଯାଉଛି । ବିଗତ କେତେବର୍ଷ ଧରି ଓଡ଼ିଶାର ପଶ୍ଚିମାଞ୍ଚଳରେ ମରୁଡ଼ିର ଆର୍ତ୍ତନାଦ ଜନମାନସକୁ ଅସ୍ଥିର ଓ ବିଚଳିତ କରି ରଖିଅଛି । ଏହି ପ୍ରାକୃତିକ ବିପ୍ରାତରୁ ଏବେ ସୁଦ୍ଧା ଲୋକମାନେ ଉଦ୍ଧାର ପାଇବାର ବାଟ ଦେଖିପାରିନାହାନ୍ତି । କେବଳ ଓଡ଼ିଶା କାହିଁକି, ଭାରତର ବହୁ ଅଞ୍ଚଳରେ ଦରିଦ୍ର ଜନସାଧାରଣଙ୍କର ବିକଳ ପରିଣତି ଆଜି ଜାତୀୟ ଅଭିଶାପରେ ପରିଣତ ହୋଇଅଛି । ଦାରିଦ୍ର୍ୟର ସୀମାରେଖା ତଳେ ଭାରତର କୋଟି କୋଟି ଲୋକ ଏବେ ମଧ୍ୟ ବ୍ୟସ୍ତ ବିକଳ ହୋଇ ଜୀବନ ବିତାଇବାରେ ଲାଗିଛନ୍ତି । ଭାରତୀୟ ଜାତୀୟତାର ପ୍ରଧାନ ମାନ୍ତ୍ରୀକ ସ୍ୱାମୀ ବିବେକାନନ୍ଦଙ୍କର ଭାରତ ପାଇଁ ସ୍ୱପ୍ନ ଥିଲା ଏହିପରି - '' Let new India arise - out of the peasants cottage, grasping the plough; out of the huts of the fisherman, the cobbler and the sweeper, let her spining from the grocer's shop, from beside the over of the fritter - seller, Let her emanate from the factory, from marts and from markets. Let her emerge from groves and forests, from hills and mountains. ''

ଅର୍ଦ୍ଧଶତାବ୍ଦୀଧରି ସ୍ୱାଧୀନ ଭାରତର ଇତିହାସରେ ଅଭାବନୀୟ ପରିବର୍ତ୍ତନ ବିଶ୍ୱବାସୀଙ୍କର ଦୃଷ୍ଟି ଆକର୍ଷଣ କରିଛି ବୋଲି ସ୍ୱୀକାର କରିବାକୁ ହେବ । ମାତ୍ର ଏହା ସତ୍ତ୍ୱେ କୋଟି କୋଟି ଭାରତବାସୀ ଏବେ ମଧ୍ୟ ଦରିଦ୍ର, ନିରକ୍ଷର, ଶୋଷିତ ଓ ଅବହେଳିତ । ସମାଜର ମୁଷ୍ଟିମେୟ ଲୋକ ଅଧିକାଂଶ ପୁଞ୍ଜିର ଅଧିକାରୀ ହୋଇଛନ୍ତି ଏବଂ ଶାସନ କଳକୁ ନିୟନ୍ତ୍ରଣ କରିବାରେ ଲାଗିଛନ୍ତି । ହାଅନ୍ନ ଯାହାର ସମସ୍ୟା, ସର୍ବନିମ୍ନ ଶିକ୍ଷା ଓ ସାମାଜିକ ସୁବିଧାରୁ ଯେ ବଞ୍ଚିତ, ସ୍ୱାଧୀନତାର ମୂଲ୍ୟ ସେ କଣ ବୁଝିବ ? ଗାନ୍ଧିଜୀ ଯଥାର୍ଥରେ ''ସ୍ୱରାଜ୍ୟ''ର ସ୍ୱପ୍ନ ଦେଖିଥିଲେ -

''Mere withdrawal of the English is not independence. It means the conciousness in the average villager that he is the maker of his own destiny, he is his own legislator through his chosen representatives." (Young India- Feb. 13. 1930,)

ଗୋରା ଇଂରେଜମାନେ ବିଦାୟ ନେଇ ତାଙ୍କ ସ୍ଥାନରେ କଳାସାହେବମାନେ ଦେଶର ଶାସନ ଡ଼ୋରୀ ହାତରେ ରଖିଛନ୍ତି । ଭାରତ ହେଉଛି ପୃଥିବୀର ସର୍ବବୃହତ୍ ଗଣତନ୍ତ୍ର ରାଷ୍ଟ୍ର । ଭାରତର ପଡ଼ୋଶୀ ରାଜ୍ୟମାନଙ୍କରେ ବାରମ୍ବାର ସାମରିକ ବିପ୍ଳବ ହୋଇ ଗଣତନ୍ତ୍ର ବିପନ୍ନ ହୋଇଥିଲାବେଳେ ଅତ୍ୟନ୍ତ ଆଶ୍ୱାସନାର ବିଷୟ ଯେ ଭାରତୀୟ ରାଷ୍ଟ୍ରତନ୍ତ୍ରରେ ଗଣତନ୍ତ୍ର ସୁଦୃଢ଼ ଆସନ ଅଧିକାର କରିଅଛି । ଭାରତର କେତେକ ପଡ଼ୋଶୀ ରାଜ୍ୟରେ ରାଜତନ୍ତ୍ର, ସାମରିକତନ୍ତ୍ର ଓ ଏକଛତ୍ରବାଦ ରାଜତ୍ୱ କରୁଥିବା ସମୟରେ ବିଶାଳ ଭାରତବର୍ଷରେ ଗଣତନ୍ତ୍ରର ପରୀକ୍ଷା ଅତ୍ୟନ୍ତ ଉଲ୍ଲେଖନୀୟ । ଏହି ଦେଶରେ ୧୮ ବର୍ଷ ବୟସର ନାଗରିକଗଣ ଭୋଟ ଅଧିକାର ପାଇବା ପାଇଁ ଯୋଗ୍ୟ ହୋଇଛନ୍ତି ।

ଗଣତନ୍ତ୍ରର ବିଜୟ ସତ୍ତ୍ୱେ ଏହିଁରେ ନାନା ଦୋଷ ଦୁର୍ବଳତା ଚିନ୍ତାଶୀଳ ଲୋକମାନଙ୍କୁ ବିଚଳିତ କରିଥାଏ । ଗଣତନ୍ତ୍ର ହେଉଛି ବହୁ ମତର ଶାସନ । ଆମ ଦେଶରେ ପଞ୍ଚାୟତ ରାଜର ପରୀକ୍ଷା ଚାଲିଛି । ମାତ୍ର ତାହା ସଂପୂର୍ଣ୍ଣ ସଫଳ ହୋଇ ପାରି ନାହିଁ । ଏହି ସଂପର୍କରେ ଜଣେ ପାଶ୍ଚାତ୍ୟ ଚିନ୍ତାନାୟକ କହିଥିଲେ - '' The Control of the Organisation of power by the Common man." (Lindsay) ବାସ୍ତବିକ ସାଧାରଣ ଲୋକଙ୍କ ହାତକୁ ଏ ପର୍ଯ୍ୟନ୍ତ କ୍ଷମତା ଆସିପାରି ନାହିଁ ।

ନିର୍ବାଚନ ଫଳାଫଳ ଯେ ପ୍ରକୃତ ପକ୍ଷେ ଲୋକମତର ପରିଚାୟକ ହେଉନାହିଁ, ଏହି ବିଷୟରେ ଚିନ୍ତା କରିବାର ସମୟ ଆସିଯାଇଛି । ନିର୍ବାଚନ ରଣାଙ୍ଗନରେ ଦିନକୁ ଦିନ ଅପରାଧ ପ୍ରବଣତା ଏବଂ ଅପରାଧୀମାନଙ୍କର ପ୍ରଭାବ ଅନୁଭୂତ ହେଉଅଛି । ବହୁ ଅଭିଯୁକ୍ତ ଅପରାଧୀ ବର୍ତ୍ତମାନ ଲୋକସଭା ଏବଂ ପ୍ରାଦେଶିକ ଆସେମ୍ବ୍ଲିମାନଙ୍କରେ ପ୍ରତିନିଧି ହେବାର ଗୌରବ ଲାଭ କରିଛନ୍ତି । ଅଧିକ ସଂଖ୍ୟାରେ ସ୍ୱାଧୀନ ପ୍ରାର୍ଥୀ ନିର୍ବାଚନ ଭଳି ଗଣତନ୍ତ୍ରକୁ ପ୍ରହସନରେ ରୂପାନ୍ତରିତ କରିବା ପାଇଁ ଯତ୍ନବାନ । ଅର୍ଥବଳ ଓ ବାହୁବଳର ଅପପ୍ରୟୋଗ ହେବା ଯୋଗୁ ପ୍ରକୃତ ଜନମତ ପ୍ରତିଫଳିତ ହୋଇ ପାରୁନାହିଁ ବୋଲି ଆଶଙ୍କା ହୋଇଥାଏ । ତେବେ ଏସବୁ ଦୁର୍ବଳତା ସତ୍ତ୍ୱେ ଗଣତନ୍ତ୍ରର ଭବିଷ୍ୟତ ଯେ ମହିମାମଣ୍ଡିତ ହେବ, ଏଥିରେ ସନ୍ଦେହର ଅବକାଶ ରହେ ନାହିଁ ।

ସ୍ୱାଧୀନ ଭାରତର ଉଲ୍ଲେଖଯୋଗ୍ୟ ଅବଦାନ ହେଉଛି ଦୁର୍ଭିକ୍ଷ ବିରୁଦ୍ଧରେ ସଫଳ ସଂଗ୍ରାମ । ଇଂରେଜ ରାଜତ୍ୱ କାଳରେ ଏହି ମହାନ ଦେଶ ବାରମ୍ବାର ଦୁର୍ଭିକ୍ଷ ଦ୍ୱାରା ପୀଡ଼ିତ ହୋଇଥିବା ଜଣାଯାଏ । ୧୯୪୩ ମସିହାରେ ଶେଷଥର ପାଇଁ ବ୍ୟାପକ ଦୁର୍ଭିକ୍ଷ ଦେଖାଯାଇଥିଲା । ସ୍ୱାଧୀନ ଭାରତବର୍ଷରେ ସବୁଜ ବିପ୍ଳବ ସଂଘଟିତ ହୋଇ ଆମେ ଖାଦ୍ୟ ଶସ୍ୟରେ ସ୍ୱାବଲମ୍ବୀ ହୋଇ ପାରିଛୁ । ଅଥଚ ପରାଧୀନତା କାଳରେ ଅତ୍ୟାବଶ୍ୟକ ଖାଦ୍ୟଦ୍ରବ୍ୟ ପାଇଁ ମଧ୍ୟ ଭାରତ ବିଦେଶ ଉପରେ ନିର୍ଭର କରୁଥିଲା ।

ବହୁକାଳଯାବତ ଏହି ଦେଶରେ ରାଜନ୍ୟପ୍ରଥା ରାଜପଣ କରୁଥିଲା । ସାମନ୍ତବାଦୀ ସମାଜବ୍ୟବସ୍ଥାରେ ଜନସାଧାରଣ ଶୋଷିତ ଓ ଲାଞ୍ଛିତ ହେଉଥିଲେ । ଭାରତ ବିଭାଜନବେଳେ ଏହି ରାଜନ୍ୟମଣ୍ଡଳୀ ନିଜ ନିଜ ଅଞ୍ଚଳରେ ସ୍ୱାଧୀନତାର ସ୍ୱପ୍ନ ଦେଖୁଥିଲେ । ଇଂରେଜ କୂଟନୀତି ଏହି ଦେଶକୁ ଅସଂଖ୍ୟ ଭାଗରେ ଖଣ୍ଡ ଖଣ୍ଡ କରି ଦେବା ପାଇଁ ଚକ୍ରାନ୍ତ କରିଥିଲା । ମାତ୍ର ସ୍ୱାଧୀନ ଭାରତର ନେତୃବୃନ୍ଦଙ୍କ ବିଚକ୍ଷଣତା ଯୋଗୁ ବହୁକାଳର ରାଜନ୍ୟପ୍ରଥାକୁ ଲୋପ କରାଯାଇ ପାରିଥିଲା । ଅଭିଜାତ ସାମନ୍ତଗୋଷ୍ଠୀ ସାଧାରଣ ସ୍ତରକୁ ଓହ୍ଲାଇ ଆସିବାକୁ ବାଧ୍ୟ ହୋଇଥିଲେ । ୧୯୬୯ ମସିହା ଜୁଲାଇ ଉଣେଇଶ ତାରିଖରେ ବ୍ୟାଙ୍କ ଜାତୀୟକରଣ ଏ ଦେଶର ଅର୍ଥନୀତି କ୍ଷେତ୍ରରେ ଥିଲା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ପଦକ୍ଷେପ । ସାଧାରଣ ଦରିଦ୍ର ପ୍ରଜାକୁଳଙ୍କ ଦ୍ୱାରଦେଶରେ ବ୍ୟାଙ୍କମାନଙ୍କର ସେବା ସୁଲଭ ହୋଇ ଅର୍ଥନୀତିର ବିକାଶରେ ସହାୟକ ହୋଇ ପାରିଥିଲା ।

ସ୍ୱାଧୀନ ଭାରତବର୍ଷ ନିଜର ବୈଦେଶିକ ନୀତି ନିୟନ୍ତ୍ରଣ କରି ଆନ୍ତର୍ଜାତିକ ସ୍ୱୀକୃତି ଓ ସମ୍ମାନ ଲାଭ କରିବା ପାଇଁ କ୍ଷମ ହୋଇପାରିଛି । ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ପଞ୍ଚଶୀଳ ନୀତି ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଥିଲା । ସେହିପରି ଭାରତ ରାଜଧାନୀରେ ଏସିଆର ରାଷ୍ଟ୍ରପୁଞ୍ଜର ସମ୍ମିଳନୀ ଶୀତଳଯୁଦ୍ଧ କାଳରେ ଆନୟନ କରିଥିଲା ଏକ ଅଭିନବ ସମ୍ଭାବନା । ଅନଗ୍ରସର ଦେଶମାନଙ୍କୁ ବୃହତ୍ ଶକ୍ତି ଯେ ତାବେଦାରୀ କରିବା ପାଇଁ ଚେଷ୍ଟିତ ଥିଲେ, ଏସିଆଟିକ୍ କନଫରେନ୍ସ ଥିଲା ତାହାର ଦୃଢ଼ ପ୍ରତିବାଦ । ଭାରତର ନିରପେକ୍ଷ ବୈଦେଶିକ ନୀତି ବୃହତ୍ ଶକ୍ତିମାନଙ୍କୁ ବିଚଳିତ କରିଦେଲା । ଔପନିବେଶିକ ଶକ୍ତିଗୁଡ଼ିକ କଳାଗୋରା ଭେଦନୀତି ପ୍ରୟୋଗ କରି ବହୁକାଳ ପର୍ଯ୍ୟନ୍ତ ଆଫ୍ରିକାବାସୀମାନଙ୍କୁ ପଦାନତ କରି ରଖିଥିଲେ । ସ୍ୱାଧୀନ ଭାରତ ଏହି ଭେଦନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲା । ପ୍ରାଚୀନ ଭାରତ ଦେଶରେ ସାମାଜିକ ଜୀବନରେ ନାନା କୁସଂସ୍କାର ଓ ଜାତିଗତ ଭାବ ରାଜପଣ କରୁଥିଲା । ସ୍ୱାଧୀନ ଭାରତରେ ଦଳିତ ଜାତିମାନଙ୍କର ଜାଗରଣ ଓ ସ୍ୱାଭିମାନ ପ୍ରତିଷ୍ଠା ଅତ୍ୟନ୍ତ ଯୁଗାନ୍ତକାରୀ ପଦକ୍ଷେପ ବୋଲି ସ୍ୱୀକାର କରିବାକୁ ହେବ ।

ଇଂରେଜ ଶାସକବର୍ଗ ଇଚ୍ଛା କରି ଭାରତକୁ ଏକ କୃଷିପ୍ରଧାନ ଦେଶଭାବରେ ସୀମିତ ରଖିଥିଲେ । ଆମର ଖଣିଜ ସଂପଦ ଆହରଣ କରି ସେମାନେ ଶିଳ୍ପପ୍ରଧାନ ହୋଇ ଆମକୁ ଶୋଷଣ କରି ଚାଲିଥିଲେ । ସୁଖର କଥା, ସ୍ୱାଧୀନ ଭାରତରେ ଶିଳ୍ପର ବିକାଶ ଅତ୍ୟନ୍ତ ଉଲ୍ଲେଖନୀୟ । ଏହା ପୃଥିବୀର ଅନ୍ୟତମ ଶିଳ୍ପପ୍ରଧାନ ଦେଶଭାବରେ ଗଣ୍ୟ ହେବାକୁ ଯୋଗ୍ୟ ହୋଇଅଛି । ବିଭିନ୍ନ ନଦୀବନ୍ଧ ଯୋଜନା ଜରିଆରେ କେବଳ ଜଳସଂପଦର ଉପଯୁକ୍ତ ବିନିଯୋଗ ହୋଇନାହିଁ, ବିଜୁଳି ଉତ୍ପାଦନ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ସମ୍ଭବ ହୋଇ ଦେଶର ବୃହତ୍ ଶିଳ୍ପ ବିକାଶରେ ସହାୟକ ହୋଇପାରିଛି । ପରାଧୀନ ଭାରତରେ ସାମାନ୍ୟ ଛୁଞ୍ଚିଟିଏ ମଧ୍ୟ ଉତ୍ପାଦନ କରିବାର ଅଧିକାର ମିଳିନଥିଲା । ସ୍ୱାଧୀନ ଭାରତ ଆଜି ନିଜର କାରିଗରୀ କୌଶଳ ଜରିଆରେ ଶକ୍ତିଶାଳୀ କ୍ଷେପଣାସ୍ତ୍ର ଉତ୍ପାଦନ କରିବା ପାଇଁ କେବଳ କ୍ଷମ ହୋଇନାହିଁ, ଗ୍ରହାନ୍ତରକୁ ରକେଟ ପ୍ରେରଣ କରିବାର ଯୋଗ୍ୟତା ମଧ୍ୟ ହାସଲ କରିପାରିଛି ।

ସ୍ୱାଧୀନ ଭାରତରେ ବିଜ୍ଞାନ କୌଶଳର ପ୍ରଗତି ପୃଥିବୀର ଦୃଷ୍ଟି ଆକର୍ଷଣ କରି ପାରିଛି । ଭାରତ ୧୯୭୪ ମସିହା ମେ ମାସ ଅଠର ତାରିଖରେ ରାଜସ୍ଥାନର ପୋଖାରନଠାରେ ତାର ପ୍ରଥମ ପରମାଣୁ ପରୀକ୍ଷା ଆରମ୍ଭ କରିଥିଲା । ବର୍ତ୍ତମାନ ଭାରତ ହେଉଛି ପୃଥିବୀର ଷଷ୍ଠତମ ପରମାଣୁଶକ୍ତି ରାଷ୍ଟ୍ର ।

ସେହିପରି ୧୯୭୫ ମସିହା ଏପ୍ରିଲ ମାସ ଉଣେଇଶ ତାରିଖରେ ଭାରତ ସୋଭିୟତ ରାଷ୍ଟ୍ରର ରକେଟ ସାହାଯ୍ୟରେ ମହାଶୂନ୍ୟ ଯାନ 'ଆର୍ଯ୍ୟଭଟ୍ଟ' ଅନ୍ତରୀକ୍ଷକୁ ପ୍ରେରଣ କରିଥିଲା । ମହାଶୂନ୍ୟଯାନ ପ୍ରେରଣ କ୍ଷେତ୍ରରେ ଭାରତ ହେଉଛି ପୃଥିବୀରେ ଏକାଦଶତମ ରାଷ୍ଟ୍ର । ୧୯୭୭-୭୮ ମସିହାରେ ଶ୍ରୀହରିକୋଟାଠାରେ ମହାଶୂନ୍ୟ ନିକ୍ଷେପଣ କେନ୍ଦ୍ର ପ୍ରତିଷ୍ଠା କରାଯାଇ ପାରିଛି । ଯୁଦ୍ଧ କ୍ଷେପଣାସ୍ତ୍ର ଉତ୍ପାଦନ କ୍ଷେତ୍ରରେ ମଧ୍ୟ ଭାରତ ପଛରେ ପଡ଼ିନାହିଁ । ଅଗ୍ନି, ନାଗ, ତ୍ରିଶୂଳ, ଆକାଶ ପ୍ରଭୃତି କ୍ଷେପଣାସ୍ତ୍ରର ସଫଳ ପରୀକ୍ଷା ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ସ୍ୱାଧୀନ ଭାରତର କେତେକ ପ୍ରଗତିଶୀଳ ପଦକ୍ଷେପର ଉଦାହରଣ ଏହିପରି । ୧୯୭୦ ସାଲରେ ଆମ ଦେଶରେ ୫୮, ୧୧୭ ସ୍କୁଟର ଉତ୍ପାଦନ ହେଉଥିଲାବେଳେ ୧୯୯୬ ସାଲରେ ତାହା ହୋଇଛି ୧୩, ୨୨, ୩୦୦ । ୧୯୪୭ ସାଲରେ ମଟରଗାଡ଼ି ଉତ୍ପାଦନ ସଂଖ୍ୟା ୨୧, ୬୫୮ ଥିଲାବେଳେ ୧୯୯୬ରେ ତାହା ହେଉଛି

୩,୪୮,୨୪୦ । ସେହିପରି ୧୯୫୦ ସାଲରେ ଭାରତରେ ସାଇକେଲର ଉତ୍ପାଦନ ସଂଖ୍ୟା ଥିଲା ୧୦,୪୯,୦୦୦; ୧୯୯୬ ସାଲରେ ତାହା ହୋଇଛି ୮୯,୦୭,୦୦୦ । ଭାରତରେ ହାରାହାରି ଜଣପିଛା ବାର୍ଷିକ ଆୟ ୧୯୫୦-୫୧ରେ ଟ.୨୩୮.୮୮ଙ୍କା ଥିଲାବେଳେ ୧୯୯୫-୯୬ରେ ହାରାହାରି ଆୟର ପରିମାଣ ହେଉଛି ଟ.୩୨୧.୪୧ଙ୍କା ।

ସାମାଜିକ ଜୀବନରେ ମଧ୍ୟ ଅଭାବନୀୟ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଥାଏ । ଆମ ଦେଶରେ ପରାଧୀନ କାଳରେ ଶିଶୁଙ୍କର ମୃତ୍ୟୁହାର ବହୁତ କମିଯାଇଛି ଏବଂ ବଞ୍ଚିବାର ବୟସ ଆଶାତୀତ ବୃଦ୍ଧିଲାଭ କରିଛି । ୧୯୪୭ ସାଲରେ ହାରାହାରି ବୟସସୀମା ଥିଲା ୨୯ ବର୍ଷ । ମାତ୍ର ବର୍ତ୍ତମାନ ୧୯୯୭ ସାଲରେ ଭାରତୀୟଙ୍କର ହାରାହାରି ବୟସସୀମା ହୋଇଛି ଅଠାବନ ବର୍ଷ ।

ପରାଧୀନ ଭାରତବର୍ଷ ଶିକ୍ଷାକ୍ଷେତ୍ରରେ ଥିଲା ଅତ୍ୟନ୍ତ ଅନଗ୍ରସର । ଔପନିବେଶିକ ଶକ୍ତି ଇଚ୍ଛାକରି ଏହି ବିଭାଗକୁ ଅବହେଳା କରିଥିଲେ । ଶିକ୍ଷାର ପ୍ରସାର ହେଲେ ବିଦେଶୀ ଶକ୍ତି ବିରୁଦ୍ଧରେ ଜାଳେ ଜନଜାଗରଣ ବଳିଷ୍ଠ ହେବ ଏବଂ ଅର୍ଥନୈତିକ ଶୋଷଣ ସମ୍ଭବ ହେବନାହିଁ, ସେଥିପାଇଁ ସେମାନେ ଭାରତୀୟମାନଙ୍କର ଶିକ୍ଷାପ୍ରତି ଅବହେଳା ପ୍ରଦର୍ଶନ କରୁଥିଲେ । ୧୯୪୭ ସାଲରେ ଭାରତରେ ବିଶ୍ୱବିଦ୍ୟାଳୟ ସଂଖ୍ୟା ଥିଲା କୋଡ଼ିଏ । ମାତ୍ର ୧୯୯୭ ସାଲରେ ତାହାର ସଂଖ୍ୟା ହେଉଛି ୨୨୦ ଏବଂ ସମୁଦାୟ ମହାବିଦ୍ୟାଳୟ ସଂଖ୍ୟା ହେଉଛି ଆଠହଜାର ।

ସ୍ୱାଧୀନ ଭାରତରେ ନାରୀମୁକ୍ତି ଆନ୍ଦୋଳନର ସାଫଲ୍ୟ ମଧ୍ୟ ଲକ୍ଷ୍ୟ କରିବାର କଥା । କେତେକ ସମାଜରେ ପ୍ରାକ୍-ସ୍ୱାଧୀନତା କାଳରେ ଝିଅ ଜନ୍ମକୁ ଅଶୁଭ ବୋଲି ବିଚାର କରାଯାଉଥିଲା । ପୈତୃକ ସମ୍ପତ୍ତିରେ କନ୍ୟାମାନଙ୍କର କୌଣସି ଅଧିକାର ନଥିଲା । ବିଧବାମାନେ ବିବାହ କରିପାରୁ ନଥିଲେ । ସେମାନଙ୍କୁ ଗୃହକୋଣରେ ଏକ ପ୍ରକାର ବନ୍ଦିନୀର ଜୀବନ ବିତାଇବାକୁ ହେଉଥିଲେ । ସେମାନଙ୍କର ଉଚ୍ଚଶିକ୍ଷାକୁ ଉତ୍ସାହିତ କରାଯାଉନଥିଲା । ପୁରୁଷମାନଙ୍କ ସହିତ ସମାନ ଯୋଗ୍ୟତା ଥାଇ ମଧ୍ୟ ସେମାନେ ସମାନ ସୌଭାଗ୍ୟର ଅଧିକାରୀ ହୋଇ ପାରୁନଥିଲେ । ପୁରୁଷମାନେ ବହୁ ବିବାହର ସୁଯୋଗ ଗ୍ରହଣ କରି ନାରୀକୁ କେବଳ ଭୋଗ୍ୟ ଦ୍ରବ୍ୟ ଭାବରେ ବ୍ୟବହାର କରୁଥିଲେ ।

ମାତ୍ର ସ୍ୱାଧୀନ ଭାରତରେ ନାରୀମାନେ ପୁରୁଷମାନଙ୍କ ପରି ବିଭିନ୍ନ କର୍ମକ୍ଷେତ୍ରରେ ସମାନ ଅଧିକାର ଉପଭୋଗ କରୁଛନ୍ତି । ପୈତୃକ ସମ୍ପତ୍ତିରେ ସେମାନଙ୍କର ଅଧିକାର ଆଇନ ସମ୍ମତ ହୋଇଅଛି । ସେମାନେ ଛାଡ଼ପତ୍ର ଅଧିକାର ମଧ୍ୟ ପ୍ରାପ୍ତ ହୋଇଛନ୍ତି । ପୁରୁଷମାନଙ୍କର ବହୁବିବାହକୁ ଆଇନ ଦ୍ୱାରା ବାରଣ କରାଯାଇଅଛି । ସ୍ୱାଧୀନ ଭାରତର ନାରୀମାନେ ଆଜିର ସମାଜ ଜୀବନରେ ବଳିଷ୍ଠ ଭୂମିକା ଗ୍ରହଣ କରି ନିଜର ଶକ୍ତି ଓ ପ୍ରତିଭାର ପରିଚୟ ଦେଉଅଛନ୍ତି ।

ସ୍ୱାଧୀନ ଭାରତର ଏହି ଅଭାବନୀୟ ପ୍ରଗତି ସତ୍ତ୍ୱେ ନାନା କଳୁଷିତ ସମସ୍ୟାର ଘେରରେ ଦେଶବାସୀ ଅତ୍ୟାଚାରିତ ଓ ଉତ୍ପୀଡ଼ିତ । ଗୋଟିକ ପରେ ଗୋଟିଏ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହୋଇଥିଲେ ହେଁ ଦେଶର ଦାରିଦ୍ର୍ୟ ଦୂର ହୋଇପାରିନାହିଁ । ଦିନକୁ ଦିନ ଧନୀ, ଅଧିକ ଧନୀ ହେବାରେ ଲାଗିଛି ଏବଂ ଦରିଦ୍ରମାନେ ଦରିଦ୍ରତର ହୋଇ ଦୁଃଖ ଭୋଗ କରୁଅଛନ୍ତି । ଦେଶର ଉତ୍ପାଦନ ବୃଦ୍ଧିକୁ ଅସ୍ୱୀକାର କରାଯାଇନପାରେ, ମାତ୍ର ବଣ୍ଟନ ବ୍ୟବସ୍ଥାର ଅବ୍ୟାପାର ଯୋଗୁ ଜନସାଧାରଣ ବିଶେଷ ଉପକୃତ ହୋଇପାରୁ ନାହାନ୍ତି । ଆୟର ପରିମାଣ ବୃଦ୍ଧି ଘଟିଥିଲେ ହେଁ ମୁଦ୍ରାର ମୂଲ୍ୟ ଅତିରିକ୍ତ ହ୍ରାସ ହୋଇଯାଉଥିବାରୁ ଲୋକମାନଙ୍କର ଦୁର୍ଦ୍ଦଶାର ସୀମା ନାହିଁ ।

ସବୁଠାରୁ ଦୁର୍ଭାଗ୍ୟର ବିଷୟ ହେଉଛି ଏହି ବିଶାଳ ଦେଶରେ ଜାତୀୟ ଚରିତ୍ରର ଅଭାବ । ଜାତୀୟ ସଂହତି ଆଜି ବିପଦାପନ୍ନ । ଧର୍ମଗତ ଅସହଣିକତା ଓ ସାଂପ୍ରଦାୟିକ ସଂଘର୍ଷର ବିଷମଞ୍ଜି ସମଗ୍ର ଦେଶରେ ବିସ୍ତାରିତ ହେବାରେ ଲାଗିଛି । ସ୍ୱାର୍ଥପର ରାଜନୀତିଜ୍ଞମାନେ ଏହାକୁ ଉତ୍ସାହିତ କରିବାକୁ କୁଣ୍ଠିତ ହେଉନାହାନ୍ତି । ବହୁ ଅଞ୍ଚଳରେ ଜାତିଆଣ ଓ ଗୋଷ୍ଠିଗତ ସଂଘର୍ଷ ଓ ସନ୍ତ୍ରାସବାଦ ଜନଜୀବନକୁ କଳୁଷିତ କରିବାରେ ଲାଗିଛି । ଦୁର୍ନୀତିର ଭସ୍ମାସୁର ଚତୁର୍ଦ୍ଦିଗରେ ବାହୁ ପ୍ରସାରଣ କରି ସମାଜକୁ ଉତ୍ପୀଡ଼ନ କରୁଅଛି । ଅପରାଧ ପ୍ରବଣତା ଓ କଳାଧନର ସାମ୍ରାଜ୍ୟ ଦେଶର ଅର୍ଥନୀତିକୁ ପଙ୍ଗୁ କରିଦେବା ପାଇଁ ବଦ୍ଧପରିକର । ନଗର ଜୀବନର ରାଜପଥରେ ନାରୀ ନିଜକୁ ନିରାପଦ ମନେ କରୁନାହିଁ । ଯୌତୁକ ଜନିତ ହତ୍ୟାକାଣ୍ଡ, ନାରୀଧର୍ଷଣ, ମଦ୍ୟର ପ୍ରସାର, କ୍ଷମତାର ଅପପ୍ରୟୋଗ, ପ୍ରଦୂଷଣ, ଅପରାଧୀମାନଙ୍କର ନିରଙ୍କୁଶ ବ୍ୟଭିଚାର ପ୍ରଭୃତି ନାନା ଅଭିଶାପରେ ଆମର ସମାଜ ଜୀବନ ଜର୍ଜରିତ । ଉପଯୁକ୍ତ ଜନଜାଗରଣ ସମ୍ଭବ ନହେଲେ ସମାଜରୁ ଏହି କାଳିମା ଦୂର ହେବନାହିଁ ।

ଗଣତନ୍ତ୍ର ଶାସନରେ ଲୋକମାନେ ନିଜର ଅଧିକାର ବିଷୟରେ ସଚେତନ ହେବା ଆବଶ୍ୟକ । ଯେଉଁଦିନ ଉପଯୁକ୍ତ ଶିକ୍ଷା ପ୍ରଭାବରେ ସାଧାରଣ ଭୋଟଦାତାଗଣ ଲୋକ ପ୍ରତିନିଧିମାନଙ୍କୁ ନିୟନ୍ତ୍ରଣ କରି ପାରିବେ, ସେହିଦିନ କ୍ଷମତା ରାଜନୀତିରେ ଅପପ୍ରୟୋଗ ହେବ ନାହିଁ ଏବଂ ଦେଶରେ ଗାନ୍ଧିଜୀଙ୍କ ସ୍ୱପ୍ନର "ରାମରାଜ୍ୟ" ପ୍ରତିଷ୍ଠିତ ହୋଇପାରିବ । ଏହି ପ୍ରସଙ୍ଗରେ ମହାତ୍ମା ଗାନ୍ଧୀଙ୍କର ଗୋଟିଏ କଥା ଅତ୍ୟନ୍ତ ସ୍ମରଣୀୟ - "Real swaraja will come not by the acquisition of authority by a few but by the acquisitionof the capacity by all to resist authority when it is abused. In other words Swaraja is to be obtained by educating the masses to a sense of their capacity to regulate and control authority."

ଅବସର ପ୍ରାପ୍ତ ଅଧ୍ୟକ୍ଷ
କେନ୍ଦୁଝର କଲୋନୀ, କନିକା ରୋଡ୍
କଟକ -୮, ଓଡ଼ିଶା

# ଏକବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ

ଶ୍ରୀ କୃଷ୍ଣ ଚରଣ ବେହେରା

ଚଳିତ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଶ୍ରୀ ଅରବିନ୍ଦ (୧୮୭୨-୧୯୫୦) ମାନବୀୟ ବିବର୍ତ୍ତନର ସ୍ୱାଭାବିକ ଗତିରେ 'ଅତିମାନସ' ଅଭିବ୍ୟକ୍ତି ହେବ ବୋଲି କହିଥିଲେ । ସେହିପରି ମନୀଷୀ ଡକ୍ଟର ରାଧାକୃଷ୍ଣନ୍ (୧୮୮୮-୧୯୭୫) କହିଥିଲେ- ପତନୋନ୍ମୁଖ ମଣିଷ ସମାଜକୁ ରକ୍ଷା କରିବା ସକାଶେ ବିଷ୍ଣୁ ପୁରାଣ-କଥିତ 'କଳ୍କୀ' ଅବତାର ପାଇଁ ଅପେକ୍ଷା କରିବାକୁ ହେବ, ଯେ' ମାନବ ଜାତିର ବୈଷୟିକ ପ୍ରଗତି ସଙ୍ଗେ ସାଙ୍ଗେ ନୈତିକ ଓ ଆଧ୍ୟାତ୍ମିକ ଉନ୍ନତିର ପ୍ରତୀକ ରୂପେ ଆବିର୍ଭୂତ ହେବେ । 'ଅତିମାନସ' ବା କଳ୍କୀ'ଙ୍କର ଆବିର୍ଭାବ ହେଉଛି କି ନାହିଁ, କାଳକ୍ରମେ ତାହା ଜଣାପଡ଼ିବ । କିନ୍ତୁ ଦୂରଦର୍ଶୀ ପ୍ରାଜ୍ଞ ମନୀଷୀଙ୍କର ମଣିଷ-ସମାଜର ଏହି ଯେଉଁ ଭବିଷ୍ୟତ ଉତ୍ତରଣ ସଂପର୍କରେ ବିଚାରଥିବ, ଦୂରଦୃଷ୍ଟି ସଂପନ୍ନ ଆଶା ଓ ବିଶ୍ୱାସ ତାହାର ଉଜ୍ଜ୍ୱଳ ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ । ସାହିତ୍ୟର ଭବିଷ୍ୟତ ସଂପର୍କରେ ଆମେ ସେହିପରି କିଛି ଆଶା ଓ ବିଶ୍ୱାସ ପ୍ରକଟ କରିପାରୁଁ, ଯାହାର ବିଚାର-ବିବେଚନା ବର୍ତ୍ତମାନ ସାଂସ୍କୃତିକ ପରିସ୍ଥିତି ଭିତିରେ କରାଯାଇପାରେ । ଏପରି ବିଚାର-ବିବେଚନାର ଉପଯୋଗିତା ସଂପର୍କରେ ଆପଣମାନେ ପ୍ରଶ୍ନ ଉଠାଇ ପାରନ୍ତି । ମଣିଷ-ସମାଜର ବିବର୍ତ୍ତନ ହୋଇଥାଏ ଉନ୍ନତି ବା ଉତ୍କର୍ଷ ଦିଗରେ, ଅବନତି ବା ଅପକର୍ଷ ଦିଗରେ ନୁହେଁ । ତେଣୁ ସାହିତ୍ୟ-ସଂସ୍କୃତିର ଭବିଷ୍ୟତ ଉତ୍ତରଣ ମଧ୍ୟ ଉନ୍ନତି ବା ଉତ୍କର୍ଷ ଅଭିମୁଖୀ ବୋଲି ମନେ ହୁଏ । ସାହିତ୍ୟର ସେହି ଭବିଷ୍ୟତ ଉତ୍ତରଣ ଉପରେ ଲକ୍ଷ୍ୟ ରଖି ବର୍ତ୍ତମାନ ଆମର ସକଳ ପ୍ରକାର ସାଂସ୍କୃତିକ ଅଭୀପ୍ସା ଓ କର୍ମଧାରା ପରିଚାଳିତ କରିବା ଉଚିତ ହେବ ନାହିଁ ? ଆସନ୍ତା ଶତକ ପାଇଁ ସାହିତ୍ୟକର୍ମର ପ୍ରସ୍ତୁତି ଦିଗରେ ଆମର ଏହି ବିଚାର ବିମର୍ଶ କିଛି ସାହାଯ୍ୟ କରିପାରେ ।

ପ୍ରଥମେ ସାହିତ୍ୟର ଗ୍ରାହକତା ବୃଦ୍ଧିରୁ ବିଚାର କଲେ, ମନେ ହୁଏ- ଆଜ ସାହିତ୍ୟର ପଢ଼ାଳି ସଂଖ୍ୟା ଏକ ବିଂଶ ଶତାବ୍ଦୀରେ ବିଶେଷ ଊଣା ହୋଇ ଯାଇଥିବ ।ଆଜି ଆଗରେ ଧରି ଲିଖିତ ଗଳ୍ପଟିଏ, କବିତାଟିଏ ବା ଉପନ୍ୟାସଟିଏ ପଢ଼ା ହେଉ ନଥିବ । ଶ୍ରୋତା ଓ ଦର୍ଶକଙ୍କ ସଂଖ୍ୟା ସେତେବେଳେ ବୃଦ୍ଧି ଲାଭ କରିଥିବ ସତ, କିନ୍ତୁ ପଢ଼ାଳିଙ୍କ ସଂଖ୍ୟା ହ୍ରାସ ହୋଇ ଯାଇଥିବ । ପ୍ରାଚୀନ କାଳରେ ସାହିତ୍ୟ ଯେପରି କାନରେ ଶୁଣାଯାଉଥିଲା ବେଶି, କିନ୍ତୁ ନାଟ୍ୟାଭିନୟାଦି କରିଆରେ ଆଖିରେ ଦେଖାଯାଉଥିଲା ବେଶି, ଭବିଷ୍ୟତରେ ସାହିତ୍ୟର ଗ୍ରାହକତା ସେହିପରି ହେବାର ଖୁବ୍ ସମ୍ଭାବନା । ସାହିତ୍ୟର ପଢ଼ାଳି ପରିବର୍ତ୍ତେ ଏହି ଦେଖାଳି ବା ଶୁଣାଳିଙ୍କ ସଂଖ୍ୟା ବୃଦ୍ଧି ପାଇବାର କେତେକ ବିଶେଷ କାରଣ ରହିଛି । ବଡ଼ କାରଣଟି ହେଲା - ସାହିତ୍ୟର ପ୍ରସାର ମାଧ୍ୟମର ପରିବର୍ତ୍ତନ । ଚଳିତ ଶତାବ୍ଦୀରେ ସାହିତ୍ୟ ପ୍ରସାରର ମାଧ୍ୟମ ହେଉଛି ମୁଖ୍ୟତଃ ପତ୍ରପତ୍ରିକା ଓ ପୁସ୍ତକାବଳୀ ।  କିନ୍ତୁ ଭବିଷ୍ୟତରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଗ୍ରଗତି ପ୍ରସାଦରୁ ରେଡ଼ିଓ, ଟି.ଭି, ଭିଡ଼ିଓ, ଅଡ଼ିଓ ବୁକ ଆଦି ଇଲେକ୍ଟ୍ରୋନିକ୍ ପ୍ରସାର ମାଧ୍ୟମରେ ସାହିତ୍ୟ ବିଶେଷ ଭାବରେ ପରି ବେଷିତ ହେବ । ଆଜି ପରିକା ସେତେବେଳେ ସାହିତ୍ୟର ଗ୍ରାହକସମାଜ ରହିବେ ଠିକ୍, କିନ୍ତୁ ସେହି ଗ୍ରାହକମାନେ ଗଳ୍ପ-କବିତା-ଆଲୋଚନାଦି ଶୁଣିବେ ରେଡ଼ିଓ ବା କେସେଟରୁ-ନାଟକ ବା ଗଳ୍ପ-ଉପନ୍ୟାସର ନାଟ୍ୟରୂପ ଦେଖିବେ ଟି.ଭି. ବା ଚଳଚ୍ଚିତ୍ରରୁ । ପଢ଼ିବାରେ ଦେଖାଇବା କାର୍ଯ୍ୟଟି ହେଉଥିଲେ ମଧ୍ୟ ସେହି ଦେଖା ଓ ସାଧାରଣ ଦେଖା ମଧ୍ୟରେ ପାର୍ଥକ୍ୟ ରହିଛି ଏକଥା ଫେଡ଼ି କହିବା ଲୋଡ଼ା ନାହିଁ ।

କର୍ମଜଞ୍ଜାଳଗ୍ରସ୍ତ ଜୀବନରେ ବିଭିନ୍ନ ପ୍ରକାର ପଢ଼ା-ସାମଗ୍ରୀର ବହୁଳତା ଭବିଷ୍ୟତରେ ସାହିତ୍ୟର ପଢ଼ାଳି ସଂଖ୍ୟା ଊଣା କରିବାର ଅନ୍ୟ ଏକ କାରଣ ରୂପେ ମଧ୍ୟ ଠିଆ ହେବ । ଦୈନିକ ସମ୍ବାଦପତ୍ରଠାରୁ ବିଭିନ୍ନ କିସମର ସାମୟିକ ପତ୍ରିକା ତଥା ନାନା ପ୍ରକାର ପ୍ରାଚୀନ ଓ ନୂତନ ଗ୍ରନ୍ଥ ପର୍ଯ୍ୟନ୍ତ ପ୍ରଚୁର ପଢ଼ିବା ଜିନିଷ ପ୍ରତିଦିନ ଆକର୍ଷଣୀୟ ଲେଖା ଓ ରେଖାରେ ସଜ୍ଜିତ ହୋଇ ଆପଣଙ୍କ ଆଗରେ ଆସି ପହଞ୍ଚିବ । ଆପଣ କେତେ ପଢ଼ିବେ ? ଆପଣଙ୍କ ଆଖିର ଶକ୍ତି ସୀମିତ । ଆଖିକୁ ଟିକିଏ ବିଶ୍ରାମ ଦେଇ ଆପଣ କାନକୁ ସାହିତ୍ୟ ରସାସ୍ୱାଦନରେ ଅଧିକ ବ୍ୟବହାର କରିବା ସ୍ୱାଭାବିକ ହେବ । ଅବଶ୍ୟ, ଆଖିର ବ୍ୟବହାର ହେବ କେତେକ ଭିନ୍ନ ବାଟରେ । କ୍ରମବର୍ଦ୍ଧମାନ ପଢ଼ା-ସାମଗ୍ରୀମାନ ସାଇତି ରଖିବା ପାଇଁ ସେତେବେଳେ ଲାଇବ୍ରେରି ବା ପାଠାଗାରରେ ସ୍ଥାନାଭାବ ହେବ । ତେଣୁ ପୁସ୍ତକ ଓ ପତ୍ରପତ୍ରିକାର ମାଇକ୍ରୋ ଫିଲ୍ମ ବା ମାଇକ୍ରୋଡଟ୍ କରାଯାଇ ସ୍ୱଳ୍ପ ସ୍ଥାନରେ ତାହା ସଂରକ୍ଷିତ ହେବ । ଦର୍ଶନେନ୍ଦ୍ରିୟ ଦ୍ୱାରା ପଢ଼ିବା କାର୍ଯ୍ୟ ବହୁ ପରିମାଣରେ ଊଣାହେଲେ ମଧ୍ୟ ସେତେବେଳେ ଆବଶ୍ୟକ ମତେ ସମୟ ସମୟରେ ଏହି ମାଇକ୍ରୋ ଫିଲ୍ମ ବା ମାଇକ୍ରୋଡଟରୁ ସାହିତ୍ୟ ପାଠ କରାଯାଉଥିବ ।

ଶ୍ରୋତାଙ୍କ ସଂଖ୍ୟା ବଢ଼ିବା ହେତୁ ସାହିତ୍ୟର ପ୍ରକାଶ ଭଙ୍ଗୀରେ କେତେକ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇ ପଡ଼ିବ । ରେଡ଼ିଓ, ଟି.ଭି. ସିନେମାଦି ସକାଶେ ତ ସ୍ୱତନ୍ତ୍ର ଭାବରେ 'ସ୍କ୍ରିପ୍ଟ' ଲେଖାଯିବ । ତାହା ବ୍ୟତୀତ ସାହିତ୍ୟ ସାଧାରଣତଃ ହେବ ଅଧିକ ସାବଳୀଳ ଓ ଶ୍ରବଣସୁଖଦାୟୀ-ସହଜଗମ୍ୟ ଓ ସହସାବୋଧ; ଯାହା ଦ୍ୱାରା କି ସାହିତ୍ୟ ଗ୍ରାହକ ସମାଜର କାନ ବାଟ ଦେଇ ମରମକୁ ସ୍ପର୍ଶ କରିବ ।

ଆମ ଗ୍ରାହକ ସମାଜର ସାହିତ୍ୟ-ପ୍ରୀତି ସଂପର୍କରେ ବେଳେ ବେଳେ ପ୍ରଶ୍ନ ଉଠିଥାଏ । ଭାରତର ଆଉ ଆଉ କେତେକ ଭାଷା-ସାହିତ୍ୟର ଗ୍ରାହକସମାଜର ପଢ଼ିବା ଅଭ୍ୟାସ ଯେପରି ବଳିଷ୍ଠ, ଆମ ଗ୍ରାହକ ଶ୍ରେଣୀର ତାହା ସେପରି ସନ୍ତୋଷଜନକ ନ ଥିବାର ବୋଲାଯାଏ । ଗ୍ରାହକ ଗଣପତିଙ୍କ ଦ୍ୱାରା ଗୃହୀତ ନ ହେଲେ, ସାହିତ୍ୟ ସୃଷ୍ଟିର ଗତି କାହିଁ, ଛତି ବା କାହିଁ ! ଯାହାହେଉ, ଏବେ ଆମର ସେହି ଗ୍ରାହକ ଶ୍ରେଣୀ ମୋଟାମୋଟି ତିନି ଭାଗରେ ବିଭକ୍ତ । ପ୍ରଥମତଃ ନିରକ୍ଷର ଅଶିକ୍ଷିତ ଗ୍ରାହକ ସମାଜ; ସଂଖ୍ୟାରେ ସର୍ବାପେକ୍ଷା ଅଧିକ । ଏମାନେ ସାଧାରଣତଃ ଲୋକଗୀତ, ଲୋକ କାହାଣୀ ଓ ଲୋକ ନାଟ୍ୟରେ ଆପଣା ସାରସ୍ୱତ ପିପାସା ଚରିତାର୍ଥ କରିଥାଆନ୍ତି । ଲୋକ ପ୍ରିୟ ସାହିତ୍ୟ ମଧ୍ୟ ଏମାନଙ୍କ ନିକଟରେ ଅସ୍ପୃଶ୍ୟ ନୁହେଁ । ରେଡ଼ିଓ ଶୁଣିଲେ କିମ୍ବା ଟି.ଭି. ଦେଖିଲେ ମଧ୍ୟ ଏମାନେ ଆଧୁନିକ କବିତା ବା ପରୀକ୍ଷାମୂଳକ ଗଳ୍ପ-ଉପନ୍ୟାସ-ନାଟକରୁ ରସାସ୍ୱାଦନ କରିପାରନ୍ତି ନାହିଁ । ଦ୍ୱିତୀୟ ପ୍ରକାର ଗ୍ରାହକସମାଜ ସାକ୍ଷର ଓ ଶିକ୍ଷିତ, କିନ୍ତୁ ରୁଚି ଓ ମାନସିକତା ଦିଗରୁ ମୁଖ୍ୟତଃ ପ୍ରାଚୀନ ସାହିତ୍ୟ ତଥା ଲୋକପ୍ରିୟ ସାହିତ୍ୟରେ ଅବଗାହୀ । ଖୁବ୍ ବେଶି ହେଲେ, ଏମାନେ ସବୁଜ ସାହିତ୍ୟର ସୀମା ପର୍ଯ୍ୟନ୍ତ ଘୁରାଫେରା କରିପାରନ୍ତି । ଏମାନଙ୍କ ସଂଖ୍ୟା ମଧ୍ୟ ଊଣା ନୁହେଁ । ତୃତୀୟ ଶ୍ରେଣୀର ଗ୍ରାହକ ସମାଜ ସଂଖ୍ୟାନ୍ୟୂନ, କିନ୍ତୁ ସୁଶିକ୍ଷିତ ଓ ସଚେତନ । ଏମାନେ ଆଧୁନିକ କବିତା, ପରୀକ୍ଷାମୂଳକ ଗଳ୍ପ-ଉପନ୍ୟାସ-ନାଟକାଦି ହୃଦୟଙ୍ଗମ କରିଥାଆନ୍ତି । ସାହିତ୍ୟର ନବ ନବ ଆଙ୍ଗିକରେ ଏମାନଙ୍କର ବିଶେଷ ଆଗ୍ରହ । ଏକ ବିଂଶ ଶତାବ୍ଦୀ ବେଳକୁ ସାକ୍ଷରତା ଓ ଶିକ୍ଷାଦୀକ୍ଷାର ବହୁଳ ପ୍ରସାର ଫଳରେ ଗ୍ରାହକ ସମାଜର ଏହି ଚିତ୍ରପଟ ପରିବର୍ତ୍ତିତ ହୋଇଗଲା ଭଳି ଲାଗୁଛି । ସାହିତ୍ୟର ପ୍ରଥମୋକ୍ତ ଗ୍ରାହକ ସମାଜ ପ୍ରାୟ ନଥିବେ । ଦ୍ୱିତୀୟ ଓ ତୃତୀୟ ଶ୍ରେଣୀର ଗ୍ରାହକ ସମାଜ ମଧ୍ୟରେ ଦୂରତ୍ୱ ବୋଧହୁଏ ଊଣା ହୋଇ ଯାଇଥିବ । ସାମୂହିକ ଭାବରେ ଗ୍ରାହକ ସମାଜର ସାଂସ୍କୃତିକ ଚେତନା ଓ ସାହିତ୍ୟିକ ଅବବୋଧ ସମୃଦ୍ଧତର ହୋଇଥିବ ବୋଲି ମନେ ହୁଏ ।

ଭବିଷ୍ୟତରେ ଆମ ସାହିତ୍ୟର ଗ୍ରାହକ ସମାଜ କିଛି ପରିମାଣରେ ସଙ୍କୁଚିତ ହୋଇଯାଇ ପାରେ । ଯେଉଁ ଭୌଗୋଳିକ ପରିସର ମଧ୍ୟରେ ଏବେ ସାହିତ୍ୟର ପ୍ରସାର ଓ ପ୍ରଚାର ଘଟୁଛି, ତାହା ସୀମିତ ହୋଇଯିବାର ଯଥେଷ୍ଟ ସମ୍ଭାବନା ଥିବାରୁ ଗ୍ରାହକ ସମାଜର ସ୍ଥିତି ବିପର୍ଯ୍ୟସ୍ତ ହେବାର ଅନୁମତି ହୁଏ । ରାଜ୍ୟର ପଶ୍ଚିମାଞ୍ଚଳରେ ଥିବା ଚାରି ପାଞ୍ଚଟି ଜିଲ୍ଲାରେ କୋଶଳୀ ବା ସମ୍ବଲପୁରୀ ଭାଷା ପ୍ରଚଳିତ ଅଛି । ୧୯୯୧ ମସିହା ଜନଗଣନାର ପରିସଂଖ୍ୟାନ ଅନୁଯାୟୀ- ଏହି ଅଞ୍ଚଳର ଜନସଂଖ୍ୟା ପ୍ରାୟ ଷାଠିଏ ଲକ୍ଷ; ରାଜ୍ୟର ମୋଟ ଜନସଂଖ୍ୟାର ପ୍ରାୟ ପାଞ୍ଚ ଭାଗରୁ ଭାଗେ । ଏହି ଜନସମାଜରୁ ଅଧିକାଂଶ ଦୈନନ୍ଦିନ ଜୀବନରେ ମୁଖ୍ୟତଃ କୋଶଳୀ ଭାଷା ବ୍ୟବହାର କରିଥାଆନ୍ତି । ଗତ କେତେବର୍ଷ ହେଲା କୋଶଳୀ ଭାଷାରେ ରୀତିମତ ସାହିତ୍ୟ ସୃଷ୍ଟି ହେବାରେ ଲାଗିଛି- କବିତା, ଗଳ୍ପ, ଉପନ୍ୟାସ, ନାଟକ, ଆଲୋଚନାମାନ ରଚିତ ଓ ପ୍ରକାଶିତ ହେଉଛି । ଏହି ଭାଷାରେ ବ୍ୟାକରଣ ଲେଖା ଗଲାଣି, ଅଭିଧାନ ସଂକଳିତ ହୋଇ ସାରିଲାଣି । କୋଶଳୀ ଭାଷାର ନାଟକ ଅଭିନୀତ ହେଉଚି- ଫିଲ୍ମ ପ୍ରଦର୍ଶିତ ହେଉଛି । ସମ୍ବଲପୁରୀ ଗୀତ ଏବେ ରାଜ୍ୟର କେବଳ ପଶ୍ଚିମାଞ୍ଚଳରେ ପ୍ରସାରିତ ହେଉ ନାହିଁ; ସାରା ଓଡ଼ିଶାରେ ପ୍ରସାର ଲାଭ ପୂର୍ବକ ଏହା ବେଶ ଜନପ୍ରିୟତା-ଅର୍ଜନ କରିଛି । ଏହି ପରିସ୍ଥିତିରେ ଆଗାମୀ ଶତକରେ କୋଶଳୀ ଭାଷା ଓ ସାହିତ୍ୟର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ ହେବାର ଉଜ୍ଜ୍ୱଳ ସମ୍ଭାବନା ଦେଖା ଦେଇଛି । ତାହା ହେଲେ, ଆମ ସାହିତ୍ୟର ପ୍ରସାର-ପରିସର କେତେକ ପରିମାଣରେ କ୍ଷୁଣ୍ଣ ହେବ ନାହିଁ କି ?

ଭବିଷ୍ୟତରେ କୋଶଳୀ ଭାଷା-ସାହିତ୍ୟର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ ହେଲେ, କାହାରି ବ୍ୟସ୍ତ ବା ବିବ୍ରତ ହେବାର କୌଣସି କାରଣ ନାହିଁ । ଭାଷା କ୍ଷେତ୍ରରେ ଏକ ସ୍ୱାଭାବିକ ପ୍ରକ୍ରିୟା ରୂପେ ଆମକୁ ଏହା ଗ୍ରହଣ କରି ନେବାକୁ ହେବ । ପ୍ରାୟ ପାଞ୍ଚଶହ ବର୍ଷ ତଳେ କେରଳରେ ତାମିଲ ଭାଷାର ଏକ ରୂପାନ୍ତର ପ୍ରଚଳିତ ଥିଲା । ମାଲୟାଲୀ' ନାମରେ ଚିହ୍ନିତ ସେହି ଭାଷା ଥିଲା ଶୁଦ୍ଧ ତାମିଲ ଭାଷାର ଏକ ଉପଭାଷା । କାଳକ୍ରମେ ନମ୍ବୁଦିରୀ ବ୍ରାହ୍ମଣମାନଙ୍କ ପ୍ରତିପତ୍ତି, ଖ୍ରୀଷ୍ଟ ଓ ଇସଲାମ ଧର୍ମର ପ୍ରଭାବ, ରାଜନୈତିକ ବିଚ୍ଛିନ୍ନତା ପ୍ରଭୃତି କାରଣରୁ ସେହି ଉପଭାଷାର ସ୍ୱାତନ୍ତ୍ର୍ୟ ପ୍ରକଟିତ ହେଲା ଏବଂ ତହିଁରେ ରୀତିମତ ସାହିତ୍ୟ ସୃଷ୍ଟି ହେବାରେ ଲାଗିଲା । ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ବେଳକୁ ମାଲୟାଲୀ ଭାଷା-ସାହିତ୍ୟର ଭିନ୍ନତା ବା ସ୍ୱାତନ୍ତ୍ର୍ୟ ତାମିଲି ଭାଷାଭାଷୀଙ୍କ ଦ୍ୱାରା ଖୋଲାଖୋଲି ଭାବରେ ସ୍ୱୀକୃତି ଲାଭ କଲା । ସେଥି ସକାଶେ, କୋଶଳୀ ବା ସମ୍ବଲପୁରୀ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିପାଦିତ ହୋଇପାରେ, ଆପତ୍ତି ନାହିଁ । ତାହା ଦ୍ୱାରା ଓଡ଼ିଆ ଭାଷା-ସାହିତ୍ୟର ପ୍ରସାର-ପରିସର ସାମାନ୍ୟ କ୍ଷୁଣ୍ଣ ହେବାର ସମ୍ଭାବନା ଥିଲେ ବି, ରାଜ୍ୟର ପଶ୍ଚିମାଞ୍ଚଳରେ ଏହାର ଗ୍ରାହକ ଅବଶ୍ୟ ରହିବେ - ରହିବେ ମଧ୍ୟ ବର୍ତ୍ତମାନ ଭଳି ଏହି ଭାଷାର ସାହିତ୍ୟସ୍ରଷ୍ଟା; ଯେପରି ହୋଇଛି ପୂର୍ବବଙ୍ଗ ବା ଏବର ବାଂଲା ଦେଶରେ । ସେଠାକାର ଅଧିବାସୀ ବାଙ୍ଗାଲମାନଙ୍କ ମଧ୍ୟରେ କେତେକ ଉପଭାଷା ସହ ବଙ୍ଗଳା ଭାଷା ପ୍ରଚଳିତ । ପୂର୍ବ ପାକିସ୍ତାନ ଭାବରେ ଥିଲାବେଳେ ଏହି ଅଞ୍ଚଳରେ ଉର୍ଦ୍ଦୁ ଭାଷାକୁ ସରକାରୀ ଭାଷା ରୂପେ ପ୍ରଚଳନ କରାଯିବା ଲାଗି ଉଦ୍ୟମ ହୋଇଥିଲା; ମାତ୍ର ତାହା ସଫଳ ହେଲା ନାହିଁ । କବି ରବୀନ୍ଦ୍ର ନାଥ (୧୮୬୧-୧୯୪୧) ଓ ନଜରୁଲ ଇସଲାମଙ୍କ (୧୮୯୯-୧୯୭୬) କେତେକ ବଙ୍ଗଳା କବିତା ଓ ସଙ୍ଗୀତ

ନିଶ୍ଚିତ କରିବା ପାଇଁ ବ୍ୟବସ୍ଥା ହୋଇଥିଲା; ତାହା ମଧ୍ୟ ପୂ ବ୍ୟାପୃତି କାର୍ଯ୍ୟକାରୀ ହୋଇପାରିଲା ନାହିଁ । ବର୍ତ୍ତମାନ ବଙ୍ଗଳା ଭାଷା ସେଠାରେ ରାଷ୍ଟ୍ରଭାଷା । ରବୀନ୍ଦ୍ରନାଥ, ନଜରୁଲଙ୍କ ରଚନାବଳୀ ସମେତ ଭାରତରେ ସୃଷ୍ଟି ହେଉଥିବା ବିଭିନ୍ନ ପ୍ରକାର ବଙ୍ଗଳା ସାହିତ୍ୟର ସେଠାରେ ବିପୁଳ ଗ୍ରାହକତା । ସେଠାକାର କବି-ଲେଖକମାନେ ମଧ୍ୟ ବଙ୍ଗଳା ଭାଷାରେ ପ୍ରଚୁର ସାହିତ୍ୟ ସୃଷ୍ଟି କରିବାରେ ଲାଗିଛନ୍ତି । ସୁପରିଚିତା ଲେଖିକା ତସଲିମା ଏହାର ଏକ ଉଜ୍ଜ୍ୱଳ ଉଦାହରଣ ।

ସାହିତ୍ୟ-ସୃଷ୍ଟିର ଉତ୍କର୍ଷ ଓ ଚମତ୍କାରିତା ଉପରେ ତାହାର ଗ୍ରାହକତା ବହୁ ପରିମାଣରେ ନିର୍ଭର କରେ । ଏକବିଂଶ ଶତାବ୍ଦୀରେ ଆମ ସାହିତ୍ୟର ସୃଷ୍ଟି ତଥା ସ୍ରଷ୍ଟାଙ୍କ ଦିଗରୁ ବିଚାର କଲେ, ମନେ ହେଉଛି- ସାହିତ୍ୟ-ସଭ୍ୟତାର ତୃତୀୟ ତରଙ୍ଗ କମ୍ପ୍ୟୁଟର କ୍ରାନ୍ତିରେ ଉପନୀତ ହୋଇଥିବ । ସଭ୍ୟତାର ପ୍ରଥମ ତରଙ୍ଗ କୃଷି କ୍ରାନ୍ତି ଆମେ ଏପର୍ଯ୍ୟନ୍ତ ପୂରାପୂରି ଅତିକ୍ରମ କରି ନ ଥିଲେ ହେଁ, ଦ୍ୱିତୀୟ ତରଙ୍ଗ ଶିଳ୍ପ କ୍ରାନ୍ତିରେ ପ୍ରବେଶ କରିଛୁଁ । କମ୍ପ୍ୟୁଟର ବିଜ୍ଞାନର ଦ୍ରୁତ ଅଗ୍ରଗତି ଭବିଷ୍ୟତ ସାହିତ୍ୟ ସୃଷ୍ଟିକୁ ଯେ ପ୍ରଭାବିତ କରିବ, ଏଥିରେ ସନ୍ଦେହ ନାହିଁ । ଚାର୍ଲସ ବାବେଜ (୧୯ଶ ଶତାବ୍ଦୀ) ଆଲାନ ଟ୍ୟୁରିଙ୍ଗ (ବିଂଶ ଶତାବ୍ଦୀ) ପ୍ରମୁଖ ବୈଜ୍ଞାନିକଙ୍କୁ ଆମର କୋଟି କୋଟି ନମସ୍କାର ! ସେମାନଙ୍କ ଗବେଷଣା ଦ୍ୱାରା ଫଳିତ ପଦାର୍ଥ ବିଜ୍ଞାନର ଏକ ଉତ୍କୃଷ୍ଟ ପର୍ଯ୍ୟାୟ ଇଲେକଟ୍ରୋନିକ୍ସ ଏବେ ଏପରି ସ୍ତରରେ ଆସି ପହଞ୍ଚିଛି, ଯାହା ଫଳରେ କୃତ୍ରିମ ବୁଦ୍ଧି ଓ କୃତ୍ରିମ ସର୍ଜନଶୀଳତା ସମ୍ଭବ ହେଲା ପରି ଜଣା ପଡୁଛି । ଜାପାନ, ଜର୍ମାନ, ମାର୍କିନ ଯୁକ୍ତରାଷ୍ଟ୍ର ପ୍ରଭୃତି ବିଶ୍ୱର ବିଭିନ୍ନ ଦେଶରେ ଏକାଧିକ ଟିକାଇ ଇଞ୍ଜିନ୍, କମ୍ପ୍ୟୁଟର, ଇଣ୍ଟେଲିଜେଣ୍ଟ ରୋବୋଟ ଯେପରି ପ୍ରସାର ଲାଭ କଲାଣି, ତହିଁରୁ ମନେ ହେଉଛି ସାହିତ୍ୟକଳା କ୍ଷେତ୍ରରେ ସର୍ଜନଶୀଳତା ଆଉ ଯେପରି ମଣିଷର ଏକଚାଟିଆ ହୋଇ ରହିବ ନାହିଁ । ମଣିଷର ମସ୍ତିଷ୍କ ଭିତରେ ପିନିଏଲ ଏପାରଟସ ବା ଆମ ପୁରାଣୋକ୍ତ ତୃତୀୟ ନୟନ ଆବିଷ୍କୃତ ହେଲାଣି; ଏହା ହୁଏତ ଅନ୍ତର୍ଦୃଷ୍ଟି ଓ ଦୂରଦୃଷ୍ଟିର କାର୍ଯ୍ୟ କରୁଛି । ସେହିପରି ମସ୍ତିଷ୍କର ମେମୋରି ମଲେକ୍ୟୁଲ କଥା ବୈଜ୍ଞାନିକମାନେ କହିଲେଣି, ଯାହା ଜଣକ ମସ୍ତିଷ୍କରୁ ନେଇ ଯାଇ ଅନ୍ୟ ଜଣକ ମସ୍ତିଷ୍କରେ ରୋପଣ କରାଯାଇ ପାରିବ - ଏପରିକି କୃତ୍ରିମ ମେମୋରି ମଲେକ୍ୟୁଲ ପ୍ରସ୍ତୁତ କରାଯାଇ ପାରିବ । ଫଳରେ ବୁଦ୍ଧି, ଜ୍ଞାନ, ସର୍ଜନଶୀଳତା ପ୍ରଭୃତିକୁ ଆମେ ଯାହା ଦିନେ ମାନବୀୟ ଶକ୍ତି ଜାଣିଥିଲୁଁ, ତାହା ଆଉ ଅଳ୍ପ କେତେ ଜଣଙ୍କ ପାଖରେ ସୀମିତ ହୋଇ ରହିବ ନାହିଁ ଏବଂ ଯନ୍ତ୍ର ଦ୍ୱାରା ହୁଏତ ଏହି ଶକ୍ତିର ଉଦ୍ଭାବନ କରାଯାଇ ପାରିବ । ଏହି ପରିସ୍ଥିତିରେ କୃତ୍ରିମ ବୁଦ୍ଧି ବା ଆର୍ଟିଫିସିଆଲ ଇଣ୍ଟେଲିଜେନ୍ସ ସାହାଯ୍ୟରେ ଯନ୍ତ୍ର, ଗଣିତର ହର-ଗୁଣ-ଫେଡ଼-ମିଶା, ଆୟବ୍ୟୟର ହିସାବ, ପରୀକ୍ଷାଖାତା ମୂଲ୍ୟାଙ୍କନ, ଗୋଟିଏ ଭାଷାରୁ ଅନ୍ୟ ଭାଷାକୁ ଅନୁବାଦ ପ୍ରଭୃତି କାର୍ଯ୍ୟ କରିବା ପାଇଁ ସମର୍ଥ ହେଲାଣି । ସେହିଭଳି କମ୍ପ୍ୟୁଟର ଯନ୍ତ୍ର କେବଳ ସାହିତ୍ୟର ମର୍ମ ଉପଲବ୍ଧି କରିବ ନାହିଁ, ଅଚିରେ ସାହିତ୍ୟ-ସୃଷ୍ଟି କରିବାରେ ମଧ୍ୟ ସମର୍ଥ ହୋଇପାରେ ।

ଏବେ ଭାରତରେ ଏବଂ ସେହି ସୂତ୍ରରେ ଓଡ଼ିଶାରେ କମ୍ପ୍ୟୁଟର ବିଜ୍ଞାନ ପ୍ରଚଳନରୁ ମନେ ହେଉଛି- ଭବିଷ୍ୟତରେ ଆମର ସର୍ଜନଶୀଳତା ଉପରେ ଏହାର ପ୍ରଭାବ ଓ ପ୍ରତିକ୍ରିୟା ପ୍ରତିଫଳିତ ହେବ । ଆପଣମାନେ ଜାଣିଥିବେ - ଆମର ପ୍ରାଚୀନ ଚିତ୍ରକାବ୍ୟ ବନ୍ଧୋଦୟ' କିମ୍ବା ଆଧୁନିକ 'ଆକାର କବିତା' ର ପାଖାପାଖି କିଛି ଚିତ୍ର-ରଚନା ଏବେ ଆମେ କମ୍ପ୍ୟୁଟର ହସ୍ତରୁ ପାଇଗଲୁଣି । ଆଗାମୀ ଶତକରେ ଏହି ପ୍ରକ୍ରିୟା ପରିଶୁଦ୍ଧ ଓ ପରିମାର୍ଜିତ ହେବ ନିଶ୍ଚୟ । ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଆସୁଥିବା ଏହି ଆହ୍ୱାନ ପାଇଁ ଆମକୁ ପ୍ରସ୍ତୁତ ରହିବାକୁ ହେବ । ଯନ୍ତ୍ର ଯଦି ମଣିଷ ଭଳି କଳା-ସାହିତ୍ୟାଦିରେ ସର୍ଜନଶୀଳ ହେବ, ତାହାହେଲେ ମଣିଷର ମୂଲ୍ୟ ଓ ମହତ୍ତ୍ୱ ରହିଲା କେଉଁଠି ? କମ୍ପ୍ୟୁଟର ସାହାଯ୍ୟରେ ଯଦି 'ଏଗାରଟା' ଭଳି ଗଳ୍ପ ବା 'ଅନ୍ଧ ମହୁମାଛି' ଭଳି କବିତା ରଚିତ ହୋଇ ପାରିବ, ତାହାହେଲେ ଆମର କବି ଲେଖକମାନେ କରିବେ କଣ ? ଯନ୍ତ୍ର-ଜଗନ୍ନାଥଙ୍କଠାରେ ସେମାନେ କଣ କେବଳ ଯଜମାନି କରିବାରେ ଲାଗିବେ ? ଯେଉଁ ଯନ୍ତ୍ରକୁ ସ୍ୱୟଂ ମଣିଷ ସୃଷ୍ଟି କରିଛି, ସେହି ଯନ୍ତ୍ର ନିକଟରେ ସେ ଏ ପ୍ରକାର ନ୍ୟୂନ ଓ ସେବକ ହୋଇ ରହିବ ନାହିଁ କି ? ଏହା ଆମ ଆଗରେ ଏକ ନୈତିକ ପ୍ରଶ୍ନ । ଏହି ପ୍ରଶ୍ନର ସମ୍ମୁଖୀନ ହେବେ ବିଶେଷ କରି ଆମର ଉତ୍ତର-ପୁରୁଷମାନେ । ବର୍ତ୍ତମାନ ଆମେ କେବଳ ଏତିକିମାତ୍ର କହିପାରୁ ଯେ ଯନ୍ତ୍ରର କୃତ୍ରିମ ବୁଦ୍ଧି ଓ ସର୍ଜନଶୀଳତାରେ ମାନବୀୟ ସ୍ପର୍ଶ ରହିବ ନାହିଁ - ରହିବ ନାହିଁ ଜୈବିକ ଭାବାବେଗ । "ତମେ ମୋର ଛାପା ବହି ଯେତେବେଳେ ଛୁଅଁ, ଛୁଅଁ ନୂଆ ମଣିଷର ଛାତି" - ମଣିଷ କବିଙ୍କ ଏହି ଉକ୍ତି ଅନୁଯାୟୀ ଯନ୍ତ୍ର-କବିଙ୍କ ଛାତିରୁ ସକଳ ପ୍ରକାର ଭାବାବେଗର ଉତ୍ତାପ ଆମେ ବାରି ପାରିବା ନାହିଁ ।

କଳା-ସାହିତ୍ୟ କ୍ଷେତ୍ରରେ ସମ୍ଭାବିତ ଯନ୍ତ୍ରର ସର୍ଜନଶୀଳତାକୁ ଏଡ଼ାଇ ଦେବା ହୁଏତ ସହଜ ହେବ ନାହିଁ । ତଥାପି ଏହାକୁ ନିୟନ୍ତ୍ରଣ କରାଯାଇ ପାରେ । ସେହି ପ୍ରବଳ ଯନ୍ତ୍ର-କବିଲେଖକଙ୍କୁ ଆବଶ୍ୟକ ମତେ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦିଆଯାଇପାରେ । ସେ କ୍ଷେତ୍ରରେ ମଣିଷ-କବି ଲେଖକ ନିଶ୍ଚୟ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ମୌଳ ଓ ପ୍ରଧାନ ଶକ୍ତି ହୋଇ ରହିବେ । ଆଗାମୀ ଶତକରେ ସେହିମାନେ କି ପ୍ରକାର ସାହିତ୍ୟ ସୃଷ୍ଟି କରୁଥିବେ ? ସେମାନଙ୍କ ସାହିତ୍ୟ ସୃଷ୍ଟିର ସ୍ୱରୂପ-ପ୍ରକୃତି କିପରି ହୋଇଥିବ ? ସେତେବେଳକୁ ଶ୍ରୋତାଙ୍କ ସଂଖ୍ୟା ବଢ଼ିଥିବା କାରଣରୁ ସାହିତ୍ୟର ପ୍ରକାଶଭଙ୍ଗୀର ପରିବର୍ତ୍ତନ ବିଷୟ ପୂର୍ବରୁ ସୂଚିତ ହୋଇଛି । ସାଧାରଣ ଭାବରେ ଦେଖିଲେ, ସାହିତ୍ୟର ବିଷୟବସ୍ତୁ ବା ଆତ୍ମିକ କ୍ଷେତ୍ରରେ ମଧ୍ୟ ସେହିଭଳି କେତେକ ପରିବର୍ତ୍ତନ ଆସିପାରେ । ଜଣା ଯାଉଛି- ଆମ ସାହିତ୍ୟର ବିଶ୍ୱ ରୂପ ହିଁ ଭବିଷ୍ୟତରେ ସୁପ୍ରକଟ ହୋଇ ଉଠିବ । ପୃଥିବୀର ବହୁ ମାଟିର ବାସ୍ନା ତହିଁରୁ ଆଘ୍ରାଣ କରିହେବ, ବହୁ ବିଚିତ୍ର ଜନଜୀବନର ସ୍ପନ୍ଦନ ତହିଁରୁ ବାରି ହେବ - ସାରା ସଂସାରର କଳଧ୍ୱନି ତଥା ବିକଳ ସ୍ୱର ତହିଁରୁ ଶୁଣିହେବ । ଚଳିତ ଶତକର ଜାତୀୟତାବାଦ ଓ ଏକରାଷ୍ଟ୍ରୀୟ ମନୋଭାବ ସ୍ଥାନରେ ସେତେବେଳେ ବିଶ୍ୱ ଦୃଷ୍ଟି ଓ ଆନ୍ତର୍ଜାତିକ ମତବାଦମାନ ସାହିତ୍ୟସୃଷ୍ଟିର ଆଭିମୁଖ୍ୟ

ହେବ । ତାହା ଫଳରେ ଜନ ବିସ୍ଫୋରଣ, ବାସ୍ତୁସଂସ୍ଥାନ ବା ପରିବେଶ-ସୁରକ୍ଷା, ପରମାଣବିକ ଶକ୍ତି ସଞ୍ଚୟ, ବହୁ ରାଷ୍ଟ୍ରୀୟ କମ୍ପାନୀ ଦ୍ୱାରା ଆର୍ଥିକ ସ୍ଥିତି ନିୟନ୍ତ୍ରଣ, ଉପଭୋକ୍ତାବାଦ, ବାମାବାଦୀ ବା ଫେମିନିଷ୍ଟ ଆନ୍ଦୋଳନ ଆଦି ବିଭିନ୍ନ ବିଶ୍ୱ ବ୍ୟାପାର ଓ ତଦ୍‌ଜନିତ ସମସ୍ୟାବଳୀ ଆମ ସାହିତ୍ୟରେ ରୂପାୟିତ ହେବ । ଏହାର ସୂଚନା ଆମର ସାଂପ୍ରତିକ ଗଳ୍ପ-ଉପନ୍ୟାସ-କବିତା-ନାଟକାଦିରେ ମିଳିଲାଣି ।

ବିଭିନ୍ନ ବାହ୍ୟ ଓ ଆଭ୍ୟନ୍ତର କାରଣରୁ ଚଳିତ ଶତକରେ କେବଳ ପ୍ରକୃତି ରାଜ୍ୟରେ ନୁହେଁ, ମଣିଷର ହୃଦୟ-ମନରେ ଯେଉଁ ଆବେଗ-ଅନୁଭୂତିଗତ ବିଶୃଙ୍ଖଳା (Entropy of Feeling and Emotion) ଦେଖା ଦେଉଛି, ତାହା ଫଳରେ ମାନବ-ସଂପର୍କ ଓ ମାନବିକ ମୂଲ୍ୟବୋଧର ଅଧୋଗତି ଘଟିଛି—ଜଣେ ଅନ୍ୟ ଜଣକର ସୁଖଦୁଃଖରେ ସହାନୁଭୂତି ବା ସମବେଦନା ପ୍ରକାଶ କରୁନାହିଁ, ଗଣ-ମଣିଷର ପ୍ରଭାବ-ପ୍ରତିପତ୍ତିରେ ଜଣ-ମଣିଷର ଚିହ୍ନଟ ଓ ସ୍ୱାଭିମାନ କ୍ଷୁଣ୍ଣ ହେଉଛି, ଅସ୍ଥିର ସମାଜ ଓ ରାଷ୍ଟ୍ର ବ୍ୟବସ୍ଥାରେ ଜୀବନ-ଯନ୍ତ୍ରଣା ମଣିଷକୁ କାବୁ କରି ପକାଉଛି, ମୃତ୍ୟୁ ଚେତନା ତଥା ଆତ୍ମନିର୍ବାସନ ବା ବିଚ୍ଛିନ୍ନତାବୋଧ ମଣିଷ-ମନରେ ବଳବତ୍ତର ହୋଇଛି । ସାଂପ୍ରତିକ ସାହିତ୍ୟରେ ଆମେ ଏହି ସବୁ ଭାବ-ବିଭାବର ରୂପାୟନ ଦେଖୁଛେ ବହୁତ । ଏକବିଂଶ ଶତାବ୍ଦୀରେ ସାହିତ୍ୟରେ ଆମର କବି-ଲେଖକମାନେ ଏହି ପରିସ୍ଥିତିରୁ ନିଜକୁ ତଥା ନିଜ ସମାଜକୁ ମୁକ୍ତ କରିବା ପାଇଁ ଉଦ୍‌ବୋଧନ ଦେବେ ବୋଲି ଜଣା ପଡୁଛି । ଏବେ ଆମର କେତେକ ବିଶିଷ୍ଟ କବି-ଲେଖକଙ୍କଠାରେ ଈଶ୍ୱର-ପ୍ରୀତି ଓ ଆଧ୍ୟାତ୍ମିକ ଚେତନାରେ ଯେଉଁ ପ୍ରବଣତା ପ୍ରକାଶ ପାଉଛି, ତାହା ହିଁ ଏ କଥାର ପ୍ରମାଣ । ସକଳ ପ୍ରକାର ଅଶାନ୍ତି ଅସନ୍ତୋଷର ହଳାହଳରୁ ରକ୍ଷା ପାଇବା ପାଇଁ ଏହା ହୁଏତ ସର୍ବୋତ୍କୃଷ୍ଟ ପନ୍ଥା ବୋଲି ମନେ କରାଯାଉଛି । ଅବଶ୍ୟ, ସଂଗଠିତ ଆନୁଷ୍ଠାନିକ ଧର୍ମଗୁଡ଼ିକର ବର୍ତ୍ତମାନ ଦୁର୍ଗତି ଦୃଷ୍ଟିରୁ କବି-ଲେଖକଙ୍କର ସେହି ଈଶ୍ୱର-ପ୍ରୀତି ଓ ଆଧ୍ୟାତ୍ମିକ ଚେତନା ଧର୍ମନିରପେକ୍ଷ ହେବାର ସମ୍ଭାବନା ।

ଆମ ସାହିତ୍ୟର ବିଭିନ୍ନ ବିଭାଗ ଦିଗରୁ ବିଚାର କଲେ, ଦେଖିବା ଯେ ଭବିଷ୍ୟତର ଗଳ୍ପରେ ପୁନର୍ବାର ଗଳ୍ପତ୍ୱ ପ୍ରାଧାନ୍ୟ ଲାଭ କରିପାରେ, ଯାହା ଏବେ ବିଶେଷ ଊଣା ହୋଇ ଯାଉଛି ଏବଂ ଗଳ୍ପ, ରମ୍ୟରଚନା, ସ୍ମୃତିଚିତ୍ର ମଧ୍ୟରେ ସୀମାରେଖା ଅସ୍ପଷ୍ଟ ହୋଇ ପଡ଼ିଛି । ପାରଂପରିକ ଲୋକକଥା, ରାଜଗଳ୍ପ, ରୂପ କଥା, ରୂପକ ଗଳ୍ପ ଆଦି ଜରିଆରେ ଆଗାମୀ ଶତକର ସମାଜ ଓ ଜୀବନଧାରା ଅଭିବ୍ୟକ୍ତ ହେବାର ମନେ ହେଉଛି । ତାହାର ସୂଚନା ବର୍ତ୍ତମାନ କେତେକ ବିଶିଷ୍ଟ ଗାଳ୍ପିକଙ୍କ ରଚନାରୁ ମିଳିଲାଣି । ଉପନ୍ୟାସ ଦୀର୍ଘତା ପରିହାର କରି କ୍ଷୁଦ୍ରାବୟବ ହେବାର ମନେ ହେଉଛି । କର୍ମଚଞ୍ଚଳଗ୍ରସ୍ତ ଗ୍ରାହକସମାଜ ଦୀର୍ଘ ଉପନ୍ୟାସ ପଢ଼ିବା ପାଇଁ ହୁଏତ କୁଣ୍ଠା ପ୍ରକାଶ କରିବେ । ତେଣୁ ଆମେ ବୋଧହୁଏ 'ମାଟିମଟାଳ' ବା 'ନୀଳ ଶୈଳ' ଭଳି ଉପନ୍ୟାସ ଆଉ ପାଇବା ନାହିଁ । ତତ ପରିବର୍ତ୍ତେ ପାଇବା କ୍ଷୁଦ୍ର ଉପନ୍ୟାସ (Short Novel ବା Short Fiction) । ସଂପ୍ରତି ଇଉରୋପ ଓ ମାର୍କିନ ଯୁକ୍ତରାଷ୍ଟ୍ରରେ କ୍ଷୁଦ୍ର ଉପନ୍ୟାସର ବିକାଶ ହୋଇଥିବାର ଦେଖାଯାଏ । ଆମ ସାହିତ୍ୟରେ 'ଲୁହକର ତିନି ପ୍ରହର' (୧୯୭୭) 'ଶୂନସାଙ୍ଗେ ସାମୟିକ ସନ୍ଧି' (୧୯୮୪) ପ୍ରଭୃତି ରଚନାରେ ତାହାରି ଆତ୍ମପ୍ରକାଶ ଘଟିଛି । ଭବିଷ୍ୟତରେ ତେଣୁ କ୍ଷୁଦ୍ର ଉପନ୍ୟାସର ଯୁଗ ଆସିବାର ଜଣାଯାଉଛି । ଏହି ଉପନ୍ୟାସ ପୁଣି ଅକଳ୍ପନାମୂଳକ ରୂପେ ଦେଖାଦେଇ ପାରେ । ସାମ୍ବାଦିକତା ଓ ଆଖ୍ୟାନମୂଳକତାର ମିଶ୍ର ଶୈଳୀରେ ଅକଳ୍ପନାମୂଳକ ଉପନ୍ୟାସ ଏବେ ରଚିତ ହେଉଛି । ତହିଁରେ ପ୍ରକୃତ ସାମାଜିକ ବା ରାଜନୈତିକ ଘଟଣାବଳୀକୁ କଳ୍ପନାର ପତଳା ପୁଟ ଦେଇ ଉପସ୍ଥାପିତ କରାଯାଇ ପାରୁଛି । 'ଉଣେଇଶ ଶହ ପଞ୍ଚସ୍ତରି' ଏହାର ଏକ ଉତ୍କୃଷ୍ଟ ଉଦାହରଣ । ଆଗାମୀ ଶତକରେ ଏ ଧରଣର ଉପନ୍ୟାସ ରଚନା ବହୁଗୁଣିତ ହୋଇପାରେ । ଗୋଇନ୍ଦା ଉପନ୍ୟାସ ଓ ବିଜ୍ଞାନ ଭିତ୍ତିକ ଉପନ୍ୟାସ ରଚନାରେ ମଧ୍ୟ ପ୍ରାଚୁର୍ଯ୍ୟ ଦେଖାଦେଇ ପାରେ ।

ଭବିଷ୍ୟତର କବିତା ଅଧିକ ସରଳ ଓ ସୁବୋଧ ହେବାର ସୂଚନା ଆମେ ଏବେଠୁଁ ପାଇଗଲୁଣି । ଚଳିତ ଶତାବ୍ଦୀ ମଧ୍ୟଭାଗରେ ରଚିତ ଆମର ଅଧିକାଂଶ କବିତାର ବୋଧଗମ୍ୟତା ବିଷୟରେ ପ୍ରଶ୍ନ ଉଠିଥିଲା । ସେଥିପାଇଁ ୧୯୬୯ ମସିହାରେ ପ୍ରକାଶିତ 'ଡଗର' ପତ୍ରିକାର ଆଧୁନିକ କବିତା ବିଶେଷାଙ୍କରେ ଆମର କେତେ ଜଣ ବିଶିଷ୍ଟ କବିଙ୍କର କବିତା ସହିତ ତା'ଉପରେ ସ୍ୱୟଂ କବିଙ୍କ ଲେଖାର ସଂକ୍ଷିପ୍ତ ବ୍ୟାଖ୍ୟାମାନ ପ୍ରକାଶ କରାଯାଇ ଥିଲା । ଏ ବ୍ୟାପାରଟି କିପରି ତାତ୍ପର୍ଯ୍ୟପୂର୍ଣ୍ଣ, ଆପଣମାନେ ବୁଝି ପାରୁଥିବେ । ଏବେ ଆମ କବିତାର ସେହି ଦୁର୍ବୋଧ୍ୟତା କ୍ରମଶଃ ଦୂର ହେବାରେ ଲାଗିଛି । ସାରଲ୍ୟ ଓ ସାବଲୀଳତାର ଯେଉଁ ଉଚ୍ଚସ୍ତରରେ ଏକବିଂଶ ଶତାବ୍ଦୀର କବିତା ଯାଇ ଉପନୀତ ହେବ, ତାହାର ପ୍ରମାଣ 'ଝର୍କା ବାହାରେ' (୧୯୯୨) ଭଳି କେତେକ କାବ୍ୟଗ୍ରନ୍ଥରୁ ମିଳି ଯାଉଛି । ସେତେବେଳର କବିତା ପୁଣି ହୋଇପାରେ ଅଧିକ ଗୀତିମୟୀ ବା ଲିରିକାଲ୍ । ଏପରିକି ସାଙ୍ଗୀତିକତା ସହ ତୁଟି ଯାଉଥିବା କବିତାର ମୈତ୍ରୀ-ବନ୍ଧନ ପୁନଃ ସଂସ୍ଥାପିତ ହୋଇପାରେ । ଏବେ ପ୍ରକାଶ ପାଉଥିବା 'ଗୀତି ଓ ଗଜଲ' (୧୯୭୭), 'ଗୀତିକା' (୧୯୯୨) ପ୍ରଭୃତି କବିତା-ସଞ୍ଚୟନରୁ ଏବଂ କେତେକ କବିତାରେ ପ୍ରସ୍ତୁତ କେସେଟର ସମାଦରରୁ ଏହାର ସୂଚନା ମିଳୁଛି । ଏବେ ପୁଣି ଆମ କାବ୍ୟ ସାହିତ୍ୟରେ ଆବେଗ-ଅନୁଭୂତି ଓ ବୌଦ୍ଧିକତାର ମଧୁଚନ୍ଦ୍ରିକା ପରିଲକ୍ଷିତ ହେଲାଣି । ଉତ୍କୃଷ୍ଟ କବିତାରେ ଚିନ୍ତା ବା ବୌଦ୍ଧିକତା ସହ ଅନ୍ତରଙ୍ଗ ହୃଦୟାନୁଭୂତିର ମିଳନରେ ସମ୍ବେଦନଶୀଳତାର ସଂଯୋଜନ (unification of sensibility) ଘଟିଥାଏ ବୋଲି ଏକଦା କବି-ସମୀକ୍ଷକ ଏଲିୟଟ୍ ଯେଉଁ ଚମତ୍କାର କଥାଟିଏ କହିଥିଲେ, ଆଗାମୀ ଶତକରେ କବିତାରେ ସମ୍ଭବତଃ ତାହା ହିଁ ରୂପାୟିତ ହେବ ବେଶି ପରିମାଣରେ ।

ଏକବିଂଶ ଶତାବ୍ଦୀରେ ଆମ ନାଟ୍ୟ ସାହିତ୍ୟର ମଧ୍ୟ କେତେକ ପରିବର୍ତ୍ତନ ସମ୍ଭବିପାରେ । ଏବେ ମୁଖ୍ୟତଃ ଅଭିନୟର ସାମଗ୍ରୀ

ରୂପେ ନାଟକ ରଚିତ ହେଉଛି; ସାହିତ୍ୟ ସୃଷ୍ଟି ଭାବରେ କ୍ୱଚିତ୍ । ଭବିଷ୍ୟତର ନାଟ୍ୟସୃଷ୍ଟିରେ ମଞ୍ଚଗତ ମୂଲ୍ୟ ସହିତ ସାହିତ୍ୟ-ଗୁଣର ସମବାୟ ହେବ ବୋଲି ମନେ ହେଉଛି । 'ବିତର୍କିତ ଅପରାହ୍ନ'(୧୯୭୯), 'ତଟ ନିରଞ୍ଜନା' (୧୯୮୦) ଭଳି କେତେକ ନାଟକରୁ ଏହାର ସୂଚନା ମିଳିଲାଣି । ପୌରାଣିକ ତଥା ଐତିହାସିକ ଆଖ୍ୟାନ ଓ ଚରିତ୍ର ଭିତ୍ତିରେ ସାଂପ୍ରତିକ ଜୀବନକୁ ବ୍ୟାଖ୍ୟା କରିବାର ଯେଉଁ ପ୍ରବଣତା ଏବେ ନାଟକମାନଙ୍କରେ ପରିଲକ୍ଷିତ ହେଉଛି, ଭବିଷ୍ୟତରେ ତାହା ବହୁଗୁଣିତ ହେବାର ମନେ ହୁଏ । ଆହୁରି ମଧ୍ୟ ପ୍ରତ୍ନମୁଖିନ ହେବ- ବିଭିନ୍ନ ଲୋକନାଟ୍ୟ ତଥା ପାରଂପରିକ ଲୋକପ୍ରିୟ ନାଟକର ଶୈଳୀ ଅନୁସରଣରେ ଆମ ଭବିଷ୍ୟତର ନାଟ୍ୟସୃଷ୍ଟି । ସେହି ନାଟକ ଆବଦ୍ଧ କୃତ୍ରିମ ନାଟ୍ୟଶାଳାରେ ଆଉ ପ୍ରାୟ ଅଭିନୀତ ହେଉ ନଥିବ । ବୋଧହୁଏ ଆଗାମୀ ଶତକରେ ଆମ ପାଇଁ ତାହାହିଁ ହେବ ନାଟ୍ୟକାର ବାଦଲ ସରକାରଙ୍କ ପରିକଳ୍ପିତ 'ଥାର୍ଡ଼ ଥିଏଟର୍' ।

ଭବିଷ୍ୟତର ପ୍ରବନ୍ଧ ଓ ସାହିତ୍ୟ-ସମାଲୋଚନା ଟିକିଏ କ୍ଷତିଗ୍ରସ୍ତ ହେବାର ମନେ ହେଉଛି । କ୍ଷତିଗ୍ରସ୍ତ ହେବ ଏହି ଦୃଷ୍ଟିରୁ ଯେ- ସେତେବେଳେ ବୈଦଗ୍ଧ୍ୟ-ମଣ୍ଡିତ ଗୁରୁଗମ୍ଭୀର ପ୍ରବନ୍ଧ ବା ଆଲୋଚନା କ୍ୱଚିତ୍ ଲେଖା ହେଉଥିବ । ଗବେଷକଙ୍କ ବ୍ୟତୀତ ତାହାର ଗ୍ରାହକ ଆଉ ପ୍ରାୟ ନଥିବେ । ଗୁରୁଗମ୍ଭୀର ପ୍ରବନ୍ଧ ଓ ଆଲୋଚନା ପରିବର୍ତ୍ତେ ସେତେବେଳେ ଗ୍ରାହକତାନ୍ତ୍ରିକ ଚାହିଁ ରମ୍ୟ ରଚନା, ଫିଚର, ଲଳିତ ନିବନ୍ଧ ଆଦି ବିଶେଷ ଭାବରେ ରଚିତ ହେଉଥିବ । ବର୍ତ୍ତମାନ ଆମର ପ୍ରବନ୍ଧ ସାହିତ୍ୟର ପ୍ରବଣତା ତାହାହିଁ ସୂଚିତ କରୁଛି ।

ଆମର ଭବିଷ୍ୟତ୍ ସାହିତ୍ୟ ସ୍ରଷ୍ଟାଙ୍କର ଭାବମୂର୍ତ୍ତି କଣ ? କଣ ବା ତାହା ସଂପର୍କରେ ଆମର ଆଶା ଓ ଆକାଂକ୍ଷା ? ସାଂପ୍ରତିକ ରାଷ୍ଟ୍ରୀୟ ଓ ସାମାଜିକ ପରିସ୍ଥିତିରୁ ଯାହା ମନେ ହେଉଛି - ଆଗାମୀ ଶତକରେ ସେମାନେ ହୁଏତ 'ଅସ୍ୱୀକୃତ ବିଧାୟକ' ନ ହୋଇ ପାରନ୍ତି, କିନ୍ତୁ କଦାପି 'ଶୂନ୍ୟ ଗର୍ଭ ମସ୍ତିଷ୍କ' ହୋଇ ରହିବେ ନାହିଁ । ସେମାନେ ହେବେ ଅଧିକ ଜୀବନାନୁଗ-ଅଧିକ ସମାଜନିଷ୍ଠ । ବାସ୍ତବତାର ସ୍ୱଚ୍ଛ, ଅକୃତ୍ରିମ ଓ କଳାତ୍ମକ ରୂପାୟନରେ ସେମାନେ ହେବେ ଅଧିକ ସାହସୀ ଓ ନିର୍ଭୀକ । ନିଜ ପ୍ରତି ବିଶ୍ୱସ୍ତ ରହି ସେମାନେ ସାହିତ୍ୟ ସୃଷ୍ଟି କରିବେ । 'ବେଦୀ', 'ମଲ୍ଲିକାକୁଞ୍ଜ', 'ପ୍ରଥମ ଆଲୋ' ଭଳି ଗଳ୍ପ-ଉପନ୍ୟାସ ଲେଖି ସେମାନେ ପ୍ରଥାବଦ୍ଧ ସଂସ୍କାର-ଶାସିତ ସମାଜର ବଦ୍ଧପଣ୍ଡା ଅଥବା ଆକୁଞ୍ଚନିକ ଧର୍ମର ମୌଳବାଦୀଙ୍କ ନିବନ୍ଧରେ ପଡ଼ି ଲଣ୍ଡଭଣ୍ଡ ହୋଇ ପାରନ୍ତି; କିନ୍ତୁ ସ୍ରଷ୍ଟାର ସ୍ୱାଭିମାନ ଓ ସାଂସ୍କୃତିକ ଅଭୀପ୍ସା ବଜାୟ ରଖି କାର୍ଯ୍ୟ କରିବେ ବୋଲି ମନେ ହେଉଛି । ସେଥି ସକାଶେ ଅବଶ୍ୟ ଏବେଠୁଁ ଆମକୁ କ୍ଷେତ୍ର ପ୍ରସ୍ତୁତ କରିବାକୁ ହେବ—ସେମାନଙ୍କ ଶୁଭାଗମନ ପାଇଁ ପଥ ପରିଷ୍କାର କରିବାକୁ ପଡ଼ିବ । ଏହି ମାଟିରେ ସେମାନଙ୍କ ପାଇଁ ନିରାପଦ ନୀଡ଼ ରଚନା କରି ତାହାର ଦ୍ୱାର ଓ ବାତାୟନ ସବୁ ଖୋଲା ରଖିବାକୁ ହେବ—ସେମାନେ ଯେପରି ଚତୁର୍ଦ୍ଦିଗର ଅବାରିତ ବାୟୁ ସେବନ କରିବେ ଏବଂ ମୁକ୍ତ ଆକାଶର ପକ୍ଷୀ ପରି ସ୍ୱଚ୍ଛନ୍ଦରେ ବିହାର କରି ପାରିବେ, ତାହାର ବ୍ୟବସ୍ଥା କରିବାକୁ ହେବ । ଆମର ମାତୃଭାଷାକୁ ସକଳ ପ୍ରକାର ଭାବ ତଥା ଚିନ୍ତା-ଚେତନାର ପ୍ରକାଶ ପାଇଁ ସମର୍ଥ ଓ ସମୃଦ୍ଧ କରି ସେମାନଙ୍କ ହସ୍ତରେ ଅର୍ପଣ କରିବାକୁ ପଡ଼ିବ । ଗତ ଛଅଟି ଶତାବ୍ଦୀ ଭିତରେ ଆମେ ଯେଉଁ ସାହିତ୍ୟ ସୃଷ୍ଟି କରିଛୁ, ସେହି ସୃଷ୍ଟିର ପୁଷ୍କଳ ପରଂପରା ଭିତ୍ତିରେ ସେମାନେ ଦୃଢ଼ ଭାବରେ ଠିଆ ହୋଇ ପାରିବେ ଏବଂ ଅଗ୍ରଗତି ପାଇଁ ନିଜର ପସନ୍ଦଯୋଗ୍ୟ ପଦକ୍ଷେପ ନେବେ । *

—o—

ସହାୟକ ମୁଖ୍ୟ ରଚନାବଳୀ


୧. 'ଡଗର' ଆଧୁନିକ କବିତା ବିଶେଷାଙ୍କ, ୩୨ଶ ବର୍ଷ - ୧୦ମ-୧୨ଶ ସଂଖ୍ୟା (୧୯୬୯)

୨. ଓଡ଼ିଆ ସାହିତ୍ୟର କ୍ରମବିକାଶ -ସୁରେନ୍ଦ୍ର ମହାନ୍ତି, ଅଗ୍ରଦୂତ ପ୍ରକାଶନୀ, ବାଙ୍କାବଜାର, କଟକ-୨ (୧୯୭୮)

୩. Civilized Man's Eight Deadly Sins-Konrad Lorenz, Methuen and co. Ltd., London (1974)

4. The Creative Mind-Myths and Mechanisms-Margaret A. Boden, Abacus, 165 Great Dover Street, London(1992).

5. Preparing for the Twenty-first Centrure-Paul Kennedy, Indus, 7/16 Ansari Road, New Delhi-2 (1993)



ଉତ୍କଳ ଆପାର୍ଟମେଣ୍ଟ
କଲ୍ୟାଣୀ ନଗର, କଟକ - ୧୩,


* ଭୁବନେଶ୍ୱରର 'କେଦାରନାଥ ଗବେଷଣା ପ୍ରତିଷ୍ଠାନ'ରେ କେଦାରନାଥ ମହାପାତ୍ର ସ୍ମାରକୀ ବକ୍ତୃତା ରୂପେ ପଠିତ ପ୍ରବନ୍ଧ ।

—o—

# ଜାତୀୟତାବାଦର ମହାନ୍ ପ୍ରବକ୍ତା : ବିଶ୍ୱକବି ରବୀନ୍ଦ୍ରନାଥ

ଭାରତବର୍ଷ ବିଦେଶୀ ଶାସନ ଶୃଙ୍ଖଳରୁ ମୁକ୍ତ ହେବାର ପଚାଶବର୍ଷ ଅତୀତ ହୋଇଗଲା । ସ୍ୱାଧୀନ ଭାରତର ଏହି ୫୦ ବର୍ଷ ମଧ୍ୟରେ କବି ଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କ ରଚିତ ଜାତୀୟ ସଂଗୀତ ଆମେ ହଜାର ହଜାର ଥର ଗାଇ ସାରିଛେ । 'ଜନ ଗଣ ମନ' ର ଏହି ସଫଳ ସ୍ରଷ୍ଟାଙ୍କ ଶହ ଶହ କବିତା ଭାରତୀୟମାନଙ୍କୁ ସ୍ୱାଧୀନତା ସଂଗ୍ରାମ ପାଇଁ ସାହସ ଓ ଅନୁପ୍ରେରଣା ଯୋଗାଇଛି । ସ୍ୱାଧୀନତା ଭଳି ମହାନ୍ କାରଣ ପାଇଁ ଆମ୍ଭମାନଙ୍କୁ ଏକାଠି କରି ଉଦ୍ଦୀପିତ କରିଛି । ସେଥିପାଇଁ ବିଶ୍ୱ କବି ରବୀନ୍ଦ୍ରନାଥ ଠାକୁର ଆମର ଚିରସ୍ମରଣୀୟ ଓ ପରମ ପୂଜ୍ୟ ।

ଜଣେ କବି, ସଂଗୀତଜ୍ଞ, ଲେଖକ, ଚିତ୍ରକର, ନାଟ୍ୟକାର, ଶିକ୍ଷାବିତ୍, ଦାର୍ଶନିକ ଓ ସର୍ବୋପରି ଜଣେ ଜ୍ୱାଳାମୁଖୀ ଜାତୀୟବାଦୀ କବି ଭାବେ ରବୀନ୍ଦ୍ରଙ୍କ ପ୍ରଚଣ୍ଡ ପ୍ରତିଭାକୁ ପ୍ରତ୍ୟେକ ଭାରତୀୟ ଯୁଗଯୁଗ ଧରି ସମ୍ମାନ ଜଣାଉଥିବେ ।

୧୮୬୧ ମସିହା ମଇ ୭ ତାରିଖ କଲିକତାର ଏକ ପ୍ରଖ୍ୟାତ ଆଭିଜାତ୍ୟପୂର୍ଣ୍ଣ ଠାକୁର ପରିବାରରେ ମହର୍ଷି ଦେବେନ୍ଦ୍ରନାଥଙ୍କ କନିଷ୍ଠ ପୁତ୍ରଭାବେ ଜନ୍ମ ଗ୍ରହଣ କରିଥିଲେ ରବୀନ୍ଦ୍ରନାଥ । ତାଙ୍କ ଭଳି କଳା, ସଂଗୀତ, ଦର୍ଶନ ଓ ଦେଶ ଗଠନର ବହୁ ପ୍ରତିଭାଧରମାନଙ୍କୁ ମଧ୍ୟ ଏହି ପରିବାର ସୃଷ୍ଟି କରି ଗର୍ବବୋଧ କରିଥିଲା । ବାଲ୍ୟକାଳରେ ସେ ମାଙ୍କୁ ହରାଇଥିଲେ । ତାଙ୍କ ପିତାଙ୍କ ଜାତୀୟବାଦର ବଳିଷ୍ଠ ବ୍ୟକ୍ତିତ୍ୱ ତାଙ୍କୁ ଗଭୀରଭାବେ ପ୍ରଭାବିତ କରିଥିଲା ।

ବିଦ୍ୟାଳୟରେ ଶ୍ରେଣୀର ଧରାବନ୍ଧା ଦୈନନ୍ଦିନ ନିରସ କାର୍ଯ୍ୟକ୍ରମ ରବୀନ୍ଦ୍ରଙ୍କୁ କଦାପି ଆକୃଷ୍ଟ କରିପାରିନଥିଲା । ଗୃହଶିକ୍ଷକଙ୍କ ନିକଟରେ ସେ ଅଧ୍ୟୟନ କଲେ । ବଙ୍ଗଳା, ସଂସ୍କୃତ ଓ ଇଂରାଜୀରେ ସେ ନିପୁଣ ହେଲେ । ସେହିପରି ଇତିହାସ, ଗଣିତ ଓ ବିଜ୍ଞାନ ଅଧ୍ୟୟନରେ ମଧ୍ୟ ସେ ପାରଦର୍ଶିତା ଲାଭ କଲେ । ବାଲ୍ୟାବସ୍ଥାରେ ସେ ଲେଖାଲେଖି କରିବାକୁ ଉଦ୍ୟମ କରିଥିଲେ । ସବୁବେଳେ ଲେଖାଲେଖି ଉପକରଣ ନିଜ ପାଖରେ ରଖୁଥିଲେ ।

ତାଙ୍କୁ ଯେତେବେଳେ ମାତ୍ର ୮ ବର୍ଷ, ସେତେବେଳେ ସେ କବିତା ଲେଖା ଆରମ୍ଭ କଲେ । ପନ୍ଦର ବର୍ଷ ବୟସରେ ତାଙ୍କର ଲେଖା ପ୍ରକାଶିତ ହେଲା । ବଙ୍କିମଙ୍କ 'ବଙ୍ଗଦର୍ଶନ' ତାଙ୍କ ପାଇଁ ଅନୁପ୍ରେରଣାର ଏକ ବିପୁଳ ଉତ୍ସ ଥିଲା । ବାରିଷ୍ଟର ହେବା ଆଶାରେ ତାଙ୍କ ବଡ଼ଭାଇଙ୍କ ସହ ସେ ଇଂଲଣ୍ଡ ଯାଇଥିଲେ । କିନ୍ତୁ ଆଇନ ବିଦ୍ୟାରେ ତାଙ୍କର ମନ ଲାଗିଲା ନାହିଁ । ଏହା ପରିବର୍ତ୍ତେ, ସେ ସେଠାରେ ଫରାସୀ ଓ ଜର୍ମାନ ଭାଷାରେ ଲିଖିତ କେତେ କବିଙ୍କ ରଚନା ପଢ଼ିଲେ । ଭାଷା ସାହିତ୍ୟ ପ୍ରତି ତାଙ୍କର ଯେଉଁ ଦୁର୍ବାର ଆକର୍ଷଣ ଜାତ ହେଲା, ତାହା ଶେଷ ପର୍ଯ୍ୟନ୍ତ ଅତୁଟ ରହିଲା । ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ଜଣେ ଅନନ୍ୟ କଳାକାର ତଥା ବହୁମୁଖୀ ପ୍ରତିଭାହିଁ ଦେଶ ମାଟିରେ ବିକଶିତ ହେଲା ।

ବାଲ୍ୟକାଳରେ ବଙ୍ଗଳା ଲୋକ-ଭକ୍ତି-ସଂଗୀତ 'ବାଉଲ' ଦ୍ୱାରା ସେ ବେଶ୍ ପ୍ରଭାବିତ ହୋଇଥିଲେ । ବାଉଲର ମାଧୁର୍ଯ୍ୟଭରା ଗୀତିମୟତାରେ ସେ ଛନ୍ଦି ହୋଇପଡ଼ିଥିଲେ । ତରୁଣ ରବୀନ୍ଦ୍ର ମାତ୍ର ୧୩ ବର୍ଷ ବୟସରେ ଏଭଳି ଅନେକ ସଂଗୀତ ରଚନା କଲେ । ୧୮୮୬ ମସିହା କଲିକତା କଂଗ୍ରେସ ଅଧିବେଶନରେ ସେ ରଚନା କରିଥିବା ଏକ ସଂଗୀତ ଉଦ୍‌ଘାଟନୀ ସଂଗୀତ ଭାବେ ଗାନ କରାଗଲା । ୧୮୯୬ ମସିହାରେ ବଙ୍କିମ୍ ଚନ୍ଦ୍ରଙ୍କ 'ବନ୍ଦେ ମାତରମ୍'ରେ ସ୍ୱର ସଂଯୋଜନା କରି ଗାଇଲେ । ଜାତି ପ୍ରାଣରେ ତାହା ଦେଶପ୍ରେମର ଉଚ୍ଛ୍ୱାଳ ତରଙ୍ଗ ସୃଷ୍ଟି କଲା ।

ବ୍ୟକ୍ତି ଜୀବନର ସମସ୍ତ ଦୁର୍ଯ୍ୟୋଗ ଓ ବିପର୍ଯ୍ୟୟ ତାଙ୍କ ସମ୍ବେଦନଶୀଳ ହୃଦୟରେ ସ୍ଥାୟୀଭାବେ ରେଖାପାତ କଲା । ୧୯୦୨ ମସିହାରେ ସେ ତାଙ୍କର ପ୍ରାଣପ୍ରିୟ ପତ୍ନୀଙ୍କୁ ହରାଇଲେ । ସେହିବର୍ଷ ତାଙ୍କର ଦ୍ୱିତୀୟ କନ୍ୟା ଓ ଗୋଟିଏ ପୁତ୍ର ମଧ୍ୟ ତାଙ୍କଠାରୁ ଚିରଦିନ ପାଇଁ ବିଦାୟ ନେଲେ । ଗଭୀର ଦୁଃଖାନୁଭୂତି ତଥା ମର୍ମବେଦନାହିଁ ନିଜ କବିତାରେ ଆଶା ଆକାଂକ୍ଷା ଓ ସାନ୍ତ୍ୱନା ଭାବେ ସେ ଉଜ୍ଜୀବିତ କଲେ ।

ରବି ଠାକୁରଙ୍କ ପ୍ରଭାବଶାଳୀ କବିତାର ରଚନା ଶୈଳୀ ଭିନ୍ନ ଭିନ୍ନ, କିନ୍ତୁ କ୍ଷୁଦ୍ର କବିତା ରଚନା କରି ସ୍ୱରଦେବାରେ ସେ ଅତ୍ୟନ୍ତ ପାରଦର୍ଶୀ । ଗଙ୍ଗା ନଦୀର ମାଝି ଓ ଗାଉଁଲି ଲୋକଙ୍କ ଦ୍ୱାରା ତାଙ୍କର ଏହି କ୍ଷୁଦ୍ର ଗୀତି କବିତାଗୁଡ଼ିକ ଅଧିକ ଗାନ କରାଯାଉଥିଲା । ନିଜ ଅନୁଭବର ପରିପ୍ରକାଶ ମାଧ୍ୟମରେ ସେ ମାନବିକ ପ୍ରବାହ ସହିତ ସଂଯୋଗ ସ୍ଥାପନ କରିପାରୁଥିବା ବିଷୟ ଉପଲବ୍ଧି କରୁଥିଲେ । ତାଙ୍କ ଭାବର ପ୍ରକାଶ ଭଙ୍ଗୀ ଥିଲା ସାବଲୀଳ ଓ ଭାଷାରେ ତାଙ୍କର ଥିଲା ସ୍ୱତନ୍ତ୍ରତା ।

ପରିବାରର ଜମିଦାରୀ ଦାୟିତ୍ୱ ବୁଝାସୁଝା କରିବାରେ ଯୁବକ ରବୀନ୍ଦ୍ରଙ୍କୁ ବାରମ୍ବାର ଦୂର ସ୍ଥାନକୁ ଯିବାକୁ ପଡୁଥିଲା । ସେଠାରେ ସେ ଶ୍ରମିକ ମୂଲିଆମାନଙ୍କ ନିବିଡ଼ ସଂସ୍ପର୍ଶରେ ଆସିଲେ । ଗରିବ କ୍ଷେତ ମଜୁରିଆ ଓ କୃଷକମାନଙ୍କ ଅଭାବ ଅସୁବିଧା ସେ ବୁଝି ପାରିଥିଲେ । ଏହି ଅନୁଭବ ତାଙ୍କ ଚିନ୍ତାଧାରାରେ ଏକ ନୂତନ ଦିଗନ୍ତ ସୃଷ୍ଟି କଲା ।

୧୯୦୫ ମସିହାରେ ବଙ୍ଗଳା ବିଭାଜନ ତାଙ୍କୁ ଦାରୁଣ ଆଘାତ ଦେଲା । ତିଳକ ଓ ଅରବିନ୍ଦଙ୍କ ସହ ସେ ଉଚ୍ଚକିତାର ଭାଷାରେ ନିଜ ରଚିତ 'ରାଖୀ' କବିତା ଗାଇ ବୁଲିଲେ । ବଙ୍ଗଳାର ଏକତା ରକ୍ଷା ଉଦ୍ଦେଶ୍ୟରେ ନିବିଡ଼ ସଂପର୍କର ପ୍ରତୀକ ଭାବେ କଲିକତାର ଜନଗଣ ପବିତ୍ର ଗଙ୍ଗାରେ ସ୍ନାନ କରି ରାଖୀ ବାନ୍ଧିବା ପାଇଁ ସେ ଆହ୍ୱାନ ଦେଲେ । ଦେଶର ରାଜନୈତିକ ଘୂର୍ଣ୍ଣାବର୍ତ୍ତ ଓ ବିଶୃଙ୍ଖଳା ମଧ୍ୟରେ ସେ ବିଭାଜନ ଦେଖିଲେ । ପ୍ରଚଣ୍ଡ କବି ପ୍ରତିଭା ମଧ୍ୟରେ ଲୁକ୍କାୟିତ ତାଙ୍କ ବାଗ୍ମିତା ପରିସ୍ଫୁଟ ମଧ୍ୟ ହେଲା ।

ଏହି ସମୟ ମଧ୍ୟରେ ବଙ୍ଗଳାର ଜଣେ କବିଭାବେ ସେ ବେଶ୍ ଲୋକପ୍ରିୟ ହୋଇଥିଲେ । କିନ୍ତୁ ୧୯୦୭-୧୯୧୦ ମସିହା ମଧ୍ୟରେ ତାଙ୍କ ଦ୍ୱାରା ରଚିତ ଗୀତାଞ୍ଜଳି ସମଗ୍ର ବିଶ୍ୱରେ ସୁଖ୍ୟାତି ଆଣିଥିଲା । ଗୀତାଂଜଳିର ଇଂରାଜୀ ଅନୁବାଦ ବିଶ୍ୱର ଚାରିଆଡ଼େ ଉଚ୍ଚ ପ୍ରଶଂସା ଲାଭ କଲା । ୧୯୧୩ ମସିହାରେ ସେ ନୋବେଲ ପୁରସ୍କାର ପାଇଲେ । ସଂପୂର୍ଣ୍ଣ ବିଦେଶୀ ଭାଷାରେ କବିତା ରଚନା କରି ସ୍ୱୀଡ଼େନ ଏକାଡ଼େମୀ ଦ୍ୱାରା ସେ ଏସିଆରେ ପ୍ରଥମ ଥର ପାଇଁ ଏହି ବିଶ୍ୱ ପ୍ରସିଦ୍ଧ ପୁରସ୍କାର ଲାଭ କଲେ ।

ଆମପ୍ରତ୍ୟୟ ହିଁ ଥିଲା ରବି ଠାକୁରଙ୍କ ରାଜନୈତିକ ଦର୍ଶନର ମୌଳିକ ସୂତ୍ର । ଏହି ନୀତିରେ ସେ ସ୍ଥିର ରହି ରାଜନୈତିକ ଆଲୋଚନାରେ ବଙ୍ଗଳା ଭାଷା ପାଇଁ ଏକ ସ୍ଥାନ ନିରୂପଣ କଲେ । ଦେଶର ସବୁ କିଛି ପ୍ରସଙ୍ଗ ହିଁ ଦେଶୀୟ ଭାଷାରେ ଆଲୋଚନା ହେବା ଉଚିତ୍ ବୋଲି ସେ ଯୁକ୍ତି ବାଢ଼ିଲେ । ଏହି ଚିନ୍ତାଧାରା ପ୍ରତିଷ୍ଠା ପାଇଁ ତାଙ୍କୁ ବହୁ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥିଲା । ମାତୃଭାଷା ହିଁ ଶିକ୍ଷାର ମାଧ୍ୟମ ହେବା ଉଚିତ- ଏହି ବୈପ୍ଳବିକ ଚିନ୍ତା ତାଙ୍କର ମାନସ ପ୍ରସୂତ ଥିଲା । ସ୍ୱଦେଶୀ ଆନ୍ଦୋଳନରେ ସେ ବୁଦ୍ଧିଜୀବୀମାନଙ୍କର ନେତୃତ୍ୱ ନେଇଥିଲେ ।

କୃଟୀରଶିଳ୍ପ ପ୍ରତିଷ୍ଠା ମାଧ୍ୟମରେ କୃଷକମାନଙ୍କୁ ସହଯୋଗ କରି ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ସେ ଉଦ୍ୟମ କଲେ । ୧୯୦୪ ମସିହା ପୂର୍ବରୁ ଗ୍ରାମ ପୁନର୍ଗଠନ କରିବା ଚିନ୍ତାରେ ସେ ବିବ୍ରତ ଥିଲେ । ବ୍ୟାପକ ଯୋଜନା ମାଧ୍ୟମରେ ଗ୍ରାମାଞ୍ଚଳର ପୁନର୍ଗଠନ ରବି ଜାତୀୟ ଚିନ୍ତାଧାରା ଥିଲା ତତ୍କାଳୀନ ଗଠନାତ୍ମକ ରାଜନୀତିକୁ ତାଙ୍କର ଏକ ମହାନ ଅବଦାନ । ତାଙ୍କର ପ୍ରସିଦ୍ଧ ପୁସ୍ତକ 'ସ୍ୱଦେଶୀ ସମାଜ' ୧୯୦୪ ମସିହାରେ ପ୍ରକାଶ ପାଇଥିଲା ।

ଯୁବକମାନଙ୍କ ମଧ୍ୟରେ ଜାତୀୟତାବୋଧ ଜାଗ୍ରତ କରିବାକୁ ସେ ବହୁ ଦେଶାତ୍ମବୋଧକ ସଂଗୀତ ରଚନା କରିଥିଲେ । ବାଉଲ୍ ଗୀତରେ ଏହିଭଳି ବହୁ ସଂଗୀତରେ ସ୍ୱର ଓ ଲୟଥିଲା । ତାଙ୍କ ରଚନା ମଧ୍ୟରୁ ସର୍ବାଧିକ ଜନପ୍ରିୟ କବିତାଟି ଥିଲା 'ଏକ୍‌ଲା ଚଲୋରେ....' ଏବଂ ତାହା ଏହି ସମୟ ମଧ୍ୟରେ କବି ରଚନା କରିଥିଲେ । ୧୯୧୧ ମସିହାରେ ସେ ରଚନା କଲେ 'ଜନଗଣ ମନ' ଏବଂ ତାକରି ଗାସରକନ ଅବରେ ଗାନ୍ଧିଜୀ,ତିଳକ, ପଣ୍ଡିତ ମାଳବ୍ୟ ଓ ଲାଲାଲଜପତ୍ ରାୟ ପ୍ରମୁଖଙ୍କ ଉପସ୍ଥିତିରେ ରବିଠାକୁର ଏହା ନିଜେ ଗାନ କଲେ ।

୧୯୨୦ ମସିହାରେ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । କିନ୍ତୁ ବିଦେଶୀ ଜିନିଷ ବର୍ଜନ କରି ଭାରତୀୟ ଜିନିଷ ବ୍ୟବହାର ପାଇଁ ଉତ୍ସାହଜନକ କାର୍ଯ୍ୟକ୍ରମର ସ୍ରଷ୍ଟା ଥିଲେ ରବୀନ୍ଦ୍ରନାଥ । ସାମାଜିକ ଉତ୍‌ଥାନ ପାଇଁ ରବୀନ୍ଦ୍ରଙ୍କ ବହୁ ଚିନ୍ତାଧାରା ଗାନ୍ଧିଜୀଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇଥିଲା । ଭାରତର ପ୍ରଗତି ପାଇଁ ଗ୍ରାମଗୁଡ଼ିକୁ ନୂତନଭାବେ ଜୀବନ୍ୟାସ ଦେବାକୁ ହେବ, ଏହି ଚିନ୍ତାଧାରାରେ ସେ ରାଷ୍ଟ୍ରୀୟ ନେତୃବୃନ୍ଦଙ୍କୁ ଭାରତର ଗ୍ରାମାଞ୍ଚଳ ଉପରେ ଦୃଷ୍ଟି ନିବଦ୍ଧ କରିବାକୁ କହୁଥିଲେ । ରାଷ୍ଟ୍ରୀୟ ନେତୃବୃନ୍ଦଙ୍କ ଦ୍ୱାରା ଏହା ଗ୍ରହଣୀୟ ହେବା ପୂର୍ବରୁ ବହୁ ବର୍ଷ ଧରି ସେ ନିଜେ ଏହା କାର୍ଯ୍ୟକାରୀ କରୁଥିଲେ ।

ତାଙ୍କର ପ୍ରଶସ୍ତ ଓ ପରିବ୍ୟାପ୍ତ ଜାତୀୟବାଦୀ ଚିନ୍ତାଧାରା ତାଙ୍କର ଆନ୍ତର୍ଜାତୀୟବାଦର ପ୍ରତୀକ ଥିଲା । ରବି ଠାକୁର ମାନବ ଜାତିକୁ ଭଲ ପାଉଥିଲେ ଏବଂ ସେଥିପାଇଁ ସେ ହୃଦୟର ନିବିଡ଼ତମ ସ୍ଥାନରୁ ସମଗ୍ର ବିଶ୍ୱକୁ ଭଲ ପାଇ ଶିଖିଥିଲେ । ଆନ୍ତର୍ଜାତୀୟ ମାନବବାଦକୁ ବାସ୍ତବରେ ରୂପାୟିତ କରିବାକୁ ୧୯୨୧ ମସିହା ଡିସେମ୍ବର ୨୩ ତାରିଖରେ ସେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କଲେ । ଏହା ଏକ ଅସାଧାରଣ ଶିକ୍ଷାକେନ୍ଦ୍ର, ଯେଉଁଠି ଜଣେ ବିଶ୍ୱ ନାଗରିକ ହେବାକୁ ତାଲିମ ନେଇ ପାରିବ । ବ୍ରିଟେନ,ଚୀନ ଓ ହାଭାର୍ଡ଼ ବିଶ୍ୱବିଦ୍ୟାଳୟ ପ୍ରଭୃତି ବହୁ ଦେଶର ପଣ୍ଡିତ ଓ ପ୍ରବୀଣ ବ୍ୟକ୍ତିମାନେ ନିଜ ନିଜର ଦେଶ ଛାଡ଼ି ରବୀନ୍ଦ୍ରଙ୍କ ସହିତ ମିଶିଲେ । ତାଙ୍କର ଏହି ପ୍ରଶସ୍ତ ଜାତୀୟତାବାଦ ସବୁ ସୀମା ପାର ହୋଇପାରିଥିଲା । ଏହାହିଁ ଥିଲା ତାଙ୍କ ଆନ୍ତର୍ଜାତୀୟବାଦର ପ୍ରତୀକ ।

ଭାରତୀୟ ସଂଗୀତ ଜଗତରେ ସେ ଏକ ନୂତନ ସ୍ୱର ସଂଯୋଜନା କଲେ, ଯାହାକି ସଂପୂର୍ଣ୍ଣ ଅଜଣା ଥିଲା । ଜୀବନର ଚଳଚଞ୍ଚଳ ପ୍ରବାହ ଓ ଭାବବହି ତାଙ୍କ ସଂଗୀତରେ ଅନୁରଣିତ ହୋଇଥିଲା । ସ୍ୱର ଓ ସଂଗୀତ ମଧ୍ୟରେ ସେ ମେଳ ସୃଷ୍ଟି କରିଥିଲେ । ସେ ୨୦୦୦ ରୁ ଅଧିକ କବିତା ରଚନା କରିଥିଲେ । ଜୀବନର ଶେଷ ଦଶନ୍ଧିରେ ସେ ହଠାତ୍ ଚିତ୍ରକଳା ଆରମ୍ଭ କଲେ । ପ୍ରାୟ ୩ ହଜାରରୁ ଊର୍ଦ୍ଧ୍ୱ ଚିତ୍ରକଳା ଗୁରୁଦେବଙ୍କ ଘର ଓ ଶାନ୍ତିନିକେତନରେ ଆଜି ପର୍ଯ୍ୟନ୍ତ ସ୍ମାରକୀଭାବେ ରହିଛି ।

ରବି ଠାକୁରଙ୍କ ଅନନ୍ୟ ସାଧାରଣ ଅଭିବ୍ୟକ୍ତିର ବିନ୍ୟାସ ମୃତ୍ୟୁ ପର୍ଯ୍ୟନ୍ତହିଁ ସତେଜ ଥିଲା । ୧୯୪୧ ମସିହା ଅଗଷ୍ଟ ୭ ତାରିଖରେ ତାଙ୍କ ଜୀବନର ଯବନିକା ପତନ ହେଲା । ୮୦ ବର୍ଷ ୩ ମାସ ପୂର୍ବେ ପ୍ରଥମେ ଯେଉଁ ପୁରୁଣା ଜୋଡ଼ାସାଙ୍କୋ ବାସଭବନରେ ସେ ଆଖି ଖୋଲିଥିଲେ, ସେହିଠାରେ ହିଁ ସେ ଚିରଦିନ ପାଇଁ ଆଖିବୁଜି ଦେଲେ । ତାଙ୍କ ମୃତ୍ୟୁରେ ଗୋଟିଏ ଯୁଗର ଅବସାନ ହେଲା । କବି ଗୁରୁ ରବୀନ୍ଦ୍ରଙ୍କ ନଶ୍ୱରଶରୀର ମାଟିରେ ମିଶିଗଲା ସତ କିନ୍ତୁ ତାଙ୍କର କବିତା, କ୍ଷୁଦ୍ରଗଳ୍ପ, ଉପନ୍ୟାସ, ନାଟକ ଓ ସଂଗୀତ ତାଙ୍କୁ ସବୁଦିନ ପାଇଁ ଜାଜ୍ଜ୍ୱଳ୍ୟ ଓ ଅମର କରି ରଖିଥିବ । ବଙ୍ଗଳା ସାହିତ୍ୟର ସବୁ କ୍ଷେତ୍ରରେ ସେ ହେଉଛନ୍ତି ଶୀର୍ଷତମ ସ୍ଥାନର ଅଧିକାରୀ । ଏସବୁ ଊର୍ଦ୍ଧ୍ୱରେ ସେ ଦେଶପ୍ରେମୀମାନଙ୍କ ମଧ୍ୟରେ ଜଣେ ରାଜକୁମାର । ଏହି ଶତାବ୍ଦୀର ଜଣେ ବିଶ୍ୱବିଖ୍ୟାତ ମହାନ୍ କବିଙ୍କ ସଂଗୀତକୁ ଜାତୀୟ ସଂଗୀତଭାବେ ଆଦରି ନେଇ ଭାରତ ଆଜି ଗର୍ବ ଅନୁଭବ କରୁଛି ।

# ମହାନ୍ ଦେଶପ୍ରେମୀ ଚନ୍ଦ୍ରଶେଖର ଆଜାଦ

''ଦୁଶମନ କି ଗୋଲିଓଁକା ହମ୍ ସାମନା କରେଂଗେ,
ଆଜାଦ ହି ରହେଂଗେ, ଆଜାଦହି ରହେଂଗେ ।''

ଶତ୍ରୁର ଗୁଳିକୁ ମୁଁ ସମ୍ମୁଖୀନ ହେବି । ମୁକ୍ତ ରହିବି ମୁଁ ମୁକ୍ତ ରହିବି । ଚନ୍ଦ୍ରଶେଖର ଆଜାଦଙ୍କ ଏହା ଥିଲା ଜୀବନର ଲକ୍ଷ୍ୟ ।ଉପରୋକ୍ତ ପଂକ୍ତିକୁ ସେ ବାରମ୍ବାର ଦୋହରାଉଥିଲେ ଓ ସେହି ଅନୁଯାୟୀ ନିଜକୁ ମଧ୍ୟ ଗଢ଼ିଥିଲେ । ନୈଷ୍ଠିକ ବ୍ରାହ୍ମଣ ପଣ୍ଡିତ ସୀତାରାମ ତିୱାରୀଙ୍କର ସେ ପୁତ୍ର । ମଧ୍ୟପ୍ରଦେଶର ଝାବୁଆ ଜିଲ୍ଲା ଅନ୍ତର୍ଗତ ବାଭ୍ରା ଗ୍ରାମର ଏହି ଦରିଦ୍ର ବ୍ରାହ୍ମଣ ପରିବାରରେ ୧୯୦୬ ଜୁଲାଇ ୨୩ ତାରିଖରେ ଚନ୍ଦ୍ରଶେଖର ଜନ୍ମ ଗ୍ରହଣ କରିଥିଲେ । ନିକଟରେ ବସବାସ କରୁଥିବା ଆଦିବାସୀ ଭିଲ୍ ବାଳକଙ୍କ ସହ ସେ ଜଂଗଲକୁ ଯାଉଥିଲେ ଶିକାର କରିବାକୁ । ପିଲାବେଳୁ ଚନ୍ଦ୍ରଶେଖରଙ୍କର ଅସ୍ତ୍ରଶସ୍ତ୍ର ପ୍ରତି ପ୍ରବଳ ଦୁର୍ବଳତା ଥିଲା । ତେଣୁ ପରବର୍ତ୍ତୀ ସମୟରେ ସେ ଜଣେ ବିଶିଷ୍ଟ ଜାତୀୟତାବାଦୀ ରୂପେ ନିଜକୁ ପ୍ରତିଷ୍ଠା କରିପାରିଥିଲେ । ମାତୃଭୂମିର ସ୍ୱାଧୀନତା ପାଇଁ ସେ ପ୍ରାଣବଳୀ ଦେବାକୁ ପଛଘୁଞ୍ଚା ଦେଉନଥିଲେ ।

ମାତ୍ର ୧୪ ବର୍ଷ ବୟସରେ ତାଙ୍କୁ ସଂସ୍କୃତ ପାଠଶାଳାରେ ଅଧ୍ୟୟନ କରିବା ଲାଗି ବାରାଣସୀ ପଠାଯାଇଥିଲା । ସେତେବେଳେ ଜାତୀୟ ଆନ୍ଦୋଳନ ଜନମାନସକୁ ଉଦ୍‌ବେଳିତ କରି ରଖିଥାଏ । ୧୯୨୦-୨୧ ରେ ଅହିଂସା ଓ ଅସହଯୋଗ ଆନ୍ଦୋଳନର ପ୍ଲାବନ ଦେଶର ଚତୁର୍ଦ୍ଦିଗରେ । କିଶୋର ଚନ୍ଦ୍ରଶେଖର ଅଧ୍ୟୟନ କରିବାକୁ ଯାଇ ଏହି ଆନ୍ଦୋଳନର ମୁଖ୍ୟସ୍ରୋତ ପ୍ରତି ବିଶେଷଭାବେ ଆକୃଷ୍ଟ ହେଲେ । ଏମିତି ଧୀରସୁସ୍ଥ ହୋଇ ଅଧ୍ୟୟନ କରିବା ଅପେକ୍ଷା କିଛି ଲଢୁଆ କାର୍ଯ୍ୟରେ ପାରଦର୍ଶିତା ଦେଖାଇବାରେ ତାଙ୍କର ଆଗ୍ରହ ବେଶୀ । ତେଣୁ ଅଳ୍ପ ବୟସରେ ଜାତୀୟବାଦୀ ଆନ୍ଦୋଳନରେ ସାମିଲ ହୋଇ ସେ ଗିରଫ ହେଲେ । ସ୍ୱଳ୍ପ ବୟସର କୁନି କୁନି ହାତ ପାଇଁ ହାତକଡ଼ାର ଆକାର ଯଥେଷ୍ଟ ବଡ଼ଥିଲା, ତେଣୁ ତାଙ୍କୁ ହାଜତକୁ ବାନ୍ଧି ନିଆଯାଇଥିଲା ।

ମାଜିଷ୍ଟ୍ରେଟ ଉଜିଲାସରେ ତାଙ୍କ ମାମଲାର ବିଚାରବେଳେ ସେ ତାଙ୍କ ନିଜ ନାମ 'ଆଜାଦ', ପିତାଙ୍କ ନାମ 'ସ୍ୱତନ୍ତ୍ର' ଓ ଠିକଣା ବନ୍ଦୀଶାଳା ବୋଲି କହିଥିଲେ । ଦଣ୍ଡସ୍ୱରୂପ ତାଙ୍କୁ ଚାବୁକରେ ପ୍ରହାର କରାଯାଇଥିବା ବେଳେ ସେ ମହାଃ ଗାନ୍ଧୀ କି ଜୈ, ବନ୍ଦେ ମାତରମ୍ ପ୍ରଭୃତି ସ୍ଲୋଗାନ ଦେଇ ଚାଲିଥିଲେ । ବାରାଣସୀର ଲୋକେ ସାହସିକତା ଓ ଦେଶ ପ୍ରେମ ପାଇଁ ତାଙ୍କୁ 'ଆଜାଦ' ନାମରେ ସମ୍ମାନିତ କରିଥିଲେ । ସେହି ସମୟରୁ ସେ ଚନ୍ଦ୍ରଶେଖର ଆଜାଦ ନାମରେ ସୁପରିଚିତ ।

ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହୃତ ହେବାପରେ ବିପ୍ଲବର ବହ୍ନି ପ୍ରଜ୍ୱଳିତ ହେଲା । ଆଜାଦଙ୍କ ବିପ୍ଳବୀ ମନ ସତେ ଯେପରି ସୁଯୋଗକୁ ଅପେକ୍ଷା କରିଥିଲା । ସେ ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପବ୍ଲିକାନ ବାହିନୀରେ ଯୋଗ ଦେଇ ସଂଗଠନର ନେତାମାନଙ୍କ ଶ୍ରଦ୍ଧାଭାଜନ ହୋଇଥିଲେ । ରାମ ପ୍ରସାଦ ବିସ୍‌ମିଲଙ୍କ ନେତୃତ୍ୱରେ ପ୍ରତ୍ୟେକ ସଶସ୍ତ୍ର କାର୍ଯ୍ୟାନୁଷ୍ଠାନରେ ଚନ୍ଦ୍ରଶେଖର ଅଂଶ ଗ୍ରହଣ କଲେ । ଏହି ଦଳର ଅନ୍ୟ ନେତାମାନେ ହେଲେ- ମନ୍ମଥନାଥ ଗୁପ୍ତ, ଭଗତ ସିଂହ, ରାଜଗୁରୁ ଓ ଶୁକଦେବ ପ୍ରମୁଖ ।

କାଓକାରି ଷଡ଼ଯନ୍ତ୍ର, ଆସେମ୍ବ୍ଲି ବୋମା ବିସ୍‌ଫୋରଣ, ଭାଇସରାୟଙ୍କ ଟ୍ରେନକୁ ଉଡ଼ାଇ ଦେବାର ଉଦ୍ୟମ ପ୍ରଭୃତିରେ ଏହି ଗୋଷ୍ଠୀ ସାହସିକତାର ସହ କାର୍ଯ୍ୟ କରିଥିଲେ । ଲୋକମୁଖରେ ଏହି ବୀରତ୍ୱର ଗାଥା ଏବେ ମଧ୍ୟ ଅନୁରଣିତ । ଆଜାଦଙ୍କ ଏହି କାର୍ଯ୍ୟରେ ଅନ୍ୟତମ ସହଯୋଗୀ ଥିଲେ ବଟକେଶ୍ୱର ଦତ୍ତ । ସରକାର ବିରୋଧୀ ଏହି ବୈପ୍ଳବିକ କାର୍ଯ୍ୟରେ ସେ ଅଂଶୀଦାର ଥିବାରୁ ତାଙ୍କୁ ଗିରଫ କରିବା ପାଇଁ ପୁଲିସ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଥିଲେ । କିନ୍ତୁ ସବୁ ସମୟରେ ବେଶ ବଦଳାଇ ସେ ପୁଲିସ ଘେରରୁ ଖସିଯାଉଥିଲେ ।

ଘୋର ପ୍ରତିକୂଳ ପାରିବାରିକ ପରିବେଶରେ ଜନ୍ମ ଗ୍ରହଣ କରି ସେଭଳି କୌଣସି ଶିକ୍ଷାଦୀକ୍ଷା ନନେଇ ଆଜାଦ ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପବ୍ଲିକାନ ସେନାର ନେତୃତ୍ୱ ନେବାକୁ ସମର୍ଥ ହୋଇଥିଲେ । କେବଳ ଅପୂର୍ବ ସାହସ, ସାଧାରଣ ଜ୍ଞାନକୁ ଖଟେଇ ନିରବଚ୍ଛିନ୍ନ ଭାବେ ବ୍ରିଟିଶ ରାଜ ବିରୋଧରେ ସଂଗ୍ରାମ ଚଳାଇଥିଲେ । ସଂଗ୍ରାମ, ସ୍ୱାଧୀନତା ଓ ବିପ୍ଳବହିଁ ଥିଲା ତାଙ୍କର ପ୍ରିୟ ଶବ୍ଦ । ଭାରତର ମୁକ୍ତି ପାଇଁ ଏହାହିଁ ତାଙ୍କୁ ପ୍ରେରଣା ଯୋଗାଉ ଥିଲା ।

ସମାଜବାଦୀ ବିପ୍ଳବର ଭିତ୍ତିଭୂମି ଉପରେ ଗଣବିପ୍ଳବ ଗଢ଼ିତୋଳିବା ପାଇଁ ସମୟ ଏବେ ଉପସ୍ଥିତ ବୋଲି ଆଜାଦ ମନେ

କରୁଥିଲେ । ସମାଜବାଦୀ ଆଦର୍ଶ ପ୍ରତି ତାଙ୍କର ଗଭୀର ଆସ୍ଥା ଥିଲା । ତେଣୁ ତାଙ୍କ ଦଳର ଜଣେ ସଦସ୍ୟଙ୍କୁ ଋଷିଆର ବୋଲଶେଭିକ୍ ବିପ୍ଳବ କିଭଳି ସଫଳ ହେଲା ତାହା ଅନୁଧ୍ୟାନ କରିବା ପାଇଁ ଋଷ ପଠାଇଥିଲେ ।

ଆଜାଦ ନିଜ ଦଳର ଜଣେ ସହଯୋଗୀଙ୍କ ପ୍ରତାରଣାର ଶିକାର ହେଲେ । ଆହ୍ଲାବାଦର ଆଲଫ୍ରେଡ୍ ପାର୍କକୁ ସଶସ୍ତ୍ର ପୁଲିସ ବାହିନୀ ୧୯୩୧ ଫେବୃୟାରୀ ୨୭ ତାରିଖରେ ଘେରାଉ କରି ରଖିଥିଲେ । ପାର୍କରେ ଆଜାଦ ଥାଆନ୍ତି, ନିକଟରେ କେବଳ ଗୋଟିଏ ପିସ୍ତଲ ଓ ଅଳ୍ପ କେତେ ରାଉଣ୍ଡ ଗୁଳି । ତଥାପି ସେ ପଛଘୁଞ୍ଚା ନଦେଇ ଏକକଭାବେ ପୁଲିସ ସହ ଲଢ଼େଇ କରିଚାଲିଥାନ୍ତି । ଶେଷରେ ମାତ୍ର ଗୋଟିଏ ରାଉଣ୍ଡ ଗୁଳିଥାଏ ତାଙ୍କ ନିକଟରେ । ଜୀବନର ଅନ୍ୟତମ ଲକ୍ଷ୍ୟ-ଗିରଫ ହେବେ ନାହିଁ, ଆଜାଦହିଁ ରହିବେ । ତେଣୁ ଅନ୍ୟକିଛି ଉପାୟ ନପାଇ ପିସ୍ତଲର ଶେଷ ରାଉଣ୍ଡ ଗୁଳି ନିଜ ମୁଣ୍ଡରେହିଁ ବସାଇଥିଲେ । ସେହିଠାରେହିଁ ଏହି ମହାନ୍ ବିପ୍ଳବୀ ଜୀବନର ଅବସାନ ଘଟିଲା ।

ଆଜାଦଙ୍କ ସଂଗ୍ରାମୀ ଜୀବନ ଦେଶପ୍ରେମର ଏକ ଦୀପ୍ତିମାନ ପ୍ରତୀକ । ଦେଶର ଯୁବ ସମାଜକୁ ଶତ୍ରୁର ଗୁଳିକୁ ସାହସିକତାର ସମ୍ମୁଖୀନ ହେବା ପାଇଁ ପ୍ରେରଣା ଯୋଗାଏ । ଭାରତର ଦରିଦ୍ର, ନିରକ୍ଷର ଓ ଶୋଷିତ ଜନସମୁଦାୟକୁ ସାମ୍ୟ, ମୈତ୍ରୀ ଓ ମୁକ୍ତିର ପଥପ୍ରଦର୍ଶକ ଥିଲେ ଚନ୍ଦ୍ରଶେଖର ଆଜାଦ ।

## ୧୦ ବର୍ଷ ଭିତରେ ଓଡ଼ିଶାରେ ଧାନ ଉତ୍ପାଦନ ଚାରିଗୁଣ ହୋଇପାରିବ

*ମୁଖ୍ୟମନ୍ତ୍ରୀ*

ଓଡ଼ିଶାରେ ସଂକର ଧାନ ଉତ୍ପାଦନ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ଅର୍ଜନ କରିଥିବା ଚାଷୀମାନଙ୍କୁ ସୂଚନା ଭବନଠାରେ ଆୟୋଜିତ ଏକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ସମ୍ବର୍ଦ୍ଧିତ କରିଥିଲେ ।

ସଭାରେ ଭାଷଣ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ, ରାଜ୍ୟରେ ଧାନ ଉତ୍ପାଦନ ଦୁଇ ଗୁଣ କରିବା ପାଇଁ ଯେଉଁ ଲକ୍ଷ୍ୟ ରଖାଯାଇଛି ତାହା ନିଶ୍ଚିତ ରୂପେ ସଫଳ ହେବ ବୋଲି ଆଜିର ଏହି କୃତୀ ଚାଷୀମାନଙ୍କ ଅନୁଭୂତିରୁ ଜଣାପଡୁଛି ।

କୃଷି ବିଭାଗ, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ ଓ କଟକସ୍ଥିତ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ପରସ୍ପର ଭିତରେ ସଂପର୍କ ରଖି ସମନ୍ୱିତ ଉଦ୍ୟମ କଲେ ଆଗାମୀ ୧୦ ବର୍ଷ ଭିତରେ ଧାନ ଉତ୍ପାଦନ ୩-୪ ଗୁଣ ବୃଦ୍ଧି ପାଇପାରେ ।

ମୁଖ୍ୟମନ୍ତ୍ରୀ ପୁଣି କହିଲେ ଯେ, ଧାନ ଚାଷର ବିକାଶ ଦ୍ୱାରା ଓଡ଼ିଶାର ଦାରିଦ୍ର୍ୟ ଅଚିରେ ଦୂର ହୋଇପାରିବ । ସେଥିପାଇଁ ଓଡ଼ିଶାରେ କୃଷି ବିପ୍ଳବକୁ ସଫଳ କରିବା ପାଇଁ ସେ ରାଜ୍ୟ ଚାଷୀମାନଙ୍କୁ ଆହ୍ୱାନ ଜଣାଇଥିଲେ ।

ଶ୍ରୀ ପଟ୍ଟନାୟକ କହିଲେ ଓଡ଼ିଶାରେ ହାଇବ୍ରିଡ ଧାନର ପ୍ରସାର ପାଇଁ ନୂଆ ବୈପ୍ଳବିକ ଉଦ୍ୟମ ଆରମ୍ଭ ହୋଇଛି । ଚାଷୀର ଉଦ୍ୟମ, ଠିକ ସମୟରେ ପାଣି ଓ ସାରର ପ୍ରୟୋଗ ଦ୍ୱାରା ହାଇବ୍ରିଡ ଧାନ ଚାଷରେ ଅତୀବ ସଫଳତା ମିଳିପାରିବ ବୋଲି ଓଡ଼ିଶାର ଚାଷୀମାନେ ପ୍ରମାଣ କରି ଦେଇଛନ୍ତି ।

ହେକ୍ଟର ପିଛା ୧୧'୮ କ୍ୱିଣ୍ଟାଲ ହାଇବ୍ରିଡ ଧାନ ଅମଳ କରିଥିବା କେନ୍ଦୁଝର ଜିଲ୍ଲାର ଚାଷୀ ଶ୍ରୀ ବନବିହାରୀ ମହାନ୍ତି ସାରା ଓଡ଼ିଶାରେ ପ୍ରଥମ ସ୍ଥାନ ଏବଂ ସେହି ଜିଲ୍ଲାର ଶ୍ରୀ ଚନ୍ଦ୍ରଶେଖର ବେହେରା ୧୧୨ କ୍ୱିଣ୍ଟାଲ ଧାନ ଉତ୍ପାଦନ କରି ଦ୍ୱିତୀୟ ସ୍ଥାନ ଓ ଝାରସୁଗୁଡ଼ା ଜିଲ୍ଲାର ଶ୍ରୀ ଶ୍ରୀବଲ୍ଲଭ ସାହୁ ୧୧୦ କ୍ୱିଣ୍ଟାଲ ଧାନ ଉତ୍ପାଦନ କରି ତୃତୀୟ ସ୍ଥାନ ଅଧିକାର କରିଛନ୍ତି । ମୁଖ୍ୟମନ୍ତ୍ରୀ ସେମାନଙ୍କୁ ଉପଢୌକନ ଓ ମାନପତ୍ର ଦେଇ ସମ୍ମାନିତ କରିଥିଲେ । କୃତୀ ଚାଷୀତ୍ରୟ ସେମାନଙ୍କର ଅନୁଭୂତି ବର୍ଣ୍ଣନା କରିଥିଲେ ।

କୃଷି ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ ପ୍ରାରମ୍ଭିକ ସୂଚନାରେ କେନ୍ଦୁଝର, ଝାରସୁଗୁଡ଼ା, ନବରଙ୍ଗପୁର ଓ ବୌଦ୍ଧ ଜିଲ୍ଲାର ଚାଷୀମାନେ ହେକ୍ଟର ପିଛା ୧୦ ଟନର ଅଧିକ ହାଇବ୍ରିଡ୍ ଧାନ ଉତ୍ପାଦନ କରିପାରିଛନ୍ତି ଏବଂ ଓଡ଼ିଶାର ପଶ୍ଚିମାଞ୍ଚଳ ଓ ଦକ୍ଷିଣାଞ୍ଚଳ ଜିଲ୍ଲାର ଚାଷୀମାନେ ଉପକୂଳବର୍ତ୍ତୀ ଜିଲ୍ଲାର ଚାଷୀମାନଙ୍କ ଅପେକ୍ଷା ଏ ଦିଗରେ ଅଧିକ ସଫଳତା ହାସଲ କରିଛନ୍ତି ବୋଲି ପ୍ରକାଶ କରିଥିଲେ । ହାଇବ୍ରିଡ ବିହନ ପ୍ରୟୋଗ ଦ୍ୱାରା ରାଜ୍ୟରେ ୫ ବର୍ଷରେ ଧାନ ଉତ୍ପାଦନ ଦ୍ୱିଗୁଣିତ କରିବାର ଯେଉଁ ଉଚ୍ଚାକାଂକ୍ଷୀ ଲକ୍ଷ୍ୟ ରଖାଯାଇଛି ତାହା ସାକାର ହୋଇପାରିବ ବୋଲି ସେ ଆଶା ପ୍ରକାଶ କରିଥିଲେ ।

କୃଷି ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ରାଜକିଶୋର ରାଜବଳ, କୃଷି ଉତ୍ପାଦନ କମିଶନର ଶ୍ରୀ ରବୀନ୍ଦ୍ର ମୋହନ ସେନାପତି, କଟକସ୍ଥିତ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ଡଃ କେ.ସି. ମାଥୁର କୃତୀ ଚାଷୀମାନଙ୍କୁ ଅଭିନନ୍ଦନ ଜଣାଇଥିଲେ । କୃଷି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ରମାକାନ୍ତ ମିଶ୍ର ଉତ୍ସବରେ ଅଧ୍ୟକ୍ଷତା କରିଥିଲେ ।

# ସ୍ୱରାଜ୍ୟର ଅନ୍ୟତମ ବିନ୍ଧାଣୀ : ଡଃ ଆନି ବେସାନ୍ତ

**ଡଃ** ଆନି ବେସାନ୍ତ ଯେ କେବଳ ଜଣେ ପ୍ରଖ୍ୟାତ ସମାଜସେବୀ ଓ ଶିକ୍ଷାବିତ୍ ଥିଲେ ତାହା ନୁହେଁ, ଏହା ସହିତ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ତାଙ୍କର ଅବଦାନ ମଧ୍ୟ ଅବିସ୍ମରଣୀୟ । ସେ ତାଙ୍କର ସାଧାରଣ ଜୀବନଯାତ୍ରା ଇଂଲଣ୍ଡରେ ଆରମ୍ଭ କରିଥିଲେ । ସେଠାରେ ସେ ଅନ୍ଧବିଶ୍ୱାସ, ସାମାଜିକ ଅନ୍ୟାୟ ଏବଂ ଧର୍ମାନ୍ଧତା ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଥିଲେ । ଏହାପରେ ସେ ଭାରତ ଆସି ଏହାର ସ୍ୱାଧୀନତା ସଂଗ୍ରାମରେ ନିଜକୁ ସଂପୂର୍ଣ୍ଣଭାବେ ସାମିଲ କରିଦେଲେ । ସେ କହୁଥିଲେ ଭାରତର ସ୍ୱାଧୀନତା ସଂଗ୍ରାମରେ ନିଜକୁ ସାମିଲ କରି ପୃଥିବୀରେ ଏକ ସ୍ୱତନ୍ତ୍ର କାର୍ଯ୍ୟ ସେ ପୂରଣ କଲେ ବୋଲି ଭାବୁଛନ୍ତି ।

ଠିକ୍ ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ ଆନି ବେସାନ୍ତଙ୍କର ପ୍ରସ୍ତାବ ଥିଲା ଯେ ବ୍ରିଟିଶ ସାମ୍ରାଜ୍ୟ ପୁନର୍ଗଠନ କରାଯାଉ ଏବଂ ଏଥିରେ ଭାରତକୁ ସ୍ୱାୟତ୍ତ ଶାସନ ଦେଇ ସମାନ ଅଧିକାର ପ୍ରଦାନ କରାଯାଉ । ୧୯୧୫ ମସିହାରେ ସେ "ହୋମ ରୁଲ ଲିଗ୍" ଆରମ୍ଭ କରି ଭାରତର ସ୍ୱାଧୀନତା ପାଇଁ ଭାରତବାସୀଙ୍କୁ ଏକାଠି କଲେ । ଅବଶ୍ୟ ଏଥିନିମନ୍ତେ ତାଙ୍କୁ ବ୍ରିଟିଶ ଶାସକଙ୍କର ରୋଷର ଶିକାର ହେବାକୁ ପଡ଼ିଥିଲା ଏବଂ ଉଦାରପନ୍ଥୀ ନେତାମାନଙ୍କ ସହିତ ତାଙ୍କର ମତଭେଦ ଉପୁଜି ଥିଲା । ଏହାସତ୍ତ୍ୱେ ବି ବ୍ରିଟିଶ ଶାସନ ବିରୁଦ୍ଧରେ ତାଙ୍କର ଅଭିଯାନ ଅବ୍ୟାହତ ଥିଲା । ସେତେବେଳେ "ନ୍ୟୁ ଇଣ୍ଡିଆ" ନାମକ ଏକ ସମ୍ବାଦପତ୍ରର ସଂପାଦନା ଡଃ ଆନିବେସାନ୍ତ କରୁଥିଲେ । ସେଥିରେ ସେ ଭାରତର ସ୍ୱାଧୀନତା ପାଇଁ ଲୋକମତ ସୃଷ୍ଟି କରିଥିଲେ ।

ଉକ୍ତ ସମ୍ବାଦପତ୍ରରେ ଏକ ଲେଖାରେ ସେ ଉଲ୍ଲେଖ କରିଥିଲେ, " ଆମେ ମୁକ୍ତି ଦାବି କରୁଛୁ, ଅନୁକଂପା ନୁହେଁ । ଆମେ ସ୍ୱାଧୀନତା ଦାବି କରୁଛୁ, ସରକାରଙ୍କର ସଦିଚ୍ଛା ନୁହେଁ । ସ୍ୱାଧୀନତା ହେଉଛି ପ୍ରତ୍ୟେକ ବ୍ୟକ୍ତିର ଅଧିକାର । ଆଇନଗତ ପ୍ରକ୍ରିୟା ବିନା ଏହାକୁ କେହି ଉପଭୋଗ କରିପାରିବେ ନାହିଁ । ଏହା ଉପରେ ଆହୁରି ଅନେକ ଲେଖା ସେ ପ୍ରକାଶ କରିଥିଲେ । "ନ୍ୟୁ ଇଣ୍ଡିଆ"କୁ ପାଠ କରିବା ପାଇଁ ଲୋକମାନେ ଆଗ୍ରହରେ ଅପେକ୍ଷା କରିଥିଲେ । ତାଙ୍କର ସଂପାଦକୀୟ ଲୋକମାନଙ୍କୁ ପ୍ରୋତ୍ସାହିତ କରୁଥିଲା ଏବଂ ଲୋକମାନେ ନ୍ୟୁ ଇଣ୍ଡିଆ ପାଠ କରି ସ୍ୱାଧୀନତା ସଂଗ୍ରାମର ପ୍ରଗତି ସଂପର୍କରେ ଜାଣିବାକୁ ପାଉଥିଲେ ।

ଦେଶର ବିଭିନ୍ନ ସ୍ଥାନରେ ହୋମରୁଲ ଲିଗ୍ ପ୍ରସାରିତ ହେଲା । ଏହାର ବେଗ ମଧ୍ୟ ଦ୍ରୁତ ଥିଲା । ପ୍ରାୟ ପ୍ରତ୍ୟେକ ବଡ଼ ବଡ଼ ସହରରେ ଏହାର ଶାଖା ପ୍ରତିଷ୍ଠା କରାଗଲା । ଏପରିକି କେତେକ ଉପଖଣ୍ଡରେ ମଧ୍ୟ ଏହାର ଶାଖା ପ୍ରତିଷ୍ଠା କରାଯାଉଥିଲା । ଆନି ବେସାନ୍ତଙ୍କର ଏହି ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମରେ ବ୍ରିଟିଶ ସରକାର ବ୍ୟସ୍ତ ହୋଇଉଠିଲେ । ତାଙ୍କର ଲୋକପ୍ରିୟତା ବ୍ରିଟିଶ ସରକାରଙ୍କ ମୁଣ୍ଡ ବ୍ୟଥାର କାରଣ ହେଲା । ତେଣୁ ବାଧ୍ୟ ହୋଇ ୧୯୧୭ ମସିହାରେ ଆନି ବେସାନ୍ତ ଓ ତାଙ୍କର ଦୁଇଜଣ ଘନିଷ୍ଠ ସହଯୋଗୀଙ୍କୁ ବ୍ରିଟିଶ ସରକାର ଉଟକାମଣ୍ଡଠାରେ ନଜର ବନ୍ଦୀ କରି ରଖିଥିଲେ ।

କିନ୍ତୁ ବ୍ରିଟିଶ ସରକାରଙ୍କର ଏହି କାର୍ଯ୍ୟ ସ୍ୱାଧୀନତା ସଂଗ୍ରାମ ରୂପକ ଅନଳରେ ଘିଅ ଢ଼ାଳି ଦେଲା । ଚାରିଆଡ଼େ ବ୍ୟାପକ ଆନ୍ଦୋଳନ ମୁଣ୍ଡଟେକି ଉଠିଲା । ଏପରିକି ଯେଉଁମାନେ ଦେଶର ରାଜନୈତିକ ସମସ୍ୟା ପ୍ରତି ଧ୍ୟାନ ଦେଉନଥିଲେ, ସେମାନେ ମଧ୍ୟ ସକ୍ରିୟ ହୋଇ ଉଠିଲେ । ଏହା ଫଳରେ ଦେଶର ସ୍ୱାଧୀନତା ଆନ୍ଦୋଳନରେ ଡ଼ଃ ବେସାନ୍ତ ଅତି ପରିଚିତ ହୋଇଗଲେ । ସବୁରି ମୁହଁରେ ତାଙ୍କର ଜୟ ଜୟକାର । ୧୯୧୭ ମସିହାରେ କଂଗ୍ରେସର କଲିକତା ଅଧିବେଶନରେ ସେ ସଭାପତି ଭାବେ ନିର୍ବାଚିତ ହେଲେ ।

ଏହା ପୂର୍ବରୁ ୧୯୧୬ ମସିହାରେ କଂଗ୍ରେସର ଲକ୍ଷ୍ନୌ ଅଧିବେଶନରେ ଆନି ବେସାନ୍ତଙ୍କ ମଧ୍ୟସ୍ଥତାରେ ସ୍ୱାଧୀନତା ଆନ୍ଦୋଳନର ଉଦାରପନ୍ଥୀ ଓ ଉଗ୍ରପନ୍ଥୀମାନଙ୍କ ମଧ୍ୟରେ ଏକ ବୁଝାମଣା ହୋଇଥିଲା । ପ୍ରାୟ ଏକ ଦଶଂଧିରୁ ଊର୍ଦ୍ଧ୍ୱ କାଳ ହେଲା ଏହି ଦୁଇଗୋଷ୍ଠୀ ମଧ୍ୟରେ ମନୋମାଳିନ୍ୟ ରହିଥିଲା । ଆନି ବେସାନ୍ତଙ୍କ ଉଦ୍ୟମ ଯୋଗୁ ମୁସଲିମ୍ ଲିଗ୍ ମଧ୍ୟ କଂଗ୍ରେସ ସହ ହାତ ମିଳାଇଲା । ଏହା ଆନି ବେସାନ୍ତଙ୍କର ଧୈର୍ଯ୍ୟ ଏବଂ ଦକ୍ଷ କୂଟନୀତି ଯୋଗୁ ସମ୍ଭବ ହୋଇଥିଲା । କଂଗ୍ରେସ ଏବଂ ମୁସଲିମ୍ ଲିଗ୍ ପକ୍ଷରୁ ମିଳିତ ଦାବି ବ୍ରିଟିଶ ସରକାରଙ୍କଠାରେ ଉପସ୍ଥାପନ କରାଗଲା । ଏହାକୁ ଲକ୍ଷ୍ନୌ ରାଜିନାମା

ନାମରେ ନାମିତ କରାଯାଏ । ଏହାକୁ ଆନି ବେସାନ୍ତ ରୂପରେଖ ଦେଇଥିଲେ ।

ଆନି ବେସାନ୍ତଙ୍କ ନେତୃତ୍ୱରେ କଂଗ୍ରେସ ସ୍ୱାଧୀନତା ସଂଗ୍ରାମ ଚଳାଇବାରୁ ଏଥିପ୍ରତି ଏପରି କେତେକ କ୍ଷେତ୍ରରୁ ସମର୍ଥନ ଆସିଲା; ଯାହାକି କେବେ ଆଶା କରାଯାଇନଥିଲା । ୧୯୧୭ ମସିହାରେ ଅନୁଷ୍ଠିତ ହୋଇଥିବା ପ୍ରଥମ ସାମ୍ରାଜ୍ୟ ଯୁଦ୍ଧ ସମ୍ମିଳନୀରେ ମତ ପ୍ରକାଶ ପାଇଥିଲା ଯେ ବ୍ରିଟିଶ ସାମ୍ରାଜ୍ୟ ଅଧୀନରେ ଯେଉଁ ସବୁ ଅଞ୍ଚଳ ଅଛି ତାହାକୁ ଡୋମିନିୟନର ସ୍ୱୀକୃତି ଦିଆଯିବ । ଭାରତକୁ ଇଂପିରିଆଲ କମନ୍‌ୱେଲଥ ଅଫ୍ ଇଣ୍ଡିଆର ମର୍ଯ୍ୟାଦା ଦିଆଯିବ । କେବଳ ସେତିକି ନୁହେଁ, ବ୍ରିଟିଶ ସାମ୍ରାଜ୍ୟରେ ଭାରତକୁ ଏକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳଭାବେ ଗ୍ରହଣ କରାଯିବ । ବ୍ରିଟିଶ ସରକାର ଜନମତକୁ ଉପେକ୍ଷା କରି ମଣ୍ଟେଗୁ ଚେମସ୍‌ଫୋର୍ଡ଼ ପ୍ରସ୍ତାବକୁ ପ୍ରସ୍ତୁତ କରିବା ସହିତ ଏହାକୁ କାର୍ଯ୍ୟକାରୀ କଲେ ।

ଡ଼ଃ ଆନି ବେସାନ୍ତ କଂଗ୍ରେସ ସଭାପତି ଥିବାବେଳେ ଦଳରେ ହୋମ୍ ରୁଲ ଲିଗ୍ ଢାଞ୍ଚାର ପ୍ରୟୋଗ କରିଥିଲେ । ଏହାଫଳରେ ପ୍ରାଦେଶିକ, ଜିଲ୍ଲା ସ୍ତରୀୟ ଏବଂ ଆଞ୍ଚଳିକ ସ୍ତରରେ ଶାଖାମାନ ପ୍ରତିଷ୍ଠା କରାଗଲା । କଂଗ୍ରେସ ଢାଞ୍ଚାରେ ଏହି ଯେଉଁ ପରିବର୍ତ୍ତନ ହେଲା ତାହା ସ୍ୱାଧୀନତା ଆନ୍ଦୋଳନକୁ ବ୍ୟାପକ କରିବା ସହିତ ଏହାକୁ ତୀବ୍ର କଲା ।

ପ୍ରଥମ ବିଶ୍ୱଯୁଦ୍ଧ ପରେ ଭାରତକୁ ହୋମରୁଲ କିମ୍ବା ଡୋମିନିୟନ ପାହ୍ୟା ଦେବା ପାଇଁ ଆନି ବେସାନ୍ତ ବ୍ରିଟିଶ ସରକାରଙ୍କ ଉପରେ ଚାପ ପକାଇବା ସହିତ ଭାରତୀୟମାନେ ଯେପରି ସଂବିଧାନ ପ୍ରଣୟନ କରିପାରିବେ ସେଥିନିମନ୍ତେ ଏକ ପ୍ରସ୍ତାବ ମଧ୍ୟ ରଖିଥିଲେ ।

ଏହା ଫଳରେ ଏକ ଜାତୀୟ କନଭେନସନର ଆୟୋଜନ କରାଗଲା ଓ ଡ଼ଃ ଆନି ବେସାନ୍ତ ଏବଂ ସାର ତେଜ ବାହାଦୂର ସାପ୍ରୁ ୧୯୨୨ ରୁ ୧୯୨୪ ପର୍ଯ୍ୟନ୍ତ ଏହା ଉପରେ କାର୍ଯ୍ୟ କରିଥିଲେ । ଏମାନେ କାମନୱେଲ୍‌ଥ ଭାରତ ବିଲ ପ୍ରସ୍ତୁତ କରିଥିଲେ ।

୧୯୨୬ ମସିହାରେ ବ୍ରିଟେନ ପାର୍ଲିଆମେଣ୍ଟର ହାଉସ୍ ଅଫ୍ କମନ୍‌ସରେ ଏହି ବିଲ ପ୍ରସ୍ତାବର ପ୍ରଥମ ପାଠ କରାଯାଇଥିଲା । ଭାରତକୁ ସ୍ୱାଧୀନତା ଦେବା ପାଇଁ ଏହା ଥିଲା ପ୍ରଥମ ସଂସଦୀୟ ପଦକ୍ଷେପ ।

କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପାଇଁ ଗାନ୍ଧିଜୀ ଯେଉଁ ମାର୍ଗ ବାଛିଥିଲେ, ତାହାକୁ ଆନି ବେସାନ୍ତ ବିରୋଧ କରିବାରୁ ଧୀରେ ଧୀରେ ତାଙ୍କର ଲୋକପ୍ରିୟତା ହ୍ରାସ ପାଇବାକୁ ଲାଗିଲା । ୧୯୨୦ ରୁ କଂଗ୍ରେସରେ ଗାନ୍ଧିଜୀଙ୍କ ପ୍ରଭାବ ଆରମ୍ଭ ହେଲା । ଆଇନସଙ୍ଗତ ଉପାୟରେ ଏବଂ ସଂବିଧାନର ବେଷ୍ଟନୀ ମଧ୍ୟରେ ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିବା ଆନି ବେସାନ୍ତ ଆଇନ ଅମାନ୍ୟ ଆନ୍ଦୋଳନକୁ ଗ୍ରହଣ କରିବାକୁ ରାଜିହେଲେ ନାହିଁ । ଏପରି ଚିନ୍ତାଧାରା ତାଙ୍କୁ ବାଧିଲା । ଯେକୌଣସି କାରଣ ପାଇଁ ଯେକୌଣସି ଉପାୟରେ ଆଇନ ଭଂଗ କାର୍ଯ୍ୟକୁ ସେ ନାପସନ୍ଦ କଲେ ।

ଯଦିଓ ଡ଼ଃ ଆନି ବେସାନ୍ତ ଉପଲବ୍ଧି କଲେ ଯେ ସଂଗ୍ରାମର ଯେଉଁ ଧାରା ସେ ବାଛି ନେଇଥିଲେ ତାହାର ପ୍ରଭାବ ଆଉ ଜନସାଧାରଣଙ୍କ ଉପରେ ନାହିଁ, ତଥାପି ସେ ସଂଗ୍ରାମ ତ୍ୟାଗ କଲେନାହିଁ । ଆତ୍ମ ସନ୍ତୋଷ ଲାଭ କରି କିମ୍ବା ଆତ୍ମ ଅଭିମାନ କରି ସେ ନୀରବ ହେଲେ ନାହିଁ । ୭୦ ବର୍ଷ ବୟସରେ ମଧ୍ୟ ସେ ଦୁଇଟି ପର୍ଯ୍ୟାୟରେ ସଂଗ୍ରାମ ଆରମ୍ଭ କଲେ । ପ୍ରଥମଟି ଥିଲା ସମାଲୋଚନାତ୍ମକ ଏବଂ ଦ୍ୱିତୀୟଟି ଗଠନ ମୂଳକ । ପ୍ରାୟ ୧୦ ବର୍ଷ କାଳ ସେ ସ୍ୱାଧୀନତା ସଂଗ୍ରାମ ସମ୍ପର୍କରେ ନିଜର ଦୃଷ୍ଟିଭଙ୍ଗୀକୁ ଲେଖି ବିଭିନ୍ନ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ପ୍ରକାଶ କଲେ । ସେ ଲେଖିଥିଲେ ଯେ ଯେଉଁ ସତ୍ୟାଗ୍ରହ ସଂପର୍କରେ ପ୍ରଚାର କରିଯାଉଛି କିମ୍ବା ଅନୁସରଣ କରାଯାଉଛି ତାହା ଆଦୌ ଏକ ଆଧ୍ୟାତ୍ମିକ ଅସ୍ତ୍ର ନୁହେଁ । ୧୯୨୦ ମସିହାରେ ''ନି ସିଟିଜେନ''ରେ ସେ ଉଲ୍ଲେଖ କରିଥିଲେ ଯେ ହିଂସାତ୍ମକ ବିପ୍ଳବ ଅସମ୍ଭବ ଏବଂ ଏଥିରୁ ସଫଳତା ମିଳେ ନାହିଁ । ଅହିଂସା ଓ ଅସହଯୋଗରେ ଯେଉଁ ବିପ୍ଳବ ହୁଏ ତାହା ବ୍ୟର୍ଥ ହୋଇଥାଏ କିମ୍ବା ଅରାଜକତା ସୃଷ୍ଟି କରିଥାଏ ।

ଗଣ ଆଇନ ଅମାନ୍ୟ ଆନ୍ଦୋଳନହେଲେ ତାହା କେତେ ମାରାତ୍ମକ ସେ ବାରମ୍ବାର ସେ ସଂପର୍କରେ ଜନସାଧାରଣଙ୍କୁ ସଚେତନ କରାଇ ଆସୁଥିଲେ । ତାଙ୍କର ଏହି କାର୍ଯ୍ୟ ଯୋଗୁ ସେ ଧୀରେ ଧୀରେ ଭାରତୀୟ ଜାତୀୟ ଜୀବନରୁ ଦୂରେଇ ଗଲେ । ତେବେ ସ୍ୱାଧୀନ ଭାରତରେ ତାଙ୍କର ଭାରତ ପ୍ରତି କେତେ ଶ୍ରଦ୍ଧା ତାହା ଆଜି ଉପଲବ୍ଧି କରିହେଉଛି । ଏହି ଆନ୍ଦୋଳନ ଏବଂ ଏଥିରେ ଯଦି ସ୍ୱାଧୀନତା ମିଳେ ତାହାର ଭବିଷ୍ୟତ କିପରି ତାହା ନିଜର ଦୂରଦୃଷ୍ଟିରେ ସେ ଦେଖିଥିଲେ ।

ମୃତ୍ୟୁ ପୂର୍ବରୁ ସ୍ୱାଧୀନ ଭାରତ ଦେଖିବା ପାଇଁ ଡ଼ଃ ଆନି ବେସାନ୍ତ ଯେଉଁ ସ୍ୱପ୍ନ ଦେଖିଥିଲେ, ତାହା ସାକାର ହେବା ପୂର୍ବରୁ ୧୯୩୩ ମସିହା ସେପଟେମ୍ବର ମାସରେ ତାଙ୍କର ବିୟୋଗ ହେଲା । ତେବେ ସେହି ବର୍ଷ ଭାରତକୁ ଡୋମିନିୟନ ପାହ୍ୟା ଦିଆଯିବ ବୋଲି ବ୍ରିଟେନର ପ୍ରଧାନମନ୍ତ୍ରୀ ମାକଡୋନାଲଡ୍ ଘୋଷଣା କରିଥିଲେ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅଗ୍ରଦୂତ ଥିଲେ ଡ଼ଃ ଆନି ବେସାନ୍ତ । ଭାରତର ଇତିହାସରେ ତାଙ୍କର ଅବଦାନ ସୁବର୍ଣ୍ଣ ଅଧ୍ୟାୟ ହୋଇ ରହିଛି ଓ ରହିଥିବ ।

—o—

# ଅସହଯୋଗ ଆନ୍ଦୋଳନ : ସ୍ୱଦେଶୀ ଭାବନାର ପ୍ରତୀକ

ଅସହଯୋଗ ଆନ୍ଦୋଳନ ୧୯୨୦ରେ ଆରମ୍ଭ ହୋଇ ୧୯୨୨ରେ ସରିଲା । ମାତ୍ର ବହୁ ପ୍ରଥମ ଘଟଣାର ସୃଷ୍ଟି ଏହି ଜାତୀୟ ଆନ୍ଦୋଳନ ବେଳେ ଘଟିଥିଲା । ସ୍ୱାଧୀନତା ଆନ୍ଦୋଳନ ବେଳର ନିଷ୍ପତ୍ତିମୂଳକ ପର୍ଯ୍ୟାୟ ପାଇଁ ଜନସାଧାରଣଙ୍କୁ ଏହା ପ୍ରସ୍ତୁତ କରିଥିଲା । ଏକ ରାଷ୍ଟ୍ର ଚିନ୍ତା ଧାରାର ସୃଷ୍ଟି ଏହି ଆନ୍ଦୋଳନବେଳେ ହେଲା ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଅହିଂସା ଉପାୟରେ ସଂଗ୍ରାମ କରିବା ଲାଗି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଏହି ଆନ୍ଦୋଳନ ପ୍ରସ୍ତୁତ କଲା । ସର୍ବଭାରତୀୟ ସ୍ତରରେ ସ୍ୱଦେଶୀ ବାର୍ତ୍ତାର ପ୍ରଚାର ମଧ୍ୟ ଏହି ସମୟରେ ହୋଇଥିଲା । ଲୋକମାନଙ୍କ ଭିତରେ ଖଦୀର ଆଦର ବଢ଼ିଲା । କୃଷକ ଓ ଶ୍ରମିକ ଜାତୀୟ ଆନ୍ଦୋଳନରେ ସାମିଲ ହେଲେ । ଏହା ଫଳରେ ସ୍ୱାଧୀନତା ସଂଗ୍ରାମ ଜନ ଆନ୍ଦୋଳନର ରୂପରେଖ ନେଲା । ୧୯୨୧ ମସିହା ନଭେମ୍ବର ୫ ତାରିଖ ଦିନ ଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିବା ଅଖିଳ ଭାରତ କଂଗ୍ରେସ କମିଟି ବୈଠକରେ ଅସହଯୋଗ ଆନ୍ଦୋଳନ କରିବାକୁ, ସରକାରୀ ଚାକିରୀ ଛାଡ଼ି ଦେବା ପାଇଁ, ବ୍ରିଟିଶ ସରକାରଙ୍କ ଆଇନ ବିରୋଧରେ ଆନ୍ଦୋଳନ କରିବାକୁ, ବିଦ୍ୟାଳୟ ଓ ମହାବିଦ୍ୟାଳୟ ଛାଡ଼ି ଦେବା ପାଇଁ, ନିର୍ବାଚନ ବର୍ଜନ କରିବା ଲାଗି ଜନସାଧାରଣଙ୍କୁ ଏହି ଆନ୍ଦୋଳନ ମାଧ୍ୟମରେ ଡ଼ାକରା ଦିଆଗଲା । ଚରଖା କାର୍ଯ୍ୟକ୍ରମ ଜନସାଧାରଣଙ୍କ ମଧ୍ୟରେ ଆଦୃତ ହେଲା । ସ୍ୱେଚ୍ଛାକୃତ ଭାବେ ଲୋକମାନେ ଚରଖା କାର୍ଯ୍ୟକ୍ରମରେ ସାମିଲ ହେଲେ । ହାତରେ ସୂତା କାଟିଲେ । ବିଶେଷକରି ବୁଦ୍ଧିଜୀବୀ ମହଲରେ ଏହା ଗ୍ରହଣୀୟ ହେଲା । ଗ୍ରାମାଞ୍ଚଳ ବାସିନ୍ଦାଙ୍କ ମଧ୍ୟରେ ଆନ୍ଦୋଳନର ବହ୍ନିକୁ ପ୍ରଜ୍ୱଳିତ କରିବା ପାଇଁ ଏହାକୁ ଏକ ପ୍ରତୀକ ଭାବେ ଗ୍ରହଣ କରାଯାଇଯାଇଥିଲା । ସ୍ୱଦେଶୀ ପାଇଁ ମଧ୍ୟ ଏହା ଏକ ଛୋଟ କାଟର ମାର୍ଗ ଥିଲା । ସ୍ୱଦେଶୀ ମନୋଭାବକୁ ଏହା ପୁନର୍ଜୀବିତ କଲା । ଆନ୍ଦୋଳନ କ୍ଷେତ୍ରରେ ମଧ୍ୟ ଏକ ଉଲ୍ଲେଖନୀୟ ଅଧ୍ୟାୟ ଆରମ୍ଭ ହେଲା । ଏହି ଆନ୍ଦୋଳନର ପ୍ରଭାବ ଏପରି ପଡ଼ିଲା ଯେ ସି. ଆର. ଦାସ ଏବଂ ମୋତିଲାଲ ନେହେରୁଙ୍କ ପରି ପ୍ରଖ୍ୟାତ ଆଇନଜ୍ଞମାନେ ନିଜ ନିଜ ପେଶା ତ୍ୟାଗ କରି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ ।

ଅସହଯୋଗ ଆନ୍ଦୋଳନ ବେଳେ ଆମର ଜାତୀୟ ଚିତ୍ରପଟରେ ବହୁ ଉଲ୍ଲେଖନୀୟ ଘଟଣା ସୃଷ୍ଟି ହୋଇଥିଲା । ଏହି ସମୟରେ ବହୁ ଜାତୀୟ ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ସୃଷ୍ଟି ହୋଇଥିଲା । ଆଲିଗଡଠାରେ ସ୍ଥାପିତ ଜାମିଆମିଲିଆ ଇସଲାମିଆ ହେଉଛି ଏଥିମଧ୍ୟରେ ଅନ୍ୟତମ । ପରେ ଏହାକୁ ଦିଲ୍ଲୀକୁ ଉଠାଇନିଆଗଲା । ବନାରସରେ କାଶୀ ବିଦ୍ୟାପୀଠ ଏବଂ ଗୁଜୁରାଟ ବିଦ୍ୟାପୀଠ ମଧ୍ୟ ଏହି ଆନ୍ଦୋଳନରୁ ସୃଷ୍ଟି । ଜାତୀୟ ଆନ୍ଦୋଳନର ଧାରା ଓ ସ୍ୱଦେଶୀର ବାର୍ତ୍ତା ଏହି କେନ୍ଦ୍ରମାନଙ୍କରୁ ଦେଶର ବିଭିନ୍ନ ପ୍ରାନ୍ତକୁ ପଠାଯାଉଥିଲା ।

ବିଲାତି ଦ୍ରବ୍ୟ ବର୍ଜନ ଜରିଆରେ ଅର୍ଥନୈତିକ ଅସହଯୋଗ ଆରମ୍ଭ ହେଲା । ଏହା ସଫଳ ହେବା ସହିତ ସ୍ୱାଧୀନ ସଂଗ୍ରାମରେ ଏକ ଅମୋଘ ଅସ୍ତ୍ରଭାବେ କାର୍ଯ୍ୟକଲା । ବିଦେଶୀ ଲୁଗା ଦୋକାନ ଆଗରେ ଧାରଣା ଏବଂ ନିର୍ଦ୍ଦିଷ୍ଟ ଏକ ସମୟ ଯାଏ ବିଲାତି ଲୁଗା ବ୍ୟବସାୟ ବର୍ଜନ କରିବା ପାଇଁ ସଂଗ୍ରାମୀମାନେ ବ୍ୟବସାୟୀମାନଙ୍କୁ ଡାକରା ଦେଲେ । ଅସହଯୋଗ ଆନ୍ଦୋଳନକୁ ବ୍ୟବସାୟୀମାନେ ମଧ୍ୟ ମନପ୍ରାଣ ଦେଇ ସମର୍ଥନ କଲେ ।

ଏହାଫଳରେ ବ୍ରିଟିଶ ଶିବିରରେ ସତର୍କ ଘଂଟି ବାଜି ଉଠିଲା । ଅସହଯୋଗ ଆନ୍ଦୋଳନର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ଯେ ଏହା ଜନସାଧାରଣଙ୍କୁ ଏକଜୁଟ କରିବା ସହ ବିଭିନ୍ନ ସମସ୍ୟା ଉପରେ ସମ ମତ ପ୍ରତିଷ୍ଠାରେ ସାହାଯ୍ୟ କଲା ଏବଂ ସବୁ ଶ୍ରେଣୀରେ ଆନ୍ଦୋଳନ ଆଦୃତ ହେଲା । ଅସ୍ପୃଶ୍ୟତାର ବିଲୋପ ପାଇଁ ମହାତ୍ମା ଗାନ୍ଧୀ ଏକନିଷ୍ଠ ଉଦ୍ୟମ ଆରମ୍ଭ କଲେ । ଯଦିଓ ଏହା ସଂପୂର୍ଣ୍ଣ ଭାବେ ସଫଳ ହେଲା ନାହିଁ, ତଥାପି ଜାତୀୟ ରାଜନୀତିରେ ପ୍ରଥମ ଥର ପାଇଁ ଏହି ସମସ୍ୟାଟି ଗୁରୁତ୍ୱ ଲାଭ କଲା ।

ଆନ୍ଦୋଳନ ସଫଳତାର ଶୀର୍ଷ ଦେଶରେ ପହଞ୍ଚିବା ଅବସ୍ଥାରେ ଭାଙ୍ଗିଗଲା । ଏପରିକି ଏହା ସଂପୂର୍ଣ୍ଣଭାବେ ମିଳାଇଗଲା । ବର୍ଦ୍ଦୋଲୀରେ ଗାନ୍ଧିଜୀ ଟିକସ ଅମାନ୍ୟ ଆରମ୍ଭ ପାଇଁ ଯୋଜନା କରିଥିଲେ । କିନ୍ତୁ ଚୌରି ଚୋରାରେ ହିଂସ୍ର ଜନତା ୨୨ ଜଣ ପୁଲିସ କର୍ମଚାରୀଙ୍କୁ ପୋଡ଼ି ମାରି ଦେବାରୁ ଗାନ୍ଧିଜୀ ବାଧ୍ୟ ହୋଇ ଅସହଯୋଗ ଖିଲାପତ ଆନ୍ଦୋଳନକୁ ପ୍ରତ୍ୟାହାର କରିବାକୁ ବାଧ୍ୟ ହେଲେ । କାରଣ

ଏହା ଭାରତର ଅହିଂସା ଆନ୍ଦୋଳନ ଦର୍ଶନର ମୂଳରେ କୁଠାରାଘାତ କଲା । ସ୍ୱଦେଶୀ ମାଧ୍ୟମରେ ଜାତୀୟ ଗୌରବର ପୁନଃ ପ୍ରତିଷ୍ଠା ପାଇଁ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଅସହଯୋଗ ଆନ୍ଦୋଳନ ହେଉଛି ଏକ ଅନନ୍ୟ ଅନୁଭୂତି । ଏହି ଆନ୍ଦୋଳନବେଳେ ବହୁ ସାମାଜିକ ଓ ଅର୍ଥନୈତିକ ସମସ୍ୟା କଥା ଉଠିଥିଲା । ହିନ୍ଦୁ-ମୁସଲମାନ ଏକତା ପ୍ରତିଷ୍ଠା ପାଇଁ ମଧ୍ୟ ଉଦ୍ୟମ ହୋଇଥିଲା । ଏକ ବର୍ଷ ମଧ୍ୟରେ ସ୍ୱରାଜପ୍ରାପ୍ତି ପାଇଁ ସଂଗ୍ରାମୀମାନେ ଶପଥ ଗ୍ରହଣ କରିଥିଲେ । ଅସହଯୋଗ ଆନ୍ଦୋଳନ ଏକ ବ୍ୟର୍ଥ ଉଦ୍ୟମ ବୋଲି ପ୍ରମାଣିତ ହୋଇଥିଲା । କିନ୍ତୁ ନିଜସ୍ୱଭାବ ସନ୍ଧାନ ପାଇଁ ଏକ ରାଷ୍ଟ୍ରର ଏହା ଥିଲା ପ୍ରଥମ ପଦକ୍ଷେପ । ଆନ୍ଦୋଳନ ବ୍ୟର୍ଥ ହେବା ଫଳରେ ଗାନ୍ଧିଜୀ ଏବଂ ଜନସାଧାରଣଙ୍କ ମଧ୍ୟରେ ଥିବା ଯୋଗାଯୋଗ କ୍ଷେତ୍ରରେ କିଛି ଦିନ ପାଇଁ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । କିନ୍ତୁ ଅହିଂସା ଓ ଅସହଯୋଗ ଆନ୍ଦୋଳନର ଶକ୍ତି ଉପରେ ଗାନ୍ଧିଜୀଙ୍କର ଅଗାଧ ଆସ୍ଥା ଥିଲା । ଏହି ଅସ୍ତ୍ର ସାହାଯ୍ୟରେ ଏକ ବର୍ଷରେ ସ୍ୱରାଜ୍ୟ ମିଳିବ ବୋଲି ସେ ପ୍ରତିଜ୍ଞା କରିଥିଲେ । ଜନସାଧାରଣଙ୍କ ମଧ୍ୟରେ ଗଭୀର ଆସ୍ଥା ସୃଷ୍ଟି ହୋଇଥିଲା ଏବଂ ସ୍ୱାଧୀନତା ସେମାନଙ୍କ ହାତ ପାହାନ୍ତରେ ବୋଲି ସେମାନେ ଭାବୁଥିଲେ । କିନ୍ତୁ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ସ୍ୱରାଜ୍ୟ ହାସଲ ନହେବାରୁ ଜନସାଧାରଣ ବ୍ୟସ୍ତ ହୋଇପଡ଼ିଲେ । ସେମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା । ଯାହାକି ହିଂସ୍ର ରୂପରେଖ ଗ୍ରହଣ କଲା ।

ତେଣୁ ଅସହଯୋଗ ଆନ୍ଦୋଳନରେ କ'ଣ ସଫଳତା ମିଳିଲା ତାହାକୁ କେହି ମନେ ରଖିନାହାଁନ୍ତି । କିନ୍ତୁ ଏହି ଆନ୍ଦୋଳନ ଯେଉଁ ବାର୍ତ୍ତା ପ୍ରଚାର କଲା ତାହା ପ୍ରତ୍ୟେକଙ୍କ ମନରେ ସ୍ପନ୍ଦନ ସୃଷ୍ଟି କରିଥିଲା । ଅବଶ୍ୟ ସ୍ୱାଧୀନତା ମିଳିଲା ନାହିଁ । କିନ୍ତୁ କେବଳ ଅହିଂସା ଉପାୟରେ ଓ ଅହିଂସା ମାର୍ଗରେ ସ୍ୱାଧୀନତା ହାସଲ ହେବାର ଦୃଢ଼ ଧାରଣା ଲୋକଙ୍କ ମଧ୍ୟରେ ସୃଷ୍ଟି ହେଲା । ଅସହଯୋଗ ଆନ୍ଦୋଳନବେଳେ ଯେଉଁ ବାର୍ତ୍ତାର ପ୍ରଚାର ହୋଇଥିଲା ତାହାର ଗୁରୁତ୍ୱ ଏବେ ମଧ୍ୟ ଅଛି । ବିଶେଷକରି ଯେଉଁ ଆଦର୍ଶ ଉପରେ ଏହା ଗଢ଼ି ଉଠିଥିଲା ତାହାର ଆବଶ୍ୟକତା ଆଜି ମଧ୍ୟ ଅଛି । ଭାରତର ନାଗରିକମାନଙ୍କ ମନ ଓ ହୃଦୟରେ ସ୍ୱଦେଶୀ ମନୋଭାବର ପୁନଃ ପ୍ରତିଷ୍ଠାର ଆବଶ୍ୟକତା ଏବେ ଉପଲବ୍ଧି କରାଯାଉଛି ।

## ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀମାନଙ୍କ ବୈଠକ

ଇଲେକ୍ଟ୍ରୋନିକ୍ସ ମିଡ଼ିଆର ଯେତେ ପ୍ରସାର ହେଲେ ମଧ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗର ଗୁରୁତ୍ୱ କେବେ କମିବ ନାହିଁ ବୋଲି ମତବ୍ୟକ୍ତ କରି ସୂଚନା ଓ ଲୋକ ସମ୍ପର୍କ ସଚିବ ଶ୍ରୀ ପ୍ରସନ୍ନ କୁମାର ହୋତା ଏହି ବିଭାଗର ଗୁଣାତ୍ମକମାନ ବୃଦ୍ଧି ନିମନ୍ତେ ଆବଶ୍ୟକ ପଦକ୍ଷେପ ନିଆଯିବ ବୋଲି କହିଛନ୍ତି ।

ଗତ ୨୭ ଡିସେମ୍ବର ବିଭାଗୀୟ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀମାନଙ୍କ ବୈଠକରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ସଚିବ ଶ୍ରୀ ହୋତା ଆଗାମୀ ଲୋକସଭା ନିର୍ବାଚନ ପରିପ୍ରେକ୍ଷୀରେ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଉପରେ ଆଲୋକପାତ କରି ସେମାନେ ଜିଲ୍ଲାପାଳ ତଥା ରିଟର୍ଣ୍ଣିଂ ଅଫିସରଙ୍କ ସହ ଯୋଗାଯୋଗ ରକ୍ଷା କରି ଏବଂ ନିର୍ବାଚନ ଆଚରଣ ବିଧିକୁ ଦୃଷ୍ଟିରେ ରଖି କାର୍ଯ୍ୟ କରିବାକୁ ପରାମର୍ଶ ଦେଇଥିଲେ । କ୍ଷେତ୍ର ପ୍ରଚାର କାର୍ଯ୍ୟକ୍ରମରେ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀମାନେ ସନ୍ମୁଖୀନ ହେଉଥିବା ବିଭିନ୍ନ ଅଭାବ ଅସୁବିଧା ଦୂର କରିବା ନିମନ୍ତେ ସମସ୍ତ ପ୍ରକାର ପଦକ୍ଷେପ ନିଆଯିବ ବୋଲି ଶ୍ରୀ ହୋତା ସୂଚନା ଦେଇଥିଲେ ।

ବୈଠକରେ ଅଧ୍ୟକ୍ଷତା କରି ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର କହିଲେ ଜିଲ୍ଲା ସ୍ତର ଅନେକ ଅସୁବିଧା ଥିବା ସତ୍ତ୍ୱେ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀମାନେ ଜିଲ୍ଲାପାଳମାନଙ୍କ ସହ ମିଶି ସୁଚାରୁ ରୂପେ କାର୍ଯ୍ୟ ସଂପାଦନ କରୁଛନ୍ତି । ସରକାର ଓ ଜନସାଧାରଣ ମଧ୍ୟରେ ଯୋଗସୂତ୍ରରେ ଡି.ଆଇ.ପି.ଆର.ଓ. ମାନଙ୍କର ବିଶେଷ ଅବଦାନ ରହିଥିବା ସୂଚନା ଦେଇ ବିଭାଗୀୟ ସୂଚନା କେନ୍ଦ୍ର ଓ ପାଠାଗାରଗୁଡ଼ିକୁ ଅଧିକ ଉନ୍ନତ ଓ କ୍ରିୟାଶୀଳ କରିବା ନିମନ୍ତେ ଦୃଷ୍ଟି ଦେବାକୁ ସେ କହିଥିଲେ । ସରକାରୀ ଗାଡ଼ିର ସଦୁପଯୋଗ କରିବା ସହ ସରକାରୀ ଅର୍ଥର ସଦ୍‌ବିନିଯୋଗ ପ୍ରତି ଡି.ଆଇ.ପି. ଆର. ଓ ମାନେ ଦୃଷ୍ଟି ଦେବାକୁ ଶ୍ରୀ ମିଶ୍ର ପରାମର୍ଶ ଦେଇଥିଲେ ।

ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ମେଘନାଥ ହୁହୁ ଧନ୍ୟବାଦ ଅର୍ପଣ କରିଥିଲେ । ଏହି ବୈଠକରେ ସମସ୍ତ ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀଙ୍କ ସମେତ ବିଭାଗୀୟ ଯୁଗ୍ମ ନିର୍ଦ୍ଦେଶକ, ଉପ ଶାସନ ସଚିବ ଓ ଅନ୍ୟାନ୍ୟ ବିଭାଗୀୟ ଅଧିକାରୀବୃନ୍ଦ ଯୋଗ ଦେଇଥିଲେ ।

# ଓଡ଼ିଶାର ବୀରପୁତ୍ର ନେତାଜୀ

ଶ୍ରୀ ସୁନୀଲ କୁମାର ରାୟ

**ପୃ**ଥିବୀ ପୃଷ୍ଠରେ ନେତାଜୀ ସୁଭାଷଙ୍କ ପରି ଜଣେ ସ୍ୱଦେଶ ଭକ୍ତ ଓ ବିଦ୍ରୋହୀ ଜନ୍ମ ନେଇ ନାହାନ୍ତି । ଆନ୍ଦୋଳନାତ୍ମକ ପନ୍ଥାର ବୈପ୍ଳବିକ ଆବିଷ୍କାର ଓ ତାର ଅଭିନବ ପ୍ରୟୋଗ ଦୃଷ୍ଟିରୁ ବିଚାର କଲେ ସକ୍ରେଟିସ, ଲେନିନ୍, ଗାରିବଲଡ଼ି, ସନାୟତ ସେନ ଅଥବା ୱାଂଶିଟନ ନେତାଜୀ ସୁଭାଷଙ୍କ ସହିତ ତୁଳନୀୟ ହୋଇ ନ ପାରନ୍ତି ।



ଏହି ବିଶ୍ୱ ବନ୍ଦିତ ବୀର ପୁରୁଷ କଟକ ସହରରେ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶାବାସୀଙ୍କ ପକ୍ଷରେ ଏହା କମ ଗୌରବର ବିଷୟ ନୁହେଁ । କଟକର ଭାରତକୁ ଏବଂ ପୃଥିବୀକୁ ଐତିହାସିକ ଅବଦାନ ହେଲା, ନେତାଜୀ ସୁଭାଷ ଚନ୍ଦ୍ର ବୋଷ ।

ସୁଭାଷ କଟକରେ ଜନ୍ମଗ୍ରହଣ କରି ତାଙ୍କର ପ୍ରବେଶିକା ପାଠ୍ୟ କଲିଜିଏଟ୍ ସ୍କୁଲରେ ସମାପ୍ତ କରିଥିଲେ ମଧ୍ୟ ଓଡ଼ିଶାର ପାଣି, ପବନ, ପରିବେଶ ଓ ପରିସ୍ଥିତି ତାଙ୍କର କର୍ମମୟ ଜୀବନକୁ ସର୍ବଦା ପ୍ରଭାବିତ କରିଥିଲା । କଲିଜିଏଟ୍ ସ୍କୁଲରେ ପଢୁଥିବା ସମୟରେ ତାଙ୍କର ଛାତ୍ରଜୀବନ ପ୍ରାରମ୍ଭରେ ଏକ ଉଲ୍ଲେଖନୀୟ ଘଟଣା ଘଟିଥିଲା । ସମଗ୍ର ଭାରତରେ ବନ୍ଦେମାତରଂ ଆନ୍ଦୋଳନରେ ବଙ୍ଗଳାର ଖୁଦିରାମଙ୍କୁ ବ୍ରିଟିଶ ସରକାର ଫାଶୀ ଖୁଣ୍ଟରେ ଝୁଲାଇ ମୃତ୍ୟୁଦଣ୍ଡ ଦେଲେ । ସେହି ମହାନ ଶହୀଦଙ୍କର ଶୋକ ଦିବସ ପାଳନ ପାଇଁ ସୁଭାଷ ସମସ୍ତ ଛାତ୍ରଙ୍କୁ ସଂଗଠିତ କରି ପ୍ରଧାନଶିକ୍ଷକ ବେଣୀ ମାଧବ ଦାସଙ୍କୁ ଶହୀଦ ଖୁଦିରାମଙ୍କର ଶୋକ ସଭା ନିମନ୍ତେ ଅନୁମତି ମାଗିଲେ । ବେଣୀମାଧବ ବାବୁ ଅନୁମତି ପ୍ରଦାନ କରିଥିବାରୁ ତାଙ୍କୁ ସୁଦୂର ବଙ୍ଗ ଦେଶକୁ ବଦଳୀ କରାଗଲା । ସୁଭାଷ ଏହା ବିରୁଦ୍ଧରେ ଛାତ୍ରମାନଙ୍କୁ ଏକଜୁଟ କରି ଏହାର ପ୍ରତିବାଦ କରିବାକୁ ବେଣୀ ମାଧବ ବାବୁଙ୍କୁ ଜଣାଇଲେ । କିନ୍ତୁ ସେ ସୁଭାଷଙ୍କୁ ଏଥିରୁ ନିବୃତ୍ତ ରହିବା ପାଇଁ ଉପଦେଶ ଦେଇଥିଲେ ।

ସେହି ସମୟରେ କଟକର ହରିଜନ ବସ୍ତି ଓ ଅନ୍ୟାନ୍ୟ ଅଞ୍ଚଳରେ ପ୍ରବଳ ଭାବରେ ହଇଜା ବ୍ୟାପି ବହୁ ଲୋକ ମୃତ୍ୟୁବରଣ କଲେ । କେତେ ଲୋକ ହଇଜାକୁ ଠାକୁରାଣୀଙ୍କ ପ୍ରକୋପ ବୋଲି ପ୍ରମାଣିତ କରିବାକୁ ଚାହୁଁଥିଲେ । ଏହି ଅନ୍ଧ ବିଶ୍ୱାସ ବିରୁଦ୍ଧରେ ନିଜର ସାଥୀମାନଙ୍କୁ ନେଇ ସୁଭାଷ ଏକ ସ୍ୱେଚ୍ଛାସେବକ ଦଳ ନେଇ ସମସ୍ତ ପରିବେଶ ଓ ପରିମଳ ପରିଷ୍କାର ପରିଚ୍ଛନ୍ନ କରିଥିଲେ । ଲୋକଙ୍କୁ ହଇଜା ପ୍ରକୋପରୁ ରକ୍ଷା ପାଇବାର ବ୍ୟବସ୍ଥା କରିଥିଲେ । ସୁଭାଷ ରହୁଥିବା ଓଡ଼ିଆ ବଜାର ଅଞ୍ଚଳରେ ଅନେକଗୁଡ଼ିଏ ଚାଳଘର ପୋଡ଼ିଯିବା ବେଳେ ନିଜର ଜୀବନକୁ ବିପନ୍ନ କରି ନିଜଘରୁ, ଦଉଡ଼ି, ବାଲଟି, ସିଢ଼ି ନେଇ ଲୋକଙ୍କୁ ବିପତ୍ତିରୁ ଉଦ୍ଧାର କରିଥିଲେ । ସେତେବେଳେ ଫାୟାର ବ୍ରିଗେଡ୍ ନଥିଲା । ବିପନ୍ନ ଲୋକଙ୍କୁ ଖାଇବା ସାମଗ୍ରୀ ଯୋଗାଇ ଦେଇ କେତେକ ପରିବାରଙ୍କୁ ନିଜ ବାସ ଗୃହରେ ସେ ଆଶ୍ରୟ ଦେଇଥିଲେ । ଏଏ ହେଉଛି ନେତାଜୀଙ୍କ କିଶୋର ସମୟର ଅବସ୍ଥା ।

ନେତାଜୀ ସୁଭାଷ ଆଇ.ସି.ଏସ୍. ପଦବୀକୁ ପ୍ରତ୍ୟାଖାନ କରି ବ୍ରିଟିଶ ବିରୁଦ୍ଧରେ ବନ୍ଦେମାତରଂ ଆନ୍ଦୋଳନରେ ଭାଗ ନେଇ ଥିଲେ । ଭାରତର ସୁପ୍ରସିଦ୍ଧ ନେତା ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ନେତୃତ୍ୱରେ ପରିଚାଳିତ ହୋଇ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରିଥିଲେ ।

ସୁଭାଷ ମାଣ୍ଡାଲେ ଜେଲରେ ବନ୍ଦୀଥିବା ସମୟରେ ୧୯୨୫ ମସିହାରେ ଗୋପବନ୍ଧୁ ଦାସଙ୍କୁ ଦୁଇଖଣ୍ଡ ଚିଠି ଲେଖିଥିଲେ । ସେଥିରେ ଉଲ୍ଲେଖ ଥିଲା ସିଂହଭୂମକୁ ଯେହେତୁ ବଙ୍ଗଳାରେ ମିଶ୍ରଣ କରାଗଲା ତେଣୁ ଗଞ୍ଜାମକୁ ଓଡ଼ିଶା ପ୍ରଦେଶରେ ମିଶାଯିବା ପାଇଁ ସେ ଉଦ୍ୟମ କରିଛନ୍ତି । କଂଗ୍ରେସର ବିଶିଷ୍ଟ ନେତା ଶ୍ରୀନିବାସ ଆୟଙ୍ଗାର ତାଙ୍କ ସହିତ ଏକମତ ହୋଇଛନ୍ତି । ମାନ୍ଦ୍ରାଜ ସରକାର ଏହାକୁ ଅଯଥା ବିଳମ୍ବ କରୁଛନ୍ତି । ଏହା ନିଶ୍ଚୟ ଓଡ଼ିଶାରେ ମିଶିବ । ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ବିଷୟରେ ଗୋପବନ୍ଧୁ ଦାସଙ୍କୁ ସେ କେତେକ ପରାମର୍ଶ ଦେଇଥିଲେ । ପୁରୀ ଜିଲ୍ଲାର ଭୟାବହ ଦୁର୍ଗତି ବିଷୟରେ ସତୀଶ ଚନ୍ଦ୍ର ଦାସଗୁପ୍ତ ଏବଂ ପି.ସି. ରାୟଙ୍କଠାରୁ କେତେ ପରିମାଣରେ ସାହାଯ୍ୟ ପାଇଲେ, ତାହା ଜଣାଇବାକୁ ଗୋପବନ୍ଧୁ ଦାସଙ୍କୁ ଚିଠି ଲେଖିଥିଲେ । ଏହାଛଡ଼ା ଗଡ଼ଜାତ ଆନ୍ଦୋଳନ ବିଷୟରେ କେତେକ ପରାମର୍ଶ ଦେଇ ବନ୍ୟା ପ୍ରପୀଡ଼ିତ ଅଞ୍ଚଳକୁ ସାହାଯ୍ୟ କରିଥିଲେ ।

ଅନ୍ୟ ଏକ ପତ୍ରରେ 'ଓଡ଼ିଆ ସାଧୁ ସନ୍ନ୍ୟାସୀଙ୍କ ଜୀବନୀ ଏବଂ ସେମାନଙ୍କ ସାଧନା ସଂକ୍ରାନ୍ତରେ ଯଦି କୌଣସି ପୁସ୍ତକ ଥାଏ ତେବେ ମୋତେ ଦୟାକରି ଜଣାଇବେ' ବୋଲି ଗୋପବନ୍ଧୁଙ୍କୁ ଲେଖିଥିଲେ ।

ଦେଶ ପ୍ରତି, ଜାତି ପ୍ରତି ଓ ନିଜ ଜନ୍ମ ଭୂମି ଓଡ଼ିଶା ପ୍ରତି ତାଙ୍କର କିଭଳି ମମତା ଥିଲା ଉପରୋକ୍ତ ପତ୍ରରୁ ବେଶ ଜଣାପଡ଼େ । ଆଜିର ଓଡ଼ିଆ ପୁଅ ବିଦେଶରେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଲଜ୍ଜାବୋଧ କରୁଥିଲା ବେଳେ, ସୁଭାଷ ଚନ୍ଦ୍ର ୧୯୨୬ ମସିହାରେ ମାଣ୍ଡାଲେ ଜେଲରୁ ବଙ୍ଗଳାର ଜଣେ ବିଶିଷ୍ଟ ଲେଖକ ଓ ଗବେଷକ ଅଧ୍ୟାପକ ନିର୍ମଳ କୁମାର ବସୁଙ୍କୁ ଲେଖିଥିଲେ :-

" ଆପଣ ମୋ ପାଖରୁ କୋଣାର୍କ ବିଷୟ ଶୁଣି ସେଠାକୁ ଯାଇ ଯେଉଁ ପୁସ୍ତକ ରଚନା କରି ମୋ ପାଖକୁ ପଠାଇଛନ୍ତି, ତାହା ମୁଁ ପଢ଼ିଛି । ଆପଣଙ୍କର ପରିଶ୍ରମ ପ୍ରତି ପୃଷ୍ଠାରେ ପ୍ରତିଫଳିତ ହୋଇଛି ।ଆପଣଙ୍କ ଭଳି ଜଣେ ବ୍ୟକ୍ତି ଓଡ଼ିଶାର ଶିଳ୍ପ ଓ ସଂସ୍କୃତି ପ୍ରତି ଆକୃଷ୍ଟ ହୋଇଥିବା ବିଷୟ ମୋ ପକ୍ଷେ କମ୍ ଆନନ୍ଦର କଥା ନୁହେଁ । କାରଣ ମୋର ଜନ୍ମ ଓଡ଼ିଶା ଭୂମିରେ ଓ ମୁଁ ଓଡ଼ିଶାକୁ ଅତ୍ୟନ୍ତ ଭଲପାଏ ।

"ଆପଣଙ୍କର 'ଓଡ଼ିଶାର ଶିଳ୍ପ ଶାସ୍ତ୍ର' ବହି ଖଣ୍ଡିକ ଦେଖି ମଧ୍ୟ ଆନନ୍ଦ ଲାଭ କରିଛି । ଏହି ସବୁ ଲେଖିବା ପାଇଁ ଆପଣଙ୍କୁ ବହୁ ଓଡ଼ିଆ ପୋଥିପତ୍ର ସଂଗ୍ରହ ଓ ଅଧ୍ୟୟନ କରିବାକୁ ପଡ଼ିଥିବ । ସେସବୁ ପ୍ରାଚୀନ ଗ୍ରନ୍ଥଗୁଡ଼ିକୁ ପୁନରୁଦ୍ଧାର କରିପାରିଲେ ଓଡ଼ିଶା ତଥା ବଙ୍ଗଦେଶ ଉଭୟର ଉପକାର ହେବ ।

"ଓଡ଼ିଶାର ଅତୀତ ଯେ ଗୌରବମୟ, ତାହା ଐତିହାସିକମାନେ ଜାଣନ୍ତି । ଏହାଛଡ଼ା ଓଡ଼ିଶା ଓ ବଙ୍ଗ ଦେଶ ସାଂସ୍କୃତିକ ଦିଗରୁ ଏକ । ଓଡ଼ିଶାର ଲୁପ୍ତ ଗୌରବ ଉଦ୍ଧାର କରାଯାଇପାରିଲେ କେବଳ ଉକ୍ତ ଭୂମିର ପୂଜା କରାଯାଇପାରିବ ତା ନୁହେଁ, ବଙ୍ଗଦେଶ ଓ ସମଗ୍ର ଭାରତ-ବର୍ଷର ମଧ୍ୟ ସେବା କରାଯାଇପାରିବ ।

"ଆପଣ ଯେଉଁ ଭଳି ଭାବରେ ଓଡ଼ିଶାର ଶିଳ୍ପ ଶାସ୍ତ୍ର ଅଧ୍ୟୟନ କରିପାରିଛନ୍ତି, ମୋର ମଧ୍ୟ ସେଭଳି ଅଧ୍ୟୟନର ଇଚ୍ଛା ହୁଏ । କିନ୍ତୁ ତାର ଉପାୟ ନାହିଁ । ବସ୍ତୁତଃ ଓଡ଼ିଶାର ଶିଳ୍ପ ମୋର ଅତି ଆଦରର ଜିନିଷ । ଏ ବହିରୁ ଭାରତବାସୀଙ୍କୁ ଶିଳ୍ପ ସଂକ୍ରାନ୍ତ ବହୁ ବିଷୟ ଶିକ୍ଷା କରିବାର ଉପାଦାନ ମିଳି ପାରିବ । ମୋର ସମ୍ଭାଷଣ ଗ୍ରହଣ କରିବେ ।"

୧୯୨୮ରେ ଭାରତର ଜାତୀୟ କଂଗ୍ରେସ ଅଧିବେଶନ କଲିକତାଠାରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ଅଭ୍ୟର୍ଥନା ସମିତିର ସଭାପତି ରୂପେ ସୁଭାଷ ଚନ୍ଦ୍ର ନିର୍ବାଚିତ ହୋଇ ସମସ୍ତ ଦାୟିତ୍ୱ ବହନ କରିଥିଲେ । ଏହି ଅଧିବେଶନରେ ଓଡ଼ିଶାରୁ ତିନିଶହ କଂଗ୍ରେସ କର୍ମୀ ଯୋଗ ଦାନ କରିଥିଲେ ।

ଓଡ଼ିଶାର କର୍ମୀମାନଙ୍କ ନେତୃତ୍ୱ ନେଇ ରାଜକୃଷ୍ଣ ବୋଷ, ନିରଞ୍ଜନ ପଟ୍ଟନାୟକ କଂଗ୍ରେସ ସଭାପତି ମୋତିଲାଲ ନେହେରୁଙ୍କୁ ସାକ୍ଷାତ କରି ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ଦାବୀପତ୍ର ଦେବାକୁ ଉଦ୍ୟମ କରିବାରୁ ମୋତିଲାଲ ସେମାନଙ୍କୁ ଜଣାଇଦେଲେ, ଭାରତର ସ୍ୱାଧୀନତା ଆନ୍ଦୋଳନ ଚାଲିଥିବା ସମୟରେ ଏ ସବୁ ଆଲୋଚନା ହୋଇପାରିବ ନାହିଁ । ଫଳରେ ଓଡ଼ିଶାର କର୍ମୀମାନେ ବିକ୍ଷୋଭ କରି ସଭାରେ ଯୋଗ ଦେଇ ନଥିଲେ ।

ଏହାପରେ ଗାନ୍ଧୀ ମୋତିଲାଲ ନେହେରୁ ଓ ସୁଭାଷଙ୍କ ସହିତ ଆଲୋଚନା କରି ଓଡ଼ିଶା କର୍ମୀମାନଙ୍କଠାରୁ ସ୍ମାରକ ପତ୍ର ଗ୍ରହଣ କଲେ । ଏହି ସ୍ମାରକପତ୍ରରେ ମଧୁସୂଦନ ଦାସ ଓ ଜାନକୀ ନାଥ ବୋଷ ସ୍ୱାକ୍ଷର କରିଥିଲେ । ତଦନୁଯାୟୀ ନିଷ୍ପତ୍ତି ନିଆଗଲା, କଂଗ୍ରେସ ସର୍ବ ଦଳୀୟ କମିଟିରେ ଏହି ଦାବୀର ଯୁକ୍ତିଯୁକ୍ତ ବିଚାର କରାଯିବ ।ଏହାପରେ ଓଡ଼ିଶାର କର୍ମୀମାନେ କଂଗ୍ରେସ ଅଧିବେଶନରେ ଯୋଗଦାନ କରିଥିଲେ ।

ତଦନୁଯାୟୀ ୧୯-୫-୧୯୨୮ରେ ବମ୍ବେଠାରେ ଅନୁଷ୍ଠିତ ଭାରତୀୟ ସର୍ବଦଳୀୟ କମିଟିରେ ସଭ୍ୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ଦୃଢ଼ ଭାବେ ଦାବୀ କରିଥିଲେ । ସର୍ବ ଦଳୀୟ କମିଟିର ସଭାପତି ପଣ୍ଡିତ ମୋତିଲାଲ ନେହେରୁ ଏହାକୁ ଗ୍ରହଣ କରି ସର୍ବ ସାଧାରଣରେ ଜଣାଇ ଦେଲେ ଯେ ଆମର ସାଥୀ ଓ ସର୍ବଦଳୀୟ କମିଟିର ସଭ୍ୟ ସୁଭାଷ ଚନ୍ଦ୍ର.ବୋଷ ଏବଂ ମଧୁସୂଦନ ଦାସ ଓ ଜାନକୀ ନାଥ ବୋଷ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ସ୍ମାରକପତ୍ର ଦେଇଛନ୍ତି । ଭାରତ ସରକାରଙ୍କୁ ଏହା ଖୁବ୍ ଶୀଘ୍ର କାର୍ଯ୍ୟକାରୀ କରିବା ଲାଗି ଲିଖିତ ଆକାରରେ ଦିଆଯାଇଥିଲା । (All Parties

Conforence 1928 published by A.IC.C.Page 63.64) ।

୧୯୨୮ରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଏବଂ ୧୯୩୪ରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କର ପରଲୋକ ହୋଇଯାଇଥିଲା । ନେତାଜୀ ସୁଭାଷଙ୍କ ସୁପାରିଶ ଓ ସର୍ବଦଳୀୟ କମିଟି ରିପୋର୍ଟ ଅନୁଯାୟୀ ଭାରତ ସରକାର ୧୯୩୬ରେ ଓଡ଼ିଶାକୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ କରିବାକୁ ଘୋଷଣା କଲେ । ନେତାଜୀ ସୁଭାଷଙ୍କର ଓଡ଼ିଶା ପ୍ରଦେଶ ଗଠନରେ ଯେଉଁ ଭୂମିକା ଥିଲା, ଓଡ଼ିଶାବାସୀ ତାହା କେବେ ଭୁଲିପାରିବେ ନାହିଁ ।

୧୯୩୮ ରେ ନେତାଜୀ ସୁଭାଷ ହରିପୁରା କଂଗ୍ରେସ ସଭାପତି ରୂପେ ନିର୍ବାଚିତ ହୋଇ ନୂତନ କାର୍ଯ୍ୟକାରୀ କମିଟି ଗଠନ କରିଥିଲେ । ଭାରତର ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ୧୯୩୮ ମସିହା ପର୍ଯ୍ୟନ୍ତ ଓଡ଼ିଶାରୁ କୌଣସି ସଭ୍ୟଙ୍କୁ ନିଆଯାଇ ନଥିଲା । ସେ ସର୍ବପ୍ରଥମେ ଓଡ଼ିଶାରୁ ଡ଼କ୍ଟର ହରେକୃଷ୍ଣ ମହତାବଙ୍କୁ କାର୍ଯ୍ୟକାରୀ କମିଟିର ସଭ୍ୟ ରୂପେ ମନୋନୀତ କଲେ । ଏହି ସମୟରେ ଏକ ଉଲ୍ଲେଖନୀୟ ଘଟଣା ଘଟିଗଲା । ଗାନ୍ଧିଜୀ ଓଡ଼ିଶାରୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ନୂତନ ସଭ୍ୟରୂପେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ନାମ ସୁପାରିଶ କରି ସଭାପତି ସୁଭାଷ ଚନ୍ଦ୍ର ବୋଷଙ୍କ ନିକଟକୁ ପଠାଇଥିଲେ । କିନ୍ତୁ ସୁଭାଷ ବୋଷ ସେଥିରେ ଏକମତ ନ ହୋଇ ଯୁବକ ହରେକୃଷ୍ଣ ମହତାବଙ୍କୁ କାର୍ଯ୍ୟକାରୀ କମିଟିର ସଭ୍ୟ ରୂପେ ଗ୍ରହଣ କଲେ । ତରୁଣ ଗୋଷ୍ଠୀକୁ ସ୍ୱାଧୀନତା ଆନ୍ଦୋଳନରେ ସଂପୃକ୍ତ କରିବା ପାଇଁ ସେ ଏହା କରିଥିଲେ ବୋଲି ଗାନ୍ଧିଜୀ ଓ ନୀଳକଣ୍ଠଙ୍କୁ ଜଣାଇ ଦେଇଥିଲେ ।

୧୯୪୦ରେ ବିଶ୍ୱଯୁଦ୍ଧ ଆରମ୍ଭ ହେବା ସମୟରେ କଂଗ୍ରେସ ୮ଟି ପ୍ରଦେଶରେ ଗଠନ କରିଥିବା ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲେ । ବ୍ରିଟିଶ ସରକାରଙ୍କ ଯୁଦ୍ଧ ଉଦ୍ୟମକୁ କଂଗ୍ରେସ ବିରୋଧ କରିଥିଲା । ଏହି ସୁଯୋଗକୁ ସୁଭାଷ ବୋଷ ହାତଛଡ଼ା କରିବାକୁ ଚାହିଁ ନଥିଲେ । ୧୯୪୦ରେ ସୁଭାଷ ଫରୱାର୍ଡ଼ ବ୍ଲକର ସଭାପତି ରୂପେ ଓଡ଼ିଶା ଭ୍ରମଣରେ ଆସିଥିଲେ ।

ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ନୀଳକଣ୍ଠ ଦାସ ତାହାଙ୍କୁ କଟକଠାରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇ ହାତୀ ପିଠିରେ ବସାଇ କଟକ ସହର ପରିକ୍ରମା କରାଇ ଥିଲେ । ଏକ ବିରାଟ ସମ୍ମିଳନୀ କଟକର ମୁନିସପାଲଟି ପଡ଼ିଆରେ ଅନୁଷ୍ଠିତ ହୋଇଥିଲା । ଏହି ମ୍ୟୁନିସ-ପାଲଟି ପଡ଼ିଆ ନେତାଜୀ ସୁଭାଷ ବୋଷଙ୍କ ମୁକ୍ତି ଆନ୍ଦୋଳନର ପ୍ରଥମ ସଂଗ୍ରାମୀ ପୀଠ ଭାବେ ଖ୍ୟାତ । ପ୍ରାୟ ୫୦ ହଜାର ଆବାଳ ବୃଦ୍ଧ ବନିତା ଏହି ସଭାରେ ଯୋଗଦାନ କରିଥିଲେ ।

ଏହି ସଭାରେ ସୁଭାଷ ଗମ୍ଭୀର ସ୍ୱରରେ ଘୋଷଣା କରିଥିଲେ, ''ବିଶ୍ୱଯୁଦ୍ଧ ଆସନ୍ନ ପ୍ରାୟ । ସ୍ୱାଧୀନତା ହାସଲ ପାଇଁ ସବୁଠାରୁ ସୁବିଧାଦିନ ଆସିଗଲା । ବର୍ତ୍ତମାନ ଦେଶର ସମସ୍ତ ଯୁବକ ଶପଥ ନେଇ ଭାରତର ମୁକ୍ତି ଆନ୍ଦୋଳନରେ ଭାଗ ନେଇ ନିଜର ଜୀବନ ଉତ୍ସର୍ଗ କରନ୍ତୁ । ଏଭଳି ସୁଯୋଗ ଆଉ ଆସିବ ନାହିଁ ।'' କଟକ ରେଲୱେ ଷ୍ଟେସନଠାରୁ ବିରାଟ ପଟୁଆରରେ ୨/୩ ଜଣ ବଙ୍ଗୀୟ ଯୁବକ ତାଙ୍କ ସହିତ ଆସିଥିଲେ । ବଙ୍ଗଳାରେ ସେମାନେ ସ୍ଲୋଗାନ ଦେଉଥିଲେ, ଭକ୍ତଧାରାଏ ମୁକ୍ତିପଥେ ସୁଭାଷ ବୋଷ କି ଜୟେ ।'' ବୈପ୍ଳବିକ ଧ୍ୱନିରେ କଟକ ସହର ପ୍ରକମ୍ପିତ ହୋଇ ଉଠିଥିଲା ।

ନେତାଜୀ ଏହି କଟକ ମ୍ୟୁନିସିପାଲିଟି ପଡ଼ିଆରେ ବ୍ରିଟିଶ ସରକାରକୁ ହଟାଇବାକୁ ଆହ୍ୱାନ ଦେଇ କଂଗ୍ରେସ ଓ ଗାନ୍ଧୀଙ୍କର କୋହଳ ନୀତିକୁ ସମାଲୋଚନା କରିଥିଲେ । ସଶସ୍ତ୍ର ସଂଗ୍ରାମ ପାଇଁ ତାଙ୍କର ଯୋଜନା ଜନସାଧାରଣଙ୍କୁ ବୁଝାଇଥିଲେ ।

ସୁଭାଷ ଏହାପରେ ବ୍ରହ୍ମପୁର, ପୁରୀ, ବାଲେଶ୍ୱର ପ୍ରଭୃତି ଗସ୍ତ କରି ବ୍ରିଟିଶ ବିରୁଦ୍ଧରେ ତାଙ୍କର ବିପ୍ଳବର ପରିକଳ୍ପନା ଘୋଷଣା କରିଥିଲେ । ହଜାର ହଜାର ଯୁବକ ମୁକ୍ତି ଯୁଦ୍ଧରେ ସାମିଲ ହେବା ପାଇଁ ସେ ଡ଼ାକରା ଦେଇଥିଲେ ।

ପୁରୀ ବଡ଼ଦାଣ୍ଡର ବିରାଟ ସାଧାରଣ ସଭାରେ ସେ ହିନ୍ଦୀରେ ଭାଷଣ ଦେଇଥିଲେ । ପୁରୀଠାରେ ୬ ମାଇଲ ଦୂର ଚନ୍ଦନପୁର ବଜାର ନିକଟରେ ଏକ ମଇଦାନରେ ଓଡ଼ିଆରେ ସେ ଯେଉଁ ଭାଷଣ ଦେଇଥିଲେ ଜନସାଧାରଣ ସେଥିରେ ଉଦ୍‌ବୁଦ୍ଧ ହୋଇ ଯାଇଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥିବା ବେଳେ ବଙ୍ଗ, ଆସାମ, ଓଡ଼ିଶା, ବିହାର ଆଦି ଚାରୋଟି ପ୍ରଦେଶରେ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ା ହୋଇଥିଲା । ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିବା ପାଇଁ ନେତାଜୀ ସୁଭାଷ କଲିକତାସ୍ଥ ଏଲଗିନ୍ ରୋଡ଼ଠାରେ ନିଜ ବାସଭବନକୁ ଡ଼କାଇ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଯଦୁମଣି ମଙ୍ଗରାଜଙ୍କ ସହିତ ଆଲୋଚନା କରିଥିଲେ । ସୁଭାଷଙ୍କ ନିର୍ଦ୍ଦେଶରେ ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ା ଯିବାର ସ୍ଥିର କରାଯାଇଥିଲା । ତଦନୁଯାୟୀ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରଧାନମନ୍ତ୍ରୀ ଏବଂ ମୁସଲିମ୍ ଲିଗ ନେତା ଅବଦୁଲ ଶୋଭାନ ଖାଁ (ମୁସଲିମ୍ ଲିଗ ସଭାପତି ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ମନୋନୀତ ପ୍ରାର୍ଥୀ)ଙ୍କୁ ନେଇ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରାଗଲା ।

ଆସାମରେ ବର୍ଦ୍ଦୋଲୀ, ବିହାରରେ ଫକିରୁଦ୍ଦିନ ଅଲ୍ଲୀ ଅହମ୍ମଦଙ୍କୁ ନେଇ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଜାପାନକୁ ସାହାଯ୍ୟ କରିବା ପାଇଁ ସୁଭାଷ ପରିକଳ୍ପନା କରିଥିଲେ । ଏହା ଫଳରେ ଜାପାନ କେବଳ ଖଡ଼ଗପୁରରେ ବୋମା ବର୍ଷଣ କରିଥିଲା । ସୁଭାଷ ବୋଷଙ୍କ ପାଇଁ ବୋମା ବର୍ଷଣରୁ ବିହାର, ବଙ୍ଗଳା, ଆସାମ, ଓଡ଼ିଶା ଓ ଅନ୍ୟାନ୍ୟ ଅଞ୍ଚଳ ରକ୍ଷା ପାଇଥିଲା । ନେତାଜୀ ସୁଭାଷଙ୍କର ନିର୍ଦ୍ଦେଶରେ ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ କେତେଗୁଡ଼ିଏ ଜନହିତକର କାର୍ଯ୍ୟ କରି ଯାଇଛନ୍ତି । ତନ୍ମଧ୍ୟରୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଅନ୍ୟତମ ।

ସୁଭାଷ ବୋଷଙ୍କ ପିତା ଜାନକୀବାବୁ ଜଣେ ବିଶିଷ୍ଟ ଆଇନଜ୍ଞ ତଥା କଟକ ସହରର ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ । ସେ କଟକ ମ୍ୟୁନିସିପାଲିଟିର ଚେୟାରମ୍ୟାନ ଏବଂ ଜିଲ୍ଲା ବୋର୍ଡର ଚେୟାରମ୍ୟାନ ଭାବେ ବହୁ ଜନହିତକର କାର୍ଯ୍ୟ କରିଥିଲେ । ସେ ରେଭେନସା କଲେଜର ଗଭର୍ଣ୍ଣିଂ ବଡ଼ିର ମେମ୍ବର ରୂପେ କାର୍ଯ୍ୟ କରିଥିଲେ । ଜାନକୀ ବାବୁଙ୍କର ଆଠଟି ପୁତ୍ର ଥିଲେ । ଜ୍ୟେଷ୍ଠପୁତ୍ର ସତୀଶ ଚନ୍ଦ୍ର ବୋଷ ଓଡ଼ିଶା ହାଇକୋର୍ଟର ବାରିଷ୍ଟର ରୂପେ କିଛିଦିନ କାର୍ଯ୍ୟ କରିଥିଲେ । ତାଙ୍କର ଅନ୍ୟତମ ପୁତ୍ର ସୁରେଶ ଚନ୍ଦ୍ର ବୋଷ ଓଡ଼ିଶାର ଖୋର୍ଦ୍ଧାରେ ମାଜିଷ୍ଟ୍ରେଟ ଥିଲେ ।

ଏହି ସମୟରେ ଦୈନିକ ସମାଜରେ ଗୋପବନ୍ଧୁ ଦାସ ''ସତ୍ୟ ହୋଇଥିଲେ ସାଙ୍ଘାତିକ'' ଲେଖା ପ୍ରକାଶ କରିଥିଲେ । ଗୋପବନ୍ଧୁଙ୍କୁ ମାନହାନୀ ମକଦ୍ଦମାରେ ଗିରଫ କରାଯାଇ ମାଜିଷ୍ଟ୍ରେଟ ସୁରେଶଚନ୍ଦ୍ର ବୋଷଙ୍କ (ଖୋର୍ଦ୍ଧା ମାଜିଷ୍ଟ୍ରେଟ) ଇଜଲାସରେ ବିଚାର ଚାଲିଥିବା ବେଳେ ତତ୍କାଳୀନ ବ୍ରିଟିଶ ସରକାରଙ୍କ ପଲିଟିକାଲ ଏଜେଣ୍ଟଠାରୁ ଡଗମ୍ବ ଚିଠି କୋର୍ଟରେ ପତ୍ରବାହକ ହସ୍ତରେ ଦିଆଯାଇଥିଲା । ସେଥିରେ ଗୋପବନ୍ଧୁ ବାବୁଙ୍କୁ ସଶ୍ରମ କାରାଦଣ୍ଡ ଦେବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଏହି ଚିଠିକୁ ପଢ଼ିବାପରେ ମାଜିଷ୍ଟ୍ରେଟ କୋର୍ଟ ଇଜଲାସରେ ଉଭୟ ପକ୍ଷଙ୍କୁ ଜଣାଇଦେଲେ ଯେ ସେହିଦିନ ଉକ୍ତ ମକଦ୍ଦମାକୁ ଫଇସଲା କରିଦେବେ । ଉଭୟ ପକ୍ଷରୁ ଶୁଣାଣୀ ପରେ ମାଜିଷ୍ଟ୍ରେଟ ରାୟ ଘୋଷଣା କରି କହିଲେ - ଗୋପବନ୍ଧୁ ଦାସ ସମ୍ମାନଜନକ ଭାବେ ଅଭିଯୋଗରୁ ମୁକ୍ତ ହେଲେ । ତତ୍ପରେ ସେ ସରକାରଙ୍କୁ ଜଣାଇଦେଲେ ଯେ ଜଣେ ବିଚାରପତି ମକଦ୍ଦମା ବିଚାର କରୁଥିବା ସମୟରେ ସରକାରଙ୍କ ଦ୍ୱାରା ବିଚାରପତିଙ୍କୁ ଏପରି ନିର୍ଦ୍ଦେଶ ଦେବା ଅନୁଚିତ । ତଦ୍ୱାରା ସେ ଅପମାନିତ ହୋଇଥିବାରୁ ଏହି ଦୁର୍ନୀତିଗ୍ରସ୍ତ ସରକାରଙ୍କ ଅଧୀନରେ କାର୍ଯ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ଏହାପରେ ଶ୍ରୀ ବୋଷ ଚାକିରି ଛାଡ଼ି ଦେଇଥିଲେ । ଜାନକୀବାବୁ ଏବଂ ତାଙ୍କର ପୁତ୍ରମାନଙ୍କର ଏପରି ତ୍ୟାଗ ଓ ଦେଶପ୍ରେମ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଲିପିବଦ୍ଧ ହୋଇ ରହିଛି । ଜାନକୀବାବୁ ଗୋପବନ୍ଧୁ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ସତ୍ୟବାଦୀ ବନବିଦ୍ୟାଳୟର ଉପଦେଷ୍ଟା ଥିଲେ ।

ଜାନକୀନାଥ ବୋଷ ସରକାରୀ ଓକିଲ ଥିବା ସମୟରେ ତାଙ୍କୁ ସରକାରଙ୍କ ତରଫରୁ ରାୟ ବାହାଦୁର ଉପାଧି ଦିଆଯାଇଥିଲା । ଜାନକୀବାବୁ ସ୍ୱାଧୀନତା ସଂଗ୍ରାମରେ ସଂପୃକ୍ତ ଥିବାରୁ ତାହା ସରକାରଙ୍କୁ ଫେରାଇ ଦେଇଥିଲେ ।

ଓଡ଼ିଆ ବଜାରସ୍ଥ ବାସଭବନକୁ ଜାନକୀନାଥ ବୋଷ ସର୍ବପ୍ରଥମେ କଂଗ୍ରେସ ଅଫିସରେ ପରିଣତ କରିଥିଲେ ।

ନେତାଜୀଙ୍କର ବଡ଼ ଭାଇ ବାରିଷ୍ଟର ଶରତଚନ୍ଦ୍ର ବୋଷ ନେହେରୁ ମନ୍ତ୍ରିମଣ୍ଡଳରେ ରେଳୱେ ବିଭାଗ ଦାୟିତ୍ୱରେ ଥିବା ସମୟରେ ଓଡ଼ିଶାର ପଶ୍ଚିମାଞ୍ଚଳ ସମ୍ବଲପୁର, ବଲାଙ୍ଗିରର ଟିଟିଲାଗଡ଼ ରେଳଲାଇନ ବାବଦରେ ୧୮ କୋଟି ଟଙ୍କା ବଜେଟରେ ମଞ୍ଜୁର କରିଥିଲେ । କିନ୍ତୁ ଏହି ଟଙ୍କା ଓଡ଼ିଶାକୁ ଦିଆ ନଯାଇ ନେହେରୁଙ୍କ ନିର୍ବାଚନ ମଣ୍ଡଳୀ (ଉତ୍ତର ପ୍ରଦେଶ) କୁ ଦିଆଗଲା । ଏଥିରେ ଜବାହରଲାଲ ଓ ଶରତ ବୋଷଙ୍କ ମଧ୍ୟରେ ମତାନ୍ତର ହୋଇଥିଲା । ଶେଷରେ ଜବାହରଲାଲ ପ୍ରତିଶ୍ରୁତି ଦେଇଥିଲେ ଓଡ଼ିଶା ପ୍ରସଙ୍ଗ ସେ ପ୍ରଥମେ ବିଚାର କରିବେ ।

ଜାନକୀ ନାଥ ବୋଷ ଓ ତାଙ୍କର ପୁତ୍ରମାନଙ୍କର ଦାନ ଓଡ଼ିଶା ପାଇଁ ଅତୁଳନୀୟ । ନେତାଜୀ ଗୋପବନ୍ଧୁ ମେମୋରିଆଲ ଟ୍ରଷ୍ଟର କୋଷାଧ୍ୟକ୍ଷ ରୂପେ କାର୍ଯ୍ୟ କରିଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାରେ ନେତାଜୀ ସୁଭାଷଙ୍କ ପ୍ରଥମ ପଦକ୍ଷେପକୁ ଓଡ଼ିଶାବାସୀ ଭୁଲି ପାରିବେ ନାହିଁ ।

ନେତାଜୀ ଓଡ଼ିଶା ମାଟିରୁ ହିଁ ମୁକ୍ତି ସଂଗ୍ରାମର ଶଙ୍ଖନାଦ କରିଥିଲେ । ସେଥିପାଇଁ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଓଡ଼ିଶା ସ୍ମରଣୀୟ ହୋଇ ରହିଥିବ ।

ମେରିଆ ବଜାର
କଟକ - ୭୫୩୦୦୧

## ବୟୋଜ୍ୟେଷ୍ଠ ସାମ୍ବାଦିକ ଡଃ ରାଧାନାଥ ରଥଙ୍କୁ ''ସାମ୍ବାଦିକ ରତ୍ନ'' ସମ୍ମାନ ପ୍ରଦାନ

ଗତ ଜାନୁଆରୀ ୮ ତାରିଖ ଦିନ ଜାତୀୟ ସାମ୍ବାଦିକ କଲ୍ୟାଣ ବୋର୍ଡ ଏବଂ ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ ପକ୍ଷରୁ କଟକ ଗୋପବନ୍ଧୁ ଭବନଠାରେ ଆୟୋଜିତ ଏକ ସମାରୋହରେ ସାମ୍ବାଦିକତା କ୍ଷେତ୍ରକୁ ବହୁମୂଲ୍ୟ ଅବଦାନ ପାଇଁ ଦେଶର ବୟୋଜ୍ୟେଷ୍ଠ ସାମ୍ବାଦିକ ଜନସେବୀ ତଥା ସମାଜ ସଂପାଦକ ଡଃ ରାଧାନାଥ ରଥଙ୍କୁ ଆନୁଷ୍ଠାନିକ ଭାବେ ''ସାମ୍ବାଦିକ ରତ୍ନ'' ସମ୍ମାନ ପ୍ରଦାନ କରାଯାଇ ସମ୍ମାନିତ କରାଯାଇଥିଲା । ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର ଡଃ ରଥଙ୍କୁ ସମ୍ମାନ ସୂଚକ ଫଳକ ଓ ମାନପତ୍ର ପ୍ରଦାନ କରିଥିଲେ ।

ଏଠାରେ ସୂଚନା ଯୋଗ୍ୟ ଯେ ପ୍ରେସ କାଉନସିଲଙ୍କ ଅନୁମୋଦନକ୍ରମେ ସମଗ୍ର ଦେଶରେ ଗତ ନଭେମ୍ବର ୧୬ ତାରିଖ ଦିନ ''ଜାତୀୟ ପ୍ରେସ ଦିବସ'' ପାଳନ ଅବସରରେ ସ୍ଥାନୀୟ ସୂଚନାଭବନଠାରେ ଜାତୀୟ ସାମ୍ବାଦିକ କଲ୍ୟାଣ ବୋର୍ଡ ଏବଂ ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ ଆନୁକୂଲ୍ୟରେ ରାଜ୍ୟସ୍ତରୀୟ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏଥିରେ ସାମ୍ବାଦିକତା କ୍ଷେତ୍ରକୁ ବହୁମୂଲ୍ୟ ଅବଦାନ ପାଇଁ ଡଃ ରଥଙ୍କୁ ''ସାମ୍ବାଦିକ ରତ୍ନ'' ଉପାଧିରେ ସମ୍ମାନିତ କରିବା ପାଇଁ ଘୋଷଣା କରାଯାଇଥିଲା ।

# ଅଦ୍ୱିତୀୟ ତ୍ୟାଗବୀର ନେତାଜୀ

‘‘ଦିଲ୍ଲୀକୁ ଅନେକ ରାସ୍ତା ପଡ଼ିଛି, ଦିଲ୍ଲୀହିଁ ଆମର ଲକ୍ଷ୍ୟ ସ୍ଥଳ ..... ଭାରତ ନିଶ୍ଚୟ ସ୍ୱାଧୀନ ହେବ, ଆଉ ବେଶି ଡେରି ନାହିଁ ।’’ ୧୯୪୫ ମସିହା ଅଗଷ୍ଟ ୧୫ ତାରିଖରେ ‘ଇଣ୍ଡିଆନ ନ୍ୟାସନାଲ ଆର୍ମି (ଆଇଏନ୍ଏ) ର ସୁପ୍ରିମ କମାଣ୍ଡର ସୁଭାଷଚନ୍ଦ୍ର ବୋଷ ସିଙ୍ଗାପୁର ଛାଡ଼ିବା ପୂର୍ବରୁ ଏହା ଥିଲା ତାଙ୍କର ସେହିଦିନର ଶେଷ ନିର୍ଦ୍ଦେଶ । ଭାରତ ଏହାର ଠିକ୍ ଦୁଇବର୍ଷ ପରେ ସ୍ୱାଧୀନ ହେଲା ।

ଭାରତ ମାତାର ଶ୍ରେଷ୍ଠ ସନ୍ତାନମାନଙ୍କ ମଧ୍ୟରେ ସୁଭାଷ ଚନ୍ଦ୍ର ଥିଲେ ଅନନ୍ୟ । ଦେଶବାସୀଙ୍କ ନିକଟରେ ନେତାଜୀ ଭାବେ ସୁପରିଚିତ ଏହି ବୀରପୁରୁଷ ଭାରତର ସ୍ୱାଧୀନତା ସଂଗ୍ରାମରେ ତୁଙ୍ଗ ସ୍ଥାନ ପାଇଥିଲେ । ବିଦେଶୀ ଶାସନକୁ ଅପସାରିତ କରି ଭାରତର ମୁକ୍ତି ପାଇଁ ତାଙ୍କ ଅଦମ୍ୟ ଇଚ୍ଛାଶକ୍ତିର ପ୍ରତୀକ ଜୟହିନ୍ଦ୍‌ର ତୂର୍ଯ୍ୟନାଦ ସେ ହିଁ ଶୁଣାଇଥିଲେ ।

୧୮୯୭ ମସିହା ଜାନୁଆରୀ ୨୩ ତାରିଖରେ କଟକ ସହରରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଜାନକୀନାଥ ବୋଷ କଟକ ମ୍ୟୁନିସପାଲିଟିର ଚେୟାରମ୍ୟାନ ଥିଲେ ଏବଂ ମା ପ୍ରଭାବତୀ ଥିଲେ ଏକ ଦୃଢ଼ ମନୋବଳର ମହିଳା । ଜାନକୀ ନାଥ ଜଣେ କାର୍ଯ୍ୟବ୍ୟସ୍ତ ବ୍ୟକ୍ତି ଥିବାରୁ ପ୍ରଭାବତୀଙ୍କୁ ୧୪ ଜଣ ପିଲା ଥିବା ଏକ ବୃହତ ପରିବାରର ଲାଳନ ପାଳନର ଭାର ଏକା ନେବାକୁ ପଡୁଥିଲା । ସୁଭାଷ ପିତାମାତାଙ୍କର ନବମ ସନ୍ତାନ ଥିଲେ । କଟକର ରେଭେନ୍‌ସା କଲିଜିଏଟ ସ୍କୁଲରେ ସୁଭାଷ ମାଧ୍ୟମିକ ଶିକ୍ଷା ସମାପ୍ତ କରି କଲିକତାର ପ୍ରେସିଡେନ୍‌ସୀ କଲେଜରେ ଦର୍ଶନଶାସ୍ତ୍ରରେ ଅଧ୍ୟୟନ କରିଥିଲେ ।

ଶ୍ରୀ ଅରବିନ୍ଦ, ସ୍ୱାମୀ ବିବେକାନନ୍ଦ, ବଂକିମ ଚନ୍ଦ୍ର ଓ ରବୀନ୍ଦ୍ରନାଥ ପ୍ରମୁଖ ମହାମନୀଷୀମାନଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିଲେ । ବଙ୍କିମଚନ୍ଦ୍ରଙ୍କ ଆନନ୍ଦମଠ ଉପନ୍ୟାସ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ଅବହେଳିତ ମାତୃଭୂମିର ମୁକ୍ତି ଓ ତାର ସେବା ପାଇଁ ଆତ୍ମୋତ୍ସର୍ଗ ସୁଭାଷଙ୍କ ମନକୁ ବିଶେଷଭାବେ ପ୍ରଭାବିତ କରିଥିଲା ।

୧୯୧୯ ମସିହାରେ ସୁଭାଷ ଲଣ୍ଡନ ଯାତ୍ରା କଲେ । ଆଇସିଏସ୍ ପରୀକ୍ଷା ପାଇଁ ଇଂରାଜୀ ପ୍ରବନ୍ଧ, ସଂସ୍କୃତ, ଦର୍ଶନ, ରାଜନୀତି ବିଜ୍ଞାନ ଓ ଆଧୁନିକ ଇତିହାସ ବିଷୟରେ ନିଜକୁ ପ୍ରସ୍ତୁତ କଲେ । ଏହିସବୁ ଅଧ୍ୟୟନ ଭାରତୀୟ ରାଜନୀତିର ଅନ୍ତଃସ୍ରୋତକୁ ବୁଝିବାରେ ତାଙ୍କୁ ସାହାଯ୍ୟ କରିଥିଲା । ୧୯୨୦ ମସିହା ଅଗଷ୍ଟରେ ସେ ଆଇସିଏସ ପରୀକ୍ଷାରେ ୪ର୍ଥ ହୋଇ ଉତ୍ତୀର୍ଣ୍ଣ ହେଲେ । କିନ୍ତୁ ଆଇସିଏସ ପଦବୀକୁ ପ୍ରତ୍ୟାଖ୍ୟାନ କରି ସେ ୧୯୨୧ ମସିହାରେ ୨୩ ବର୍ଷ ବୟସରେ ଦେଶର ସ୍ୱାଧୀନତା ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ଝାସ ଦେଇଥିଲେ ।

ତା’ପରେ ସେ କଲିକତା ଫେରି ଆସି ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ ଏବଂ ସକ୍ରିୟ ରାଜନୀତି ଭିତରକୁ ପ୍ରବେଶ କଲେ । ଏହି ସନ୍ଧିକ୍ଷଣରେ ଜାତୀୟ ସ୍ତରରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଜାତୀୟ ଆନ୍ଦୋଳନ ଆରମ୍ଭ ହୋଇଥିବାବେଳେ ବଙ୍ଗଳାରେ ଦେଶବନ୍ଧୁ ଚିତ୍ତରଂଜନ ଏହାର ନେତୃତ୍ୱ ନେଇଥିଲେ ।

ନେତାଜୀ ବିପ୍ଳବୀ ଥିଲେ ଏବଂ ମହାତ୍ମା ଗାନ୍ଧିଙ୍କ ଅହିଂସା ନୀତିକୁ ସମର୍ଥନ କରୁନଥିଲେ । ଯେତେବେଳେ ଇଂଲଣ୍ଡର ଯୁବରାଜଙ୍କ ପ୍ରସ୍ତାବିତ ଭାରତ ଗସ୍ତ ସରକାର ଘୋଷଣା କଲେ, ସେତେବେଳେ କଂଗ୍ରେସ ସହିତ ତାଙ୍କର ମତାନ୍ତର ହେଲା ଏବଂ ଏହି ରାଜକୀୟ ଗସ୍ତକୁ ବର୍ଜନ କରିବା ନିମନ୍ତେ ସେ ସମଗ୍ର ଦେଶବାସୀଙ୍କୁ ପ୍ରବର୍ତ୍ତାଇଲେ । ଫଳରେ ୧୯୨୧ ମସିହା ଡିସେମ୍ବର ୧୦ ତାରିଖ ସନ୍ଧ୍ୟାରେ ସେ ଚିତ୍ତରଂଜନ ଦାସ ଓ ତାଙ୍କ ସହଯୋଗୀମାନଙ୍କ ସହ କାରାବରଣ କଲେ । ଏହା ତାଙ୍କ ଜୀବନର ପ୍ରଥମ କାରାବାସ । ତା’ ପରେ ୧୯୪୧ ମସିହାରେ ସେ ନିଜ ଘରୁ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ସେ ବ୍ରିଟିଶମାନଙ୍କ ଦ୍ୱାରା ୧୧ ଥରରୁ ଅଧିକ ଥର ବନ୍ଦୀ ହୋଇଥିଲେ ।

୧୯୨୩ ମସିହାରେ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଉଥିଲେ ଏବଂ ବଙ୍ଗଳା ପ୍ରାଦେଶିକ କଂଗ୍ରେସ କମିଟିର ସଂପାଦକ ହେଲେ । ରାଜନୈତିକ ସଭା ସମିତି ଓ ସମ୍ମିଳନୀରେ ସେ ବକ୍ତୃତା ଦେଉଥିଲେ । ଯଦିଓ ନେହେରୁ ସୁଭାଷ ବୋଷଙ୍କଠାରୁ ବୟସରେ ୧୦ ବର୍ଷରୁ ଅଧିକ ବଡ଼ ଥିଲେ, ତଥାପି ୧୯୨୯ ମସିହାରେ କଲିକତା କଂଗ୍ରେସରେ ଉଭୟ ମିଶି ତତ୍‌କାଳୀନ ଯୁବଶକ୍ତିର ସ୍ୱାଧୀନତା ପାଇଁ ପ୍ରତିନିଧିତ୍ୱ କରି କଂଗ୍ରେସକୁ ‘‘ସ୍ୱାଧୀନତା’’ ର ଲକ୍ଷ୍ୟ ଆଦରି ନେବା ପାଇଁ ବହୁତ ପ୍ରଭାବ ପକାଇଥିଲେ ।

ସୁଭାଷ ଜଣେ ଉଦ୍ଦୀପ୍ତ ଜାତୀୟ ରାଜନୀତିଜ୍ଞ ଭାବେ ନିଜକୁ ଗଢ଼ିଲେ । ତାଙ୍କର ଅସାଧାରଣ ଇଚ୍ଛାଶକ୍ତି, ଅସୀମ ସାହସ, ଆତ୍ମୋତ୍ସର୍ଗ ପାଇଁ ସେ ବେଶ୍ ଜନପ୍ରିୟ ହୋଇପଡ଼ିଲେ ଏବଂ ବ୍ରିଟିଶ ଦୃଷ୍ଟିରେ ସେ ଜଣେ ଭୟଙ୍କର ବିପ୍ଳବୀ ବା ବିଦ୍ରୋହୀ ବୀରଭାବେ ପ୍ରତିଭାତ ହେଲେ । ବ୍ରିଟିଶ ଶାସନ ଗିରଫ, ସ୍ଥାନାନ୍ତର, ପ୍ରତ୍ୟର୍ପଣ ଓ କାରାରୁଦ୍ଧ କରିବା ଇତ୍ୟାଦି ପଦକ୍ଷେପ ଦ୍ୱାରା ତାଙ୍କୁ ଦବାଇ ଦେବାକୁ ଚାହିଁଲା, କିନ୍ତୁ କିଛି ଫଳ ହେଲା ନାହିଁ । ବିଦ୍ରୋହ ଓ ବିପ୍ଳବାତ୍ମକ କାର୍ଯ୍ୟକଳାପ ଘଟାଇଥିବା ସଂଦେହରେ ୧୯୨୪ ମସିହାରେ ନେତାଜୀ ଗିରଫ ହୋଇଥିଲେ । ଏହାର ବର୍ଷକ ପରେ ତାଙ୍କୁ ବର୍ମାର ମାଣ୍ଡଲେ ଜେଲକୁ ପଠାଗଲା ।

୧୯୩୮ ମସିହାରେ ସେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ହେଲେ । ତାଙ୍କର ଏହି ନେତୃତ୍ୱକାଳ ଭାରତୀୟ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ମୋଡ଼ । ସ୍ୱାଧୀନତା ହାସଲ ପାଇଁ ସେ ଗାନ୍ଧୀଙ୍କ ଚିନ୍ତାଧାରାରୁ ଓହରି ଯାଇ ଅନ୍ୟ ପନ୍ଥାରେ ବ୍ରତୀ ହେଲେ ।

୧୯୪୦ ଡ଼ିସେମ୍ବରରେ ବ୍ରିଟିଶ ଶାସକଙ୍କ ଦ୍ୱାରା ଗୃହବନ୍ଦୀ ଥିବାବେଳେ ନେତାଜୀ କଲିକତାରୁ ଖସି ପଳାଇଗଲେ ଏବଂ ୧୯୪୧ରେ ବର୍ଲିନରେ ପହଞ୍ଚିଲେ । ଏକ ସଶସ୍ତ୍ର ଶକ୍ତି କେବଳ ବ୍ରିଟିଶ ସାମ୍ରାଜ୍ୟକୁ ଭାରତ ଭୂମିରୁ ହଟାଇପାରେ, ଏହି ଦୃଢ଼ ବିଶ୍ୱାସରେ ସେ ସମସ୍ତ ପ୍ରକାର କୌଶଳ ନୀତି ଅନୁସରଣ କଲେ । ସେ ବର୍ଲିନରେ ଏକ ମୁକ୍ତ ଭାରତ କେନ୍ଦ୍ର (ଫ୍ରି ଇଣ୍ଡିଆ ସେଣ୍ଟର) ଖୋଲିଲେ ଏବଂ ଜର୍ମାନ ମାଟିରେହିଁ 'ଫ୍ରି ଇଣ୍ଡିଆ ଆର୍ମି' ଗଠନ କଲେ ।

ବର୍ଲିନରୁ ଆଜାଦ ହିନ୍ଦ୍ ରେଡ଼ିଓ, ଦ୍ୱାରା ତାଙ୍କର ଆହ୍ୱାନରେ ଭାରତବାସୀ ବିମୁଗ୍ଧ ହୋଇପଡ଼ିଲେ । ଆଜାଦ ହିନ୍ଦ୍ ବେତାର କେନ୍ଦ୍ରରୁ ଭାରତୀୟ ଭାଷାଗୁଡ଼ିକରେ ସିଂଗାପୁର, ବ୍ୟାଙ୍କକ, ରେଂଗୁନ (ବର୍ତ୍ତମାନର ୟାଂଗୁନ) ସାଇଗନ ଓ ଟୋକିଓରୁ ଭାରତକୁ କାର୍ଯ୍ୟକ୍ରମ ପ୍ରସାରଣ କରାଯାଉଥିଲା ।

ବର୍ଲିନରୁ ସେ ଦୂର -ପ୍ରାଚ୍ୟକୁ ତାଙ୍କର ଯାତ୍ରା ଆରମ୍ଭ କଲେ । ଏହା ସୁଭାଷଙ୍କ ପାଇଁ ଆବୁରି ବିପଦପୂର୍ଣ୍ଣ ପରୀକ୍ଷା ଥିଲା । ସେ ଜାପାନ ହୋଇ ଆସି ମାଡ଼ାଗାସ୍କରରେ ପହଂଚିଲେ ଏବଂ ସେଠାରୁ ସେ ଦକ୍ଷିଣ ପୂର୍ବ ଏସିଆର ସିଙ୍ଗାପୁରରେ ପହଞ୍ଚିଲେ । ୧୯୪୩ ମସିହା ଜୁଲାଇ ୪ ତାରିଖରେ ସେ 'ଭାରତୀୟ ମୁକ୍ତି ବାହିନୀ' (ଇଣ୍ଡିଆନ ଇଣ୍ଡିପେଣ୍ଡେନସ ଲିଗ୍) ଅଧକ୍ଷଭାବେ ରାସବିହାରୀ ବୋଷଙ୍କଠାରୁ ଦାୟିତ୍ୱ ଗ୍ରହଣ କଲେ ।

ନେତାଜୀଙ୍କ ରାଜନୈତିକ ଧୀଶକ୍ତି ଓ ସାମରିକ ଅନ୍ତର୍ଦୃଷ୍ଟି ଦକ୍ଷିଣ-ପୂର୍ବ ଏସିଆରେ ବିଶୃଙ୍ଖଳିତ ଓ ବିଚ୍ଛିନ୍ନ ଭାରତୀମାନଙ୍କୁ ଏକ ସୂତ୍ରରେ ବାନ୍ଧି ରଖିଲା । ସେଠାରୁ ଜନ୍ମ ନେଲା ଏକ ପ୍ରସିଦ୍ଧ ସଂଗ୍ରାମୀ । ଶକ୍ତି—ଭାରତୀୟ ଜାତୀୟ ସେନା (ଇଣ୍ଡିଆନ ନ୍ୟାସନାଲ ଆର୍ମି) ବା ଆଇଏନ୍ଏ । ଜାପାନ ସରକାରଙ୍କ ସବୁପ୍ରକାର ସାହାଯ୍ୟ ନେତାଜୀଙ୍କ ଉଦ୍ୟମ ଓ ଉଦ୍ଦେଶ୍ୟ ସଫଳ କରିବାରେ ବିଶେଷ ସହାୟକ ହୋଇଥିଲା । ଭାରତ ବାହାରୁ ଅସ୍ତ୍ରଶସ୍ତ୍ର ଓ ସାମରିକ ଶକ୍ତିର ସାହାଯ୍ୟ ମିଳିବା ମଧ୍ୟ ସମ୍ଭବ ହେଲା ।

୧୯୪୩ ମସିହା ଅକ୍ଟୋବର ୨୧ ତାରିଖରେ ଭାରତୀୟ ମୁକ୍ତି ବାହିନୀ ପ୍ରତିନିଧିମାନଙ୍କ ବୈଠକରେ ମୁକ୍ତ ଭାରତର ପ୍ରାଦେଶିକ ସରକାର ସ୍ଥାପନ ପାଇଁ ନେତାଜୀ ସମଗ୍ର ପୂର୍ବ ଏସିଆରୁ ଆସିଥିବା ଭାରତୀୟମାନଙ୍କ ସମ୍ମିଳନୀରେ ଘୋଷଣା କଲେ । ସେ ଆହ୍ୱାନ ଦେଲେ, ମୋତେ ରକ୍ତ ଦିଅ ମୁଁ ତୁମକୁ ସ୍ୱାଧୀନତା ଦେବି । ଏହି ଧ୍ୱନି ସମଗ୍ର ପୂର୍ବ ଏସିଆକୁ ପ୍ରକମ୍ପିତ କଲା । ସେ ଯେତେବେଳେ ଏସବୁ କାର୍ଯ୍ୟକାରୀ କରିବାକୁ ରଣକୌଶଳ ପ୍ରସ୍ତୁତ କଲେ, ଭାଗ୍ୟ ସେଥିରେ ବାଧ ସାଜିଲା । ୧୯୪୫ ମସିହା ଅଗଷ୍ଟ ୧୭ ତାରିଖରେ ସେ ଏକ ବୋମା ନିକ୍ଷେପକାରୀ ଜାପାନୀ ଉଡାଜାହାଜରେ ସାଇଗନରୁ ଆସିଲେ କିନ୍ତୁ ଜାପାନରେ ପହଞ୍ଚି ପାରିଲେ ନାହିଁ । ଏହାଥିଲା ତାଙ୍କର ଶେଷ ବିମାନ ଯାତ୍ରା ।

ଅଳ୍ପ କିଛି ଦିନ ପରେ ନେତାଜୀଙ୍କ ସ୍ୱପ୍ନ ସତ୍ୟ ହେଲା । ଆଜି ତାଙ୍କର ଜନ୍ମଶତବାର୍ଷିକୀରେ ଗୋଟିଏ କୃତଜ୍ଞ ଜାତି ତାଙ୍କୁ ସ୍ମରଣ କରୁଛି । ତାଙ୍କର ଇଚ୍ଛାଶକ୍ତି, ସାହସ ଓ ଦେଶାତ୍ମବୋଧ ଭାବଧାରା ଏପରିକି 'ଚଲୋ ଦିଲ୍ଲୀ' ଡାକରା ଆଜି ମଧ୍ୟ ଭାରତୀୟ ଜନମାନସରେ ପ୍ରତିଧ୍ୱନିତ ହେଉଛି ।

—୦—

# ଆଧୁନିକ ଭାରତର ନିର୍ମାତା ନେହେରୁ

ପଚାଶ ବର୍ଷ ପୂର୍ବେ ଆମ ପାର୍ଲିଆମେଣ୍ଟ ଭବନରେ ଆମ ଦେଶବାସୀଙ୍କର ସ୍ୱର ପ୍ରତିଧ୍ୱନିତ ହୋଇଥିଲା । ଠିକ ମଧ୍ୟ ରାତ୍ରିରେ ଯେତେବେଳେ ସମଗ୍ର ବିଶ୍ୱ ସୁପ୍ତ, ଭାରତ ସେତେବେଳେ ଜାଗି ଉଠିଲା ଓ ସ୍ୱାଧୀନତା ପାଇଲା । 'ଏକ ସମୟ ଆସେ ଯାହାକି କ୍ୱଚିତ ଇତିହାସରେ ଆସିଥାଏ । ଯେତେବେଳେ ଆମେ ପୁରାତନରୁ ନୂତନକୁ ଗୋଡ଼ ବଢ଼ାଇଥାଉ, ଯେତେବେଳେ ବୟସ ସରିଯାଇଥାଏ, ଦୀର୍ଘ ଦିନ ହେଲା ରାଷ୍ଟ୍ରର ଭାବନାକୁ ଚାପି ଦିଆଯାଇଥାଏ, ସେତେବେଳେ ତାହା ଉଦ୍‌ଗୀରଣ ପାଇଁ ସୁଯୋଗ ଖୋଜୁଥାଏ ।' ଏହା ଥିଲା ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କର ଦୃପ୍ତ ଘୋଷଣା । ୧୯୪୭ ମସିହା ଅଗଷ୍ଟ ୧୪ ତାରିଖରେ ପଣ୍ଡିତ ନେହେରୁ ପାର୍ଲିଆମେଣ୍ଟରେ ଏହା କହିଥିଲେ । ସେତେବେଳେ ବିଦେଶୀ ଶାସନରୁ ମୁକ୍ତ ହୋଇ ଭାରତ ସ୍ୱାଧୀନତାର ପ୍ରଥମ ନିଶ୍ୱାସ ନେବାକୁ ଯାଉଥାଏ । ପଣ୍ଡିତ ଜବାହର ଲାଲ ନେହେରୁ କେବଳ ଭାରତର ନୁହନ୍ତି ସମଗ୍ର ମାନବ ଜାତିର ସମ୍ପତ୍ତି । ଭାରତର ଜନସାଧାରଣଙ୍କ ପାଇଁ ସେ ଜୀବନସାରା ସଂଗ୍ରାମ କରିଛନ୍ତି । ଆଧୁନିକ ଭାରତର ସେ ହେଉଛନ୍ତି ସ୍ଥପତି । କେବଳ ସେ ଜାତୀୟ ସ୍ୱାଧୀନତା, ଏକତା ଏବଂ ସଂହତି ପାଇଁ କାର୍ଯ୍ୟ କରିଛନ୍ତି ତାହା ନୁହେଁ, ବିଶ୍ୱ ଶାନ୍ତି ଓ ପ୍ରଗତି ପାଇଁ ମଧ୍ୟ ନିଜକୁ ଉତ୍ସର୍ଗ କରିଛନ୍ତି ।

ଉଭୟ ଭାରତ ଏବଂ ନେହେରୁଙ୍କ ପାଇଁ ସ୍ୱାଧୀନତା ଏକ ଲକ୍ଷ୍ୟ ଥିଲା । ଏହି ଲକ୍ଷ୍ୟ ହାସଲ ପାଇଁ ସେ ବହୁ ପଥ ଅତିକ୍ରମ କରିଛନ୍ତି । ଭାରତ ସ୍ୱାଧୀନ ହେବା ବେଳକୁ ନେହେରୁଙ୍କ ବୟସ ୫୮ । ତାଙ୍କର ଅଧା ଜୀବନ ସେତେବେଳକୁ ଜେଲରେ କଟି ସାରିଥାଏ । ସେ ସ୍ୱାଧୀନତା ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ହେବା ପୂର୍ବରୁ ଦୁଇବର୍ଷ ଜେଲ ଭୋଗି ଆସିଥାଆନ୍ତି ।

ଏକ ସଂଭ୍ରାନ୍ତ କାଶ୍ମୀର ବ୍ରାହ୍ମଣ ପରିବାରର ଏକମାତ୍ର ପୁତ୍ର ଥିଲେ ପଣ୍ଡିତ ନେହେରୁ । ନେହେରୁଙ୍କ ପୂର୍ବଜମାନେ ଶ୍ରୀନଗରର ପାର୍ବତ୍ୟ ପାଦ ଦେଶରୁ ସମତଳ ଅଞ୍ଚଳକୁ ଆସିଥିଲେ । ଜବାହର ଲାଲଙ୍କର ପିତା ମୋତିଲାଲ ଜଣେ ସଫଳ ଆଇନ ବ୍ୟବସାୟୀ ଥିଲେ । ପିତାଙ୍କ ପ୍ରଭାବରେ ପୁତ୍ର ମଧ୍ୟ ନିଜ ଜୀବନକୁ ଗଢ଼ି ତୋଳି ଥିଲେ । ୧୮୮୯ ମସିହା ନଭେମ୍ବର ୧୪ ତାରିଖରେ ଜବାହର ଲାଲ ଏହ୍ଲାବାଦରେ ଜନ୍ମ ଗ୍ରହଣ କରିଥିଲେ । ଠିକ୍ ୧୬ ବର୍ଷ ବୟସରେ ସେ ଲଣ୍ଡନ ହ୍ୟାରୋ ବିଦ୍ୟାଳୟରେ ଭର୍ତ୍ତି ହେଲେ । ଏହା ପୂର୍ବରୁ ସେ ବିଦ୍ୟାଳୟର ଦ୍ୱାର ମାଡ଼ି ନଥିଲେ । ସେ ଘରେ ଶିକ୍ଷା ଲାଭ କରିଥିଲେ । ହ୍ୟାରୋରେ ବିଦ୍ୟାଳୟ ଶିକ୍ଷା ସମାପ୍ତ କରିବା ପରେ ସେ ଟ୍ରିନିଟ୍ କଲେଜରେ ନାମ ଲେଖାଇଥିଲେ । ଏହା ହେଉଛି ୧୯୦୭ ମସିହା ଅକ୍‌ଟୋବର ମାସର ଘଟଣା । ଋଷ-ଜାପାନ ଯୁଦ୍ଧ ଘଟଣାରେ ସେ ପ୍ରଭାବିତ ହୋଇଥିଲେ ଏବଂ ତାଙ୍କ ଭିତରେ ଥିବା ଜାତୀୟତାବାଦର ଉଦ୍ରେକ ହୋଇଥିଲା । ଭାରତରେ ଯାହାସବୁ ଘଟୁଛି ତାହା ଚିନ୍ତା କରି ସେ ବିବ୍ରତ ହୋଇ ପଡୁଥିଲେ । ତେବେ ଏପର୍ଯ୍ୟନ୍ତ ତାଙ୍କର ରାଜନୈତିକ ଚିନ୍ତାଧାରା ଏକ ନିର୍ଦ୍ଦିଷ୍ଟ ଦିଗରେ ଗତି କରିନଥିଲା । ପ୍ରାକୃତିକ ବିଜ୍ଞାନରେ ବି.ଏ. ପାସ୍ କରିବା ପରେ ସେ ଓକିଲାତି ଅଧ୍ୟୟନ କରି ବାରରେ ଯୋଗ ଦେଲେ । ସେତେବେଳେ ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା ଓକିଲ ହେବା ।

ପତ୍ନୀ କମଳାଙ୍କର ସ୍ୱାସ୍ଥ୍ୟ ଭଲ ନରହିବାରୁ ତାଙ୍କର ଚିକିତ୍ସା ପାଇଁ ୧୯୨୬ ମସିହା ମାର୍ଚ୍ଚ ମାସରୁ ସେ ୟୁରୋପ ଗସ୍ତ କରିଥିଲେ । ଏହି ଗସ୍ତ ବେଳେ ସେ ଉପଲବ୍‌ଧି କରିଥିଲେ ଯେ କେବଳ ଜାତୀୟବାଦ ଯଥେଷ୍ଟ ନୁହେଁ । ଭାରତର ସ୍ୱାଧୀନତା ସଂଗ୍ରାମକୁ ବିଶ୍ୱର ବିକାଶ ଦୃଷ୍ଟିକୋଣରୁ ବିଚାର କରାଯିବା ଉଚିତ । ଆନ୍ତର୍ଜାତୀୟ ଦୃଷ୍ଟିକୋଣରୁ ଏହାର ଗୁରୁତ୍ୱ ରହିବା ଆବଶ୍ୟକ । ତେଣୁ ଦେଶବାହାରେ ମଧ୍ୟ କିଛି ଆନ୍ଦୋଳନ କରିବାକୁ ହେବ । ୟୁରୋପ ଗସ୍ତ ବେଳେ ନେହେରୁ ସମାଜବାଦୀ ଚିନ୍ତା-ଧାରାର ସ୍ପର୍ଶରେ ଆସିଥିଲେ । କଂଗ୍ରେସର ନୀତିକୁ ସମାଜବାଦୀ ଚିନ୍ତାଧାରାର ରୂପରେଖ ଦେବାକୁ ସେ ବିଚାର କରିଥିଲେ ।

କମ୍ୟୁନିଜିମ୍‌ରେ ଥିବା ଉତ୍ତମଗୁଣଗୁଡ଼ିକୁ ସେ ଖୋଜିଲେ । ମାର୍କସ ଓ ଲେନିନଂକ ବାର୍ତ୍ତାରୁ ସବୁ କିଛି ଗ୍ରହଣ କରିବାକୁ ସେ କୁଣ୍ଠିତ ଥିଲେ । ୧୯୨୭ ରେ ଜବାହର ଲାଲ ୟୁରୋପ ଗସ୍ତରୁ ଫେରିଲେ । ସେତେବେଳକୁ ତାଙ୍କ ପାଇଁ ଅନେକ ସମସ୍ୟା ସୃଷ୍ଟି ହୋଇଥାଏ । ସେହି ଦିନଠାରୁ ଦେଶବାସୀଙ୍କୁ ସେ ସ୍ୱାଧୀନତା ମାର୍ଗରେ ଚାଲିବାକୁ ତାଲିମ ଦେବା ସହ ସ୍ୱାଧୀନତା ପ୍ରାପ୍ତି ପାଇଁ ସେମାନଙ୍କୁ ପ୍ରସ୍ତୁତ କରିବାକୁ ଲାଗିଲେ । ସ୍ୱାଧୀନତା ସହ ଏକ ଆନ୍ତର୍ଜାତୀୟ ଚେତନାର ଉଦ୍ରେକ ତାଙ୍କ ଭିତରେ ହୋଇଥାଏ ।

ଜବାହରଲାଲଙ୍କୁ ୩୧ ବର୍ଷ ବୟସ ହେବାବେଳେ ସେ ଭାରତର କୃଷକମାନଙ୍କର ସଂସର୍ଶରେ ଆସିବାର ସୁଯୋଗ ପାଇଲେ । ଏହା ତାଙ୍କର ରାଜନୈତିକ ଗତିପଥରେ ଏକ ମୋଡ଼ ନେଲା । ଯଦିଓ ସେ ଏକ ଧନୀ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ଓ ଇଂରେଜ ଆଦବକାଇଦାରେ ବଢ଼ିଥିଲେ କିନ୍ତୁ ଭାଗ୍ୟ ତାଙ୍କୁ ଭିନ୍ନ ମାର୍ଗରେ ନେଇଗଲା । ତାଙ୍କ ଜୀବନର ସୁଖମୟ ସମୟକୁ ସେ ଜେଲରେ କଟାଇଥିଲେ ଏବଂ ରାଜନୈତିକ ଆନ୍ଦୋଳନ କରିଥିଲେ । ୧୯୧୬ ମସିହା ଡ଼ିସେମ୍ବର ମାସରେ ମହାତ୍ମା ଗାନ୍ଧୀଙ୍କ ସହ ତାଙ୍କର ପ୍ରଥମ ସାକ୍ଷାତ ହେଲା । ଲକ୍ଷ୍ନୌଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ସମ୍ମିଳନୀରେ ଏହି ସାକ୍ଷାତ ହୋଇଥିଲା । ଏହି ଐତିହାସିକ ସାକ୍ଷାତ ପରେ

ଜବାହରଲାଲ ଏବଂ ତାଙ୍କ ପରିବାର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ଦେଶର ଭବିଷ୍ୟତ ନେତାଙ୍କୁ ତାଙ୍କରି ମଧ୍ୟରେ ଗାନ୍ଧିଜୀ ଦେଖିବାକୁ ପାଇଲେ । ଗାନ୍ଧିଜୀଙ୍କର ଚିନ୍ତାଧାରାକୁ ନେହେରୁ ରୂପରେଖ ଦେଇଛନ୍ତି । ଏହାପରେ ପଣ୍ଡିତ ନେହେରୁଙ୍କୁ ଗାନ୍ଧିଜୀ ନିଜର ରାଜନୈତିକ ଉତ୍ତରାଧିକାରୀ ଭାବେ ଘୋଷଣା କଲେ ।

କଂଗ୍ରେସକୁ ନେହେରୁ ଏକ ଦିଗ୍‌ଦର୍ଶନ ଦେଇଥିଲେ । ଗାନ୍ଧିଜୀଥିଲେ କଂଗ୍ରେସର ଆତ୍ମା ଓ ନେହେରୁ ଥିଲେ ମାର୍ଗଦର୍ଶକ । ଗାନ୍ଧିଜୀ ଭାରତୀୟମାନଙ୍କୁ ସଚେତନ କରିଥିଲେ ଏବଂ ନେହେରୁ ଅନ୍ୟମାନଙ୍କୁ ଭାରତ ସଂପର୍କରେ ସଚେତନ କରିଥିଲେ । ବନ୍ଦୀଶାଳାରେ ଥିବାବେଳେ ସେ ପାଞ୍ଚହଜାର ବର୍ଷର ଭାରତର ଅତୀତକୁ ଚିନ୍ତା କରିଥିଲେ । ଏହାକୁ ବର୍ତ୍ତମାନ ଓ ଭବିଷ୍ୟତ ସହ ସେ ସଂଯୋଗ କରିଥିଲେ । ଜେଲରେ ଥିବାବେଳେ ସେ ଦୁଇଟି ବିଖ୍ୟାତ ପୁସ୍ତକ ରଚନା କରିଛନ୍ତି । ଗୋଟିଏ ହେଲା 'ଡ଼ିସକଭରୀ ଅଫ୍ ଇଣ୍ଡିଆ' ଏବଂ ଅନ୍ୟଟି ହେଲା ''ଗ୍ଲିମ୍ପସେସ ଅଫ୍ ୱାର୍ଲଡ଼ ହିଷ୍ଟ୍ରି'' ।

୧୯୨୯ରେ ଲାହୋର କଂଗ୍ରେସ ଅଧିବେଶନରେ ସେ ସଭାପତି ଭାବେ ନିର୍ବାଚିତ ହେଲେ । ଏହାପରେ ସ୍ୱାଧୀନତା ସଂଗ୍ରାମ ଏକ ନୂତନ ଏବଂ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ମଧ୍ୟରେ ପ୍ରବେଶ କଲା । ୧୯୨୯ ମସିହା ଡ଼ିସେମ୍ବର ୩୧ ତାରିଖରେ ରାବି ନଦୀକୂଳରେ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ହାସଲ ପାଇଁ କଂଗ୍ରେସ ଶପଥ ଗ୍ରହଣ କଲା ।

ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ସେ ସର୍ବାଙ୍ଗୀନ ଉନ୍ନତି ପାଇଁ ଏକ ଦୃଢ଼ଭିତ୍ତିଭୂମି ଗଠନ କରିଥିଲେ । ଦେଶର ମୌଳିକ ସୁବିଧା ସୁଯୋଗର ବିକାଶ ଉପରେ ସେ ଅଗ୍ରାଧିକାର ଦେଇଥିଲେ । ବନ୍ଧ ଏବଂ ଶିଳ୍ପ କାରଖାନା ପ୍ରତିଷ୍ଠାକୁ ସେ ପ୍ରାଧାନ୍ୟ ଦେଉଥିଲେ । ଏହାକୁ ସେ ଆଧୁନିକ ଭାରତର ମନ୍ଦିର ବୋଲି କହୁଥିଲେ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରସାର ପ୍ରତି ମଧ୍ୟ ନେହେରୁଙ୍କର ଆଗ୍ରହ ଥିଲା । ତାଙ୍କ ମତରେ ଏହା ହେଉଛି ଦେଶର ମେରୁଦଣ୍ଡ ।

ଜାତୀୟ ଅର୍ଥନୀତିରେ ମଧ୍ୟ ପଣ୍ଡିତ ଜବାହର ନେହେରୁ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । ଏକ ଗଣତାନ୍ତ୍ରିକ ଢାଞ୍ଚାରେ ଯୋଜନା ମାଧ୍ୟମରେ ସେ ପ୍ରଗତି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲେ । ଦେଶ ସ୍ୱାଧୀନ ହେବା ପୂର୍ବରୁ ସେ ଅର୍ଥନୈତିକ ଯୋଜନାର ଗୁରୁତ୍ୱ ଉପଲବ୍ଧି କରିଥିଲେ । ୧୯୫୧ରେ ସେ ଯୋଜନା କମିଶନ ପ୍ରତିଷ୍ଠା କଲେ । ଏହି ଦିନଠାରୁ ଭାରତରେ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହେଲା । ଦେଶ ସ୍ୱାଧୀନ ହେବାପରେ ଏହାକୁ ପ୍ରଗତି ପଥରେ ଆଗେଇ ନେବାର ଗୁରୁଦାୟିତ୍ୱ ନେହେରୁଙ୍କ ଉପରେ ପଡ଼ିଲା । ସେ ଥିଲେ ଦେଶବାସୀଙ୍କର ଆଶା ଆକାଂକ୍ଷାର ପ୍ରତୀକ । ସେତେବେଳେକୁ ଆନ୍ତର୍ଜାତୀୟ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ଆରମ୍ଭ ହୋଇଥାଏ । ଦୁଇଟି ବିଶ୍ୱଯୁଦ୍ଧ ପରେ ପୃଥିବୀ ଶାନ୍ତିରେ ନିଶ୍ୱାସ ମାରିବାକୁ ଉଦ୍ୟମ କରୁଥାଏ । ମିଳିତ ଜାତିସଂଘର କିନ୍ତୁ ସକ୍ରିୟ ପୃଥିବୀ ଦୁଇଟି ଶକ୍ତି ଗୋଷ୍ଠୀରେ ଭାଗ ଭାଗ ହୋଇଥାଏ ।

ଅନ୍ୟ ଯେକୌଣସି ନେତାଙ୍କ ପାଇଁ ଏବଂ ବିଶେଷ କରି ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ରର ନେତାଙ୍କ ପାଇଁ ଏହି ପରିସ୍ଥିତିରେ ଆନ୍ତର୍ଜାତୀୟ କ୍ଷେତ୍ରରେ ଭାରସାମ୍ୟ ରକ୍ଷା କରି କାର୍ଯ୍ୟ କରିବା ଏକ କଷ୍ଟକର ବ୍ୟାପାର । କିନ୍ତୁ କୂଟନୀତିଜ୍ଞ ନେହେରୁ କେବଳ ଯେ ଭାରତର ବୈଦେଶିକ ନୀତିରେ ଏକ ଦିଗ୍ ଦର୍ଶନ ଦେଲେ ତାହାନୁହେଁ ବରଂ ଆନ୍ତର୍ଜାତୀୟ ନୀତିରେ ଏକ ନୂତନ ପର୍ଯ୍ୟାୟ ଆରମ୍ଭ କଲେ । ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ଏବଂ ପଞ୍ଚଶୀଳ ହେଉଛି ଆନ୍ତର୍ଜାତୀୟ ସଂପର୍କ ପାଇଁ ନେହେରୁଙ୍କର ମହାନ ଅବଦାନ । ଏହା ଏକ ଦାର୍ଶନିକ ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ପ୍ରତ୍ୟେକ ସ୍ୱାଧୀନ ଚିନ୍ତାଧାରା ଥିବା ରାଷ୍ଟ୍ର ପାଇଁ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ଚିନ୍ତାଧାରା ଏକ ସମ୍ମାନଜନକ ବ୍ୟାପାର । ପଡ଼ୋଶୀରାଷ୍ଟ୍ର ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ପଞ୍ଚଶୀଳ ହେଉଛି ଏକ ସଫଳ ମନ୍ତ୍ର ।

ବହୁ ବ୍ୟକ୍ତିତ୍ୱର ସମାହାର ହେଉଛନ୍ତି ପଣ୍ଡିତ ଜବାହରଲାଲ ନେହେରୁ । ବିଦ୍ୱାନମାନଙ୍କ ମଧ୍ୟରେ ବାସ୍ତବରେ ସେ ହେଉଛନ୍ତି ଜଣେ ସଫଳ ରତ୍ନ । ନେହେରୁଙ୍କ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧାଞ୍ଜଳୀ ଜ୍ଞାପନ କରି ମହାତ୍ମାଗାନ୍ଧୀ ଯଥାର୍ଥରେ କହିଛନ୍ତି, ସେ ଜଣେ ପିତା, ଭ୍ରାତା, ଲେଖକ, ପର୍ଯ୍ୟଟକ, ଦେଶପ୍ରେମୀ ଏବଂ ଆନ୍ତର୍ଜାତିକ ପ୍ରେମୀ ଏସବୁ ଗୁଣ ତାଙ୍କ ମଧ୍ୟରେ ଜାଜ୍ୱଲ୍ୟମାନ କରୁଛି ।

ସେ ଭାରି ସ୍ନେହୀ, ଛୋଟ ପିଲାଙ୍କ ପରି ତାଙ୍କର ବ୍ୟବହାର । ସେଥିପାଇଁ ଶିଶୁମାନଙ୍କର ସେ ଆଦରର ପାତ୍ର । ନଭେମ୍ବର ୧୪ ହେଉଛି ଜବାହରଲାଲ ନେହେରୁଙ୍କର ଜନ୍ମ ଦିବସ । ପ୍ରତିବର୍ଷ ଏହି ଦିବସଟିକୁ ଶିଶୁଦିବସ ଭାବେ ପାଳନ କରାଯାଏ । ପିଲାମାନେ ସେହି ଦିନଟିକୁ ଆନନ୍ଦ ଉଲ୍ଲାସରେ ବିତାଇ ଥାଆନ୍ତି ।

୧୯୬୪ ମସିହା ମଇ ୨୭ ତାରିଖ ଦିନ ହଠାତ୍ ହୃଦରୋଗରେ ଆକ୍ରାନ୍ତ ହୋଇ ନେହେରୁ ପ୍ରାଣତ୍ୟାଗ କଲେ । ତାଙ୍କର ଅବର୍ତ୍ତମାନରେ କେବଳ ଯେ ଏକ ଶୂନ୍ୟ ସ୍ଥାନ ସ୍ଥାପିତ ହେଲା ତାହା ନୁହେଁ, ବରଂ ଏପରି ଏକ ଖାଲି ସ୍ଥାନ ସୃଷ୍ଟି ହେଲା ଯାହାର ପୂରଣ କଦାପି କରାଯାଇପାରିବ ନାହିଁ । ଏହା ଏପରି ଏକ ଶୂନ୍ୟ ସ୍ଥାନ ଯାହାକି କାହାରି ସହ ତୁଳନା ମଧ୍ୟ କରାଯାଇ ପାରିବ ନାହିଁ । ସେ ଜଣେ ଭାଗ୍ୟ ନିୟନ୍ତା ଯେ କି ନିଜର ବ୍ୟକ୍ତିତ୍ୱ ଦ୍ୱାରା ଇତିହାସ ସୃଷ୍ଟି କରିପାରିଛନ୍ତି । ଜନଗନ୍ତର କହନ୍ତି, '' ନେହେରୁଙ୍କ ମଧ୍ୟରେ ତ୍ରିମୁଖୀ ସଂଘର୍ଷ ଚାଲିଥିଲା । ସେ ଜଣେ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀ ସଂପନ୍ନ ଭାରତୀୟ । ଜଣେ ସମାଜବାଦୀ ସଂଭ୍ରାନ୍ତ ବ୍ୟକ୍ତି ଏବଂ ଜଣେ ବ୍ୟକ୍ତି ଯେକି ଗଣର ନେତା ହୋଇଥିଲେ । ଏହି ୩ଟି ଯାକ କ୍ଷେତ୍ରରେ ସେ ବିଜୟୀ ।

ନେହେରୁଙ୍କର ମାନବିକତାବାଦୀ ବ୍ୟକ୍ତିତ୍ୱ ଉପରେ ତାଙ୍କର ଭଉଣୀ ବିଜୟ ଲକ୍ଷ୍ମୀ ପଣ୍ଡିତ ଯଥାର୍ଥରେ ଉଲ୍ଲେଖ କରିଛନ୍ତି, ''ସବୁ କିଛିର ଉପରେ ସେ ଜଣେ ମଣିଷ । ସେଥିପାଇଁ ତାଙ୍କୁ ଯେଉଁ ମାନେ ଜାଣନ୍ତି ସେମାନେ ତାଙ୍କୁ ବହୁତ ଭଲ ପାଆନ୍ତି । ତାଙ୍କୁ ଭଲଭାବେ ଜାଣିବାକୁ ହେଲେ ସେ ପରିବାରର ସଦସ୍ୟମାନଙ୍କ ମେଳରେ ଥିବାବେଳେ ଦେଖିବାକୁ ହେବ ।

ମାନବ ଜାତି ପାଇଁ ତାଙ୍କର ମହାନ୍ ସେବାକୁ ସ୍ୱୀକୃତି ଓ ସମ୍ମାନ ଜଣାଇବା ଲାଗି ୧୯୫୫ରେ ରାଷ୍ଟ୍ରର ସର୍ବୋଚ୍ଚ ସମ୍ମାନ ''ଭାରତ ରତ୍ନ''ରେ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ଭୂଷିତ କରାଯାଇଥିଲା ।

# ୧୮୧୭ର ପାଇକ ବିଦ୍ରୋହରେ ହରିଶପୁର

ଡଃ ମହେଶ୍ୱର ମହାନ୍ତି

ଓଡ଼ିଶାର ସ୍ୱାଧୀନ ନରପତିଙ୍କ ଶାସନ କାଳରେ ପୂର୍ବ ଉପକୂଳରେ ଗୋଲରା, ମରିଚିପୁର, ହରିଶପୁର, ବିଶୁନପୁର, କୁଜଙ୍ଗ, ପାରାଦେଶପୁର, ଆଳି ଓ କନିକା ଏହିଭଳି ଆଠଟି ଖଣ୍ଡାୟତ ଶାସିତ ରାଜ୍ୟ ବା କିଲ୍ଲା ଥିଲା । ପ୍ରତ୍ୟେକ ରାଜ୍ୟରେ ଗୋଟିଏ ଗୋଟିଏ ସୁଦୃଢ଼ ଗଡ଼ ଥିଲା ଏବଂ ପ୍ରତି ଗଡ଼ରେ ଜଣେ ଜଣେ ଖଣ୍ଡାୟତ ରାଜା ବାସକରୁଥିଲେ । ଏହି ଖଣ୍ଡାୟତ ରାଜାମାନେ ରାଜ୍ୟର ସ୍ୱାଧୀନ ନରପତିଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ସେମାନଙ୍କୁ ମୁହାଣ ଚୌକିଆ ବା ମୁହାଣ କିମ୍ବୀର ଉପାଧି ପ୍ରଦାନ କରାଯାଇଥିଲା । ସେମାନେ ମୁହାଣ ସୁରକ୍ଷା କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ନଦୀ ମୁହାଣ ମଧ୍ୟ ଦେଇ କୌଣସି ବହିଃଶତ୍ରୁଙ୍କୁ ସେମାନେ ରାଜ୍ୟ ଭିତରେ ପ୍ରବେଶ କରାଇ ଦେଉନଥିଲେ । ସେତେବେଳେ କେବଳ ଜଳପଥରେ ହିଁ ବହିଃଶତ୍ରୁ ମାନେ ଦେଶ ମଧ୍ୟରେ ପ୍ରବେଶ କରିବାର ସମ୍ଭାବନା ଥିଲା ।

ଦେବୀନଦୀ ମୁହାଣରେ ମରିଚିପୁର ଗଡ଼ ଓ ତାର ଏକ ଶାଖାନଦୀ ପାଟୁଆ ନଦୀ ମୁହାଣରେ ହରିଶପୁର ଗଡ଼ ଅବସ୍ଥିତ ଥିଲା । ଏ ଦୁଇଟି ଯାକ ସ୍ଥାନ ଏବେ ଜଗତସିଂହପୁର ଜିଲ୍ଲାରେ ଅବସ୍ଥିତ । ଅତୀତରେ ଏ ଦୁଇଟି ସମୃଦ୍ଧ ବନ୍ଦର ଥିଲା ଏବଂ ଏହି ବନ୍ଦର ଦେଇ ଓଡ଼ିଶାର ବହିର୍ବାଣିଜ୍ୟ କାରବାର ଚାଲୁଥିଲା । ହରିଶପୁର ବନ୍ଦରରେ ସେତେବେଳେ ଜାହାଜ ତିଆରି ସଙ୍ଗେ ସଙ୍ଗେ ମରାମତି କାର୍ଯ୍ୟ ମଧ୍ୟ ହେଉଥିଲା । ଏଠାରୁ କାରିଗରମାନେ ଯାଇ ବାଲେଶ୍ୱର ଓ ପିପିଲି ପ୍ରଭୃତି ସ୍ଥାନରେ ଜାହାଜ ମରାମତି କରୁଥିଲେ । ମୋଗଲ ଶାସନ କାଳରେ ହରିଶପୁରଠାରେ ଗୋଟିଏ କଷ୍ଟମସ୍ ହାଉସ ଥିବାର ଡଃ ମହତାବ ତାଙ୍କ ଇତିହାସରେ ଉଲ୍ଲେଖ କରିଛନ୍ତି ।

ହରିଶପୁର ବନ୍ଦରର ଐତିହାସିକ ମହତ୍ୱ ଏହି ଯେ ୧୬୩୩ ମସିହାରେ ଇଂରେଜ ବଣିକ ଦଳ ପ୍ରଥମ କରି ଏହି ବାଟଦେଇ ଓଡ଼ିଶାରେ ପ୍ରବେଶ କରିଥିଲେ । କାର୍ଟରାଇଟ୍ ଓ ବ୍ରୁଟନଙ୍କ ନେତୃତ୍ୱରେ ଗୋଟିଏ ଆଠଜଣିଆ ବଣିକ ଦଳ ମସ୍ଲିମପଟମ ଠାରୁ ଜାହାଜ ନେଇ ୧୬୩୩ ମସିହା ଅପ୍ରେଲ ୨୧ ତାରିଖ ଦିନ ହରିଶପୁର ବନ୍ଦରରେ ଓହ୍ଲାଇଥିଲେ । ସେମାନେ କଟକସ୍ଥ ବାରବାଟୀ ଦୁର୍ଗରେ ତତ୍କାଳୀନ ମୁସଲମାନ ସୁବାଦାର ଆଗା ମହମ୍ମଦ ଜମାନ ତିରାନୀଙ୍କଠାରୁ ଅନୁମତି ନେଇ ହରିହରପୁର (ବର୍ତ୍ତମାନର ଜଗତସିଂହପୁର) ଠାରେ ଗୋଟିଏ କୁଠୀଘର ସ୍ଥାପନ କରିଥିଲେ । ତାହା ହିଁ ଥିଲା ସମଗ୍ର ବଙ୍ଗଳା ଡିଭିଜନରେ ଇଂରେଜମାନଙ୍କ ଦ୍ୱାରା ସ୍ଥାପିତ ପ୍ରଥମ ବାଣିଜ୍ୟ କୋଠି ତଥା ଫାକ୍ଟ୍ରି । ଏବେ ସେଇ ସ୍ଥାନ ଫିରିଙ୍ଗି କୁଦ ନାମରେ ପରିଚିତ । ତାହା ଉପରେ ବର୍ତ୍ତମାନ ଶ୍ରୀକୃଷ୍ଣ ଏକାଡ଼େମୀ ନାମରେ ହାଇସ୍କୁଲଟିଏ ସ୍ଥାପିତ ହୋଇଛି ।

### ହରିଶପୁର ଗଡ଼

ହରିଶପୁର ଗଡ଼ରେ ପ୍ରଥମେ କେଉଁ ଖଣ୍ଡାୟତ ରାଜା ରାଜତ୍ୱ କରୁଥିଲେ ତାହାର କିଛି ପ୍ରାମାଣିକ ତଥ୍ୟ ନାହିଁ । ପୁରୀ ଜିଲ୍ଲା ଗେଜେଟିଅର (ଓ' ମାଲି) ରେ ଉଲ୍ଲେଖ ଅଛି ଯେ ପ୍ରାୟ ତିନିଶହ ବର୍ଷ ପୂର୍ବେ (ସପ୍ତଦଶ ଶତାବ୍ଦୀର ଆଦ୍ୟ ଭାଗରେ) ତାଳଚେର ରାଜ୍ୟରୁ ତିନିଜଣ ଖଣ୍ଡାୟତ ଭାଇ ଆସି ହରିଶପୁର, ମରିଚିପୁର ଓ ବିଶୁନପୁର ରାଜ୍ୟକୁ ଅଧିକାର କରିଥିଲେ । ସେଇ ତିନି ଭାଇ ତାଳଚେରର ଗଙ୍ଗାବଂଶୀୟ ଖଣ୍ଡାୟତ ଥିଲେ । ସେମାନଙ୍କୁ ଗଙ୍ଗାବଂଶୀୟ ଖଣ୍ଡାୟତ ବୋଲି କୁହାଯାଏ । ତେବେ ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ଏହି ଅଞ୍ଚଳରେ ମାଧବ ମଙ୍ଗରାଜ ନାମରେ ଜଣେ ଖଣ୍ଡାୟତ ରାଜା ଥିଲେ । ତାଙ୍କର ଜଣେ ପୁତ୍ର ନରସିଂହ ମଙ୍ଗରାଜ ହରିଶପୁରର ଓ ଅନ୍ୟ ଜଣେ ପୁତ୍ର ପଦ୍ମନାଭ ମଙ୍ଗରାଜ ଥିଲେ ମରିଚିପୁରର ରାଜା । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବାବେଳେ ହରିଶପୁରର ରାଜାଥିଲେ ନୀଳକଣ୍ଠ ମଙ୍ଗରାଜ । ସେତେବେଳକୁ ତାଙ୍କ ବୟସ ଥିଲା ୫୦ ବର୍ଷ ଓ ସେ ୧୭୮୩ ବେଳକୁ ରାଜ୍ୟପ୍ରାପ୍ତି ହୋଇଥିବାର ସରକାର ରେକର୍ଡରୁ ଜଣାଯାଏ ।

ନୀଳକଣ୍ଠ ମଙ୍ଗରାଜ ଜଣେ ଅତ୍ୟନ୍ତ ସାହସୀ ଓ ଦୁର୍ଦ୍ଧାନ୍ତ ପୁରୁଷଥିଲେ । ମୁହାଣ ରକ୍ଷକ ଭାବରେ ବଙ୍ଗୋପସାଗରରେ ଯାଉଥିବା ବ୍ରିଟିଶ ଜାହାଜଗୁଡ଼ିକ ପ୍ରତି ସେ ଥିଲେ ଆତଙ୍କର କାରଣ । ଓଡ଼ିଶା ବ୍ରିଟିଶ ଶାସନାଧୀନ ହେବା ପରେ ପ୍ରଥମ କରି ହରିଶପୁରର ଖଣ୍ଡାୟତ ରାଜା ନୀଳକଣ୍ଠ ମଙ୍ଗରାଜ ତାଙ୍କୁ ବିରୋଧ କରି ବାର୍ଷିକ ପେସ୍‌କସ ଦେଇ ନଥିଲେ ।

ଓଡ଼ିଶା ଦଖଲ ପରେ ଖୋର୍ଦ୍ଧା ରାଜାଙ୍କ ସହିତ ସରକାରଙ୍କ ଭୁଲ ବୁଝାମଣା ଯୋଗୁଁ ସଂଘର୍ଷ ଆରମ୍ଭ ହୋଇ ଯାଇଥିଲା । ଖୋର୍ଦ୍ଧାର ନାବାଳକ ରାଜା ଦ୍ୱିତୀୟ ମୁକୁନ୍ଦଦେବ ୧୮୦୫ ମସିହା ଜାନୁଆରୀ ୩

ତାରିଖରେ ଆତ୍ମ ସମର୍ପଣ କରିଥିଲେ ଏବଂ ତାଙ୍କୁ କଟକର ବାରବାଟୀ ଦୁର୍ଗରେ ବନ୍ଦୀକରି ରଖାଯାଇଥିଲା । ନାଳକଣ୍ଠ ମଙ୍ଗରାଜ ଇଂରେଜ ସରକାରଙ୍କ ଆନୁଗତ୍ୟ ସ୍ୱୀକାର ନ କରିବାରୁ ତାଙ୍କୁ ସେହି ମାସର ୨୦ ତାରିଖ ଦିନ କ୍ଷମତାଚ୍ୟୁତ କରି ବନ୍ଦୀ କରାଗଲା । ଏହା ପରେ ଇଷ୍ଟେଟ୍ ଖାସ ହୋଇଗଲା । ନୀଳକଣ୍ଠ ମଙ୍ଗରାଜଙ୍କୁ କଟକରେ ୧୮୦୫ ମସିହା ଅପ୍ରେଲ ମାସ ପର୍ଯ୍ୟନ୍ତ ବନ୍ଦୀ ରଖାଗଲା ଏବଂ ପରେ କେତେକ ସର୍ତ୍ତରେ ତାଙ୍କୁ ଖଲାସ କରି ଇଷ୍ଟେଟ୍ ଫେରାଇ ଦିଆଗଲା । ଏହା ଫଳରେ ଇଂରେଜ ସରକାରଙ୍କ ସହିତ ହରିଶପୁର ରାଜାଙ୍କର ସଂପର୍କ ଅତ୍ୟନ୍ତ ତିକ୍ତ ହୋଇ ଉଠିଲା ଓ ସରକାର ତାଙ୍କୁ ବରାବର ସନ୍ଦେହ ଚକ୍ଷୁରେ ଦେଖିଲେ ।

## ୧୮୧୭ର ପାଇକ ବିଦ୍ରୋହ

ଓଡ଼ିଶାରେ ଇଂରେଜ ଶାସନର ଦ୍ୱିତୀୟ ଦଶନ୍ଧିରେ ଖୋର୍ଦ୍ଧାର ବକସି ଜଗବନ୍ଧୁଙ୍କୁ କେନ୍ଦ୍ର କରି ଯେଉଁ ପାଇକ ବିଦ୍ରୋହ ଗଢ଼ି ଉଠିଥିଲା ତାହା ସରକାରଙ୍କ ପ୍ରତି ଥିଲା ଏକ ପ୍ରଚଣ୍ଡ ଧକ୍କା । ଏହି ଅବସରରେ ହରିଶପୁର, କୁଜଙ୍ଗ ଓ କନିକା ଅଞ୍ଚଳର ଖଣ୍ଡାୟତମାନେ ସଂଗଠିତ ହେବାକୁ ସରକାରଙ୍କର ମୁଣ୍ଡ ବାଥା ଆରମ୍ଭ ହୋଇଯାଇଥିଲା ।

୧୮୧୭ ମସିହାର ମାର୍ଚ୍ଚ ମାସରେ ଖୋର୍ଦ୍ଧାଠାରେ ପ୍ରଥମ ବିସ୍ଫୋରଣ ଆରମ୍ଭ ହେବା ପରେ ତାହା କ୍ରମେ ଖୋର୍ଦ୍ଧା ବାହାରେ ଗୋପ, ପିପିଲି, ତିରଣ, ହରିହରପୁର, ହରିଶପୁର, କୁଜଙ୍ଗ, ଅସୁରେଶ୍ୱର ଓ ପଟାମୁଣ୍ଡାଇ ପ୍ରଭୃତି ଅଞ୍ଚଳକୁ ବ୍ୟାପୀ ଯାଇଥିଲା । ସେତେବେଳେ କଟକର ମାଜିଷ୍ଟ୍ରେଟ ଥିଲେ ଉ. ଇମେ । ବିଦ୍ରୋହର ଗୁରୁତ୍ୱକୁ ଲକ୍ଷ୍ୟକରି ମାଜିଷ୍ଟ୍ରେଟ ଇମେ ୧୮୧୭ ମସିହା ମେ ମାସ ୩୦ ତାରିଖରେ ସରକାରଙ୍କୁ ଜଣାଇ ଦେଲେ ଯେ ଗୋପ, ତିରଣ, ଗୋଲରା, ହରିଶପୁର ଏବଂ କୁଜଙ୍ଗ ଅଞ୍ଚଳରେ ତୁରନ୍ତ ସାମରିକ ଆଇନ ଜାରି କରିବାକୁ ପଡ଼ିବ । ତା ନ ହେଲେ ସଂଘବଦ୍ଧ ହୋଇଥିବା ଖଣ୍ଡାୟତମାନଙ୍କୁ ଦମନ କରିହେବ ନାହିଁ । ଖୋର୍ଦ୍ଧାରୁ ସେତେବେଳକୁ କେତେକ ପାଇକ ଗୋପଠାରେ ପିପିଲି ଅଞ୍ଚଳକୁ ପଳାଇ ଯାଇ ସେଠାରେ ଆତ୍ମଗୋପନକରି ରହିଥିଲେ ଏବଂ ସ୍ଥାନୀୟ ଖଣ୍ଡାୟତମାନଙ୍କ ସହ ସଂପର୍କ ସ୍ଥାପନ କରିଥିଲେ । ମାଜିଷ୍ଟ୍ରେଟଙ୍କ ଅନୁରୋଧ କ୍ରମେ କେତେକ ଅଞ୍ଚଳରେ ସାମରିକ ଆଇନ ଜାରି କରାଗଲା ଏବଂ କ୍ୟାପଟେନ କେନିଟ କୁଜଙ୍ଗ ଅଞ୍ଚଳର ଦାୟିତ୍ୱରେ ରହିଲେ । ସେତେବେଳକୁ ହରିଶପୁରର ରାଜାଥିଲେ ନୀଳକଣ୍ଠଙ୍କ ପୁତ୍ର ମଧୁସୂଦନ ମଙ୍ଗରାଜ । ପିତାଙ୍କ ଭଳି ସେ ମଧ୍ୟ ଥିଲେ ଦୁର୍ଦ୍ଦାନ୍ତ ଓ ଅନମନୀୟ ସ୍ୱଭାବର । କୁଜଙ୍ଗ ଅଞ୍ଚଳର ଖଣ୍ଡାୟତମାନଙ୍କର ସେ ଥିଲେ ନେତା । ସାମରିକ ଆଇନ୍ ଜାରି ସତ୍ତ୍ୱେ ସେ ବଡ଼ି ନୟାଗ ବହୁବାର ବ୍ରିଟିଶ ସିପାହୀମାନଙ୍କ ସହିତ ମୁକାବିଲା କରିଥିଲେ ।

ପୋଲିସ ହରିଶପୁର ଗଡ଼କୁ ଘେରାଉ କରି ରଖିଲେ ଏବଂ ସେ ଅଞ୍ଚଳରେ ସର୍ତ୍ତକ କଟୁଆଳିର ବ୍ୟବସ୍ଥା କରାଗଲା । ମଧୁସୂଦନଙ୍କର ବହୁ ଅନୁଗତ ଖଣ୍ଡାୟତ ଯୋଦ୍ଧାମାନଙ୍କୁ ପୋଲିସ ଗିରଫ କରିନେଲେ । ତାଙ୍କର ଜଣେ ପ୍ରଧାନ ଅନୁଗତ ପୋଲିସ ହାତରେ ମୃତ୍ୟୁ ବରଣ କଲେ । ମଧୁସୂଦନ ଆହତ ହୋଇ ମଧ୍ୟ ଧରାପଡ଼ି ନଥିଲେ ।

ଇତ୍ୟବସରରେ ବର୍ଷାଦିନ ଆସି ଯିବାରୁ ଏହି ଦୁର୍ଗମ ଅଞ୍ଚଳରେ ପୋଲିସ କାର୍ଯ୍ୟାନୁଷ୍ଠାନ ଦୁରୂହ ହୋଇ ପଡ଼ିଲା । ଫଳରେ ପୋଲିସ ବାହିନୀକୁ ବର୍ଷାଋତୁ ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କରି ରହିବାକୁ ପଡ଼ିଲା । କଲେକ୍ଟର ଇମେ ୧୮୧୭ ମସିହା ଜୁନ ୧୬ ତାରିଖ ଦିନ ରାଜଧାନୀ କଲିକତାସ୍ଥିତ ଫୋର୍ଟ ଉଇଲିୟମରେ ଅବସ୍ଥାପିତ ସରକାରଙ୍କ ଜୁଡ଼ିସିଆଲ ଡିପାର୍ଟମେଣ୍ଟର ସେକ୍ରେଟେରୀ ଡବ୍ଲୁ. ବି. ବେଲେଙ୍କୁ ଚିଠି ଲେଖି ଜଣାଇଲେ, ''କୁଜଙ୍ଗ କିଲା ସନ୍ନିହିତ ହରିଶପୁରର ଖଣ୍ଡାୟତ ରାଜା ମଧୁସୂଦନ ମଙ୍ଗରାଜ ଜଣେ ଦୁର୍ଦ୍ଦାନ୍ତ ବ୍ୟକ୍ତି ଅଟନ୍ତି । ସେ ସରକାରଙ୍କ ବିରୋଧରେ ପ୍ରକାଶ୍ୟ ବିଦ୍ରୋହ ଘୋଷଣା କରିଛନ୍ତି । ତାଙ୍କ ଇଷ୍ଟେଟ୍ଟି ତିରଣ ଥାନା ଅନ୍ତର୍ଗତ ଅଟେ । (ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ୧୮୦୬ ମସିହାରେ ସରକାର ପ୍ରଥମ କରି ଯେଉଁ ୧୬ଟି ଥାନା ଖୋଲିଥିଲେ, ସେଥିମଧ୍ୟରୁ ଆଧୁନିକ ତିର୍ତ୍ତୋଲ ଥାନା ଅନ୍ତର୍ଗତ ତିରଣ ଥିଲା ଏକତମ । ଏହି ସମୟରେ ହରିଶପୁର (ଜଗତସିଂହପୁର) ଠାରେ ମଧ୍ୟ ଗୋଟିଏ ଥାନା ପ୍ରତିଷ୍ଠା କରାଯାଇଥିଲା ।) ଅବସ୍ଥାର ଗୁରୁତ୍ୱ ଦୃଷ୍ଟିରୁ ହରିଶପୁରଠାରେ ଗୋଟିଏ ଥାନା ପ୍ରତିଷ୍ଠା କରାଯିବା ଉଚିତ୍ । ତାହା ହେଲେ ସେଇ ଦୁର୍ଦ୍ଦାନ୍ତ ଖଣ୍ଡାୟତ ସର୍ଦ୍ଦାର ତଥା ବିଦ୍ରୋହୀ ପାଇକମାନଙ୍କୁ ଧରିବା ସହଜ ହେବ । ବନମାଳୀ ନରେନ୍ଦ୍ର ନାମରେ ଜଣେ ସ୍ଥାନୀୟ ବ୍ୟକ୍ତି ଏ ବିଷୟରେ ସରକାରଙ୍କୁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇଛି ଓ ତା ଉପରେ ମୋର ବିଶ୍ୱାସ ଅଛି । ପୋଲିସ ଅଫିସରଙ୍କ ସହାୟତାରେ ବନମାଳୀ ନରେନ୍ଦ୍ର ବହୁବାର ସେଇ ଖଣ୍ଡାୟତ ଉପରେ ଆକ୍ରମଣ କରିଛି । ତାହା ଫଳରେ ଏବେ ମଧୁସୂଦନ ମଙ୍ଗରାଜର ପ୍ରଧାନ ପ୍ରଧାନ ସହଯୋଗୀ ଓ ସର୍ଦ୍ଦାରମାନଙ୍କୁ ଗିରଫ କରାଯାଇ ପାରିଛି ।''

ଚିଠିର ୪ର୍ଥ ଓ ୫ମ ପାରାରେ କଲେକଟ୍ର ପୁନରାୟ ଉଲ୍ଲେଖ କରିଥିଲେ, ''ଜଣେ ବନ୍ଦୀଙ୍କୁ ଜେରା କରାଯିବାରୁ ସେ ସ୍ୱୀକାର କରିଛି ଯେ ଏହି ଖଣ୍ଡାୟତ ରାଜା ବକସି ଜଗବନ୍ଧୁଙ୍କର ଜଣେ ସର୍ଦ୍ଦାର କରୁଣାକର ପରମଗୁରୁଙ୍କ ସହିତ ନିୟମିତ ଯୋଗାଯୋଗ ରଖିଅଛି ।''

ବନମାଳୀ ନରେନ୍ଦ୍ରଙ୍କୁ ମାଜିଷ୍ଟ୍ରେଟ ଖର୍ଚ୍ଚ ବାବଦକୁ ଏକ ଶହ ଟଙ୍କା ଦେବା ସହିତ ମଧୁସୂଦନ ମଙ୍ଗରାଜଙ୍କୁ ଧରାଇଦେଲେ ଏକ ହଜାର ଟଙ୍କା ପୁରସ୍କାର ଦିଆଯିବାକୁ ସେହି ଚିଠିରେ ଅନୁମତି ମାଗିଥିଲେ । କେବଳ ସେତିକି ନୁହେଁ, ବନମାଳୀ ନରେନ୍ଦ୍ରଙ୍କୁ ପୋଲିସ ଦାରୋଗା ପଦରେ ନିଯୁକ୍ତ କରାଯିବାକୁ ସେ ସୁପାରିଶ କରିଥିଲେ । ଏହି ପ୍ରସଙ୍ଗରେ ଉଲ୍ଲେଖ ଯୋଗ୍ୟ ଏହାର ୯ ମାସ ପରେ ୧୮୧୮ ମସିହା ମାର୍ଚ୍ଚ ମାସ ୧୭ ତାରିଖରେ ବକ୍ସି ଜଗବନ୍ଧୁଙ୍କୁ ଧରାଇ ଦେଲେ ୫ ହଜାର ଟଙ୍କା ଓ ତାଙ୍କର ସହଯୋଗୀ କରୁଣାକର ପରମଗୁରୁ ପ୍ରଭୃତି ୧୪ ଜଣଙ୍କୁ ଧରାଇଦେଲେ ପ୍ରତ୍ୟେକ ୧ ହଜାର ଟଙ୍କା ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଯାଇଥିଲା ।

ବର୍ଷା ଋତୁର ସୁଯୋଗ ନେଇ ପଚାମୁଣ୍ଡାର ଅଞ୍ଚଳରେ ପ୍ରାୟ ୨୦୦ ପର୍ଯ୍ୟନ୍ତ ପାଇକ ମେଳ ହୋଇ ଥାନା ଉପରେ ଆକ୍ରମଣ କରି ଚାରିଜଣ ବରକନ୍ଦାଜ (କନେଷ୍ଟବଲ) ଙ୍କୁ ଆହତ କରିଥିଲେ । ସେଥିପାଇଁ ପଚାମୁଣ୍ଡାର ଥାନାରେ ସିପାହୀ ସଂଖ୍ୟା ବଢ଼ାଇ ଦିଆଯାଇଥିଲା । ପଚାମୁଣ୍ଡାର ସମେତ ତିରଣ, ଗୋପ, ହରିହରପୁର, ଉଦ୍ଧକ, ଅଗଖପୁର, ପିପିଲି ପ୍ରଭୃତି ଥାନାରେ ମଧ୍ୟ ଅଧିକ ପୋଲିସ ମୁତୟନ କରାଯାଇଥିଲା । ସେ ସମୟରେ ଘୋଡାସବାର ପୋଲିସ ନିଯୁକ୍ତ ହୋଇଥିଲେ । ଅପ୍ରେଲ, ମେ ମାସରେ ଅଧିକ ଘୋଡା ସବାରଙ୍କ ପାଇଁ ଯେଉଁ ଖର୍ଚ୍ଚ ମଞ୍ଜୁର ହୋଇଥିଲା ତାହା ହେଉଛି ତିରଣ ଥାନାରେ ୬୦ ଜଣଙ୍କ ପାଇଁ ଜଣ ପିଛା ୪ ଟଙ୍କା ହିସାବରେ ୨୪୦ ଟଙ୍କା ଏବଂ ହରିହରପୁର ଥାନାରେ ୧୦ ଜଣଙ୍କ ପାଇଁ ୪ ଟଙ୍କା ହିସାବରେ ୪୦ ଟଙ୍କା ।

ପରିଶେଷରେ ମଧୁସୂଦନ ମଙ୍ଗରାଜ ପୋଲିସ ହାତରେ ଧରା ପଡ଼ିଥିଲେ । ଏଥିରେ ବନମାଳୀ ନରେନ୍ଦ୍ର ପ୍ରଧାନ ଭୂମିକା ଗ୍ରହଣ କରିଥିଲେ । ତେଣୁ ତାଙ୍କର ପ୍ରାପ୍ୟ ଏକ ହଜାର ଟଙ୍କା ପୁରସ୍କାର ମଞ୍ଜୁର କରି ସରକାର ୧୮୧୯ ମସିହା ଜାନୁଆରୀ ୧ ତାରିଖ ଦିନ ନିଜାମତ ଅଦାଲତର ରେଜିଷ୍ଟ୍ରାରଙ୍କୁ ଜଣାଇ ଦେଇଥିଲେ । ମରିଚପୁରର ଜଣେ ଜମିଦାର ନାଗା ସିତଲ ଦାସ ମଧ୍ୟ ପାଇକ ବିଦ୍ରୋହ ସମୟରେ ସରକାରଙ୍କୁ ସାହାଯ୍ୟ କରିଥିବାରୁ ସରକାର ପ୍ରୀତ ହୋଇ ତାଙ୍କର ବର୍ଷକର ପୂରା ଖଜଣା ୩୧୨୦ ଟଙ୍କା ମାଫ କରି ଦେଇଥିଲେ ।

ମଧୁସୂଦନ ମଙ୍ଗରାଜ ଶେଷ ପର୍ଯ୍ୟନ୍ତ ଅନମନୀୟ ଥିଲେ । ତାଙ୍କ ପିତା ନୀଳକଣ୍ଠ ମଙ୍ଗରାଜ ୧୮୦୫ ମସିହା ଅପ୍ରେଲ ମାସରେ ଖଲାସ ହେବା ପରେ ତାଙ୍କୁ ନରହତ୍ୟା ଅପରାଧରେ ଗିରଫ କରି କୋର୍ଟକୁ ଚାଲାଣ କରାଯାଇଥିଲା ଓ ବହୁଦିନ ପର୍ଯ୍ୟନ୍ତ ତାଙ୍କର ବିଚାର ଚାଲିଥିଲା । ବିଭିନ୍ନ କାରଣରୁ କ୍ଷୁବ୍ଧ ହୋଇ ମଧୁସୂଦନ ସରକାରଙ୍କ ପାଖରେ ଆତ୍ମ ସମର୍ପଣ କରିବାକୁ ଇଚ୍ଛା ପ୍ରକାଶ କରି ନଥିଲେ । ଉପକୂଳ ଅଞ୍ଚଳରେ ଶାନ୍ତି ଫେରାଇ ଆଣିବା ନିମନ୍ତେ ମାଜିଷ୍ଟ୍ରେଟ ଇମ୍ପେ କ୍ୟାପଟେନ କେନିଟଙ୍କୁ ୨୩।୬।୧୮୧୭ ମସିହାରେ ଗୋଟିଏ ଚିଠି ଲେଖି ଜଣାଇଥିଲେ ଯେ କୌଣସି ଖଣ୍ଡାୟତ ସର୍ଦ୍ଦାର ଯଦି ବଳେବଳେ ପୋଲିସ ପାଖରେ ଆତ୍ମ ସମର୍ପଣ କରନ୍ତି ତେବେ ତାଙ୍କୁ କ୍ଷମା ଦିଆଯିବ; ମାତ୍ର ହରିଶପୁର ରାଜାଙ୍କୁ କ୍ଷମା ଦିଆଯିବ ନାହିଁ । ସେ ଆଗେ ଆତ୍ମ ସମର୍ପଣ କରିବା ପରେ ତାଙ୍କ କଥା ପୃଥକ ଭାବେ ବିଚାର କରାଯିବ । ଏ ସବୁ ସତ୍ତ୍ୱେ ମଧୁସୂଦନ ନିର୍ଭୀକ ଥିଲେ ।

ସେ ଦିନ ଚାଲିଯାଇଛି । ହରିଶପୁର ମଙ୍ଗରାଜ ବଂଶର ଉତ୍ତରାଧିକାରୀମାନେ ବର୍ତ୍ତମାନ ଦୟନୀୟଭାବେ ଜୀବନ ଯାପନ କରୁଛନ୍ତି ।

*ରିଡର ଓ ମୁଖ୍ୟ ଅଧ୍ୟାପକ*
*ଓଡ଼ିଆ ବିଭାଗ, ଖ୍ରୀଷ୍ଟ କଲେଜ,*
*କଟକ*

## ଶୃଙ୍ଖଳିତ ଶ୍ରମିକ ସଂଗଠନ ବିକାଶ ଧାରାକୁ ତ୍ୱରାନ୍ୱିତ କରିବ

**ମୁଖ୍ୟମନ୍ତ୍ରୀ**

ଗଠନମୂଳକ ଓ ଶୃଙ୍ଖଳିତ ଶ୍ରମିକ ସଂଗଠନ ରାଜ୍ୟର ବିକାଶ ପାଇଁ ଏକାନ୍ତ ଜରୁରୀ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରକାଶ କରିଛନ୍ତି ।

ଗତ ଡିସେମ୍ବର ୨୬ ତାରିଖରେ ଭୁବନେଶ୍ୱରଠାରେ ନିଖିଳ ଓଡ଼ିଶା ବିଦ୍ୟୁତ ବୋର୍ଡ ଶ୍ରମିକ ମହାସଂଘର ସପ୍ତମ ରାଜ୍ୟସ୍ତରୀୟ ସମ୍ମିଳନୀ ଉଦ୍‌ଘାଟନ କରି ମୁଖ୍ୟମନ୍ତ୍ରୀ କହିଲେ ଯେ, ଗଣତାନ୍ତ୍ରିକ ଶାସନ ପଦ୍ଧତିରେ ସଂଗଠିତ ଶ୍ରମଶକ୍ତିର ସହଯୋଗମୂଳକ ଭୂମିକା ବିକାଶର ଧାରାକୁ ତ୍ୱରାନ୍ୱିତ କରିଥାଏ । ସନ୍ତ୍ରାସ ବା ହିଂସା ଦ୍ୱାରା କୌଣସି ସମସ୍ୟା ସମାଧାନ ହେବା ତ ଦୂରର କଥା, ଏହାଦ୍ୱାରା ସମାଜରେ ନୂଆ ସମସ୍ୟା ଦେଖାଦିଏ । ବିଦ୍ୟୁତ ଶ୍ରମିକ କର୍ମଚାରୀ ସଂଘର ସରକାରଙ୍କୁ ଗଠନମୂଳକ ସହଯୋଗ ପାଇଁ ମୁଖ୍ୟମନ୍ତ୍ରୀ ସେମାନଙ୍କୁ ଧନ୍ୟବାଦ ଜଣାଇଥିଲେ ।

ରାଜ୍ୟ ସରକାରଙ୍କ ବିଦ୍ୟୁତ ସଂସ୍କାର ଅଭିମୁଖ୍ୟ ଉପରେ ବୁଝାଇ ମୁଖ୍ୟମନ୍ତ୍ରୀ କହିଲେ ଯେ, ବିଦ୍ୟୁତ ବୋର୍ଡ ଅର୍ଥାଭାବ ଯୋଗୁଁ ବଡ଼ ଧରଣର କାର୍ଯ୍ୟକ୍ରମ ହାତକୁ ନେଇପାରିନଥିଲା । ନୂତନ ବିଦ୍ୟୁତକରଣ ଏବଂ ଠିକ୍ ଭାବରେ ବିଦ୍ୟୁତ ଯୋଗାଣ ହୋଇପାରୁ ନଥିଲା । ସରବରାହ ଜନିତ କ୍ଷତି ଓ ବିଜୁଳି ଚୋରି ଯୋଗୁଁ ଗ୍ରାହକ ଓ ଶିଳ୍ପ ସଂସ୍ଥାର ମାଲିକମାନଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ଦେଖା ଦେଇଥିଲା । ବିଦ୍ୟୁତ ବୋର୍ଡକୁ ଏକ ଲାଭ ଜନକ ସଂସ୍ଥାରେ ପରିଣତ କରିବା ପାଇଁ ଏ ସଂସ୍କାର ଅଣାଯିବା ଅତ୍ୟନ୍ତ ଜରୁରୀ ଥିଲା । ବିଶ୍ୱବ୍ୟାଙ୍କ ଓ ଓଡ଼ିଏଫର ୨୦୦୦ କୋଟି ଟଙ୍କାର ସାହାଯ୍ୟ ଅଣାଯାଇ ଆଜି ଭାରତରେ ବିଦ୍ୟୁତ ସଂସ୍କାର କ୍ଷେତ୍ରରେ ଏକ ଅଗ୍ରଗାମୀ ରାଜ୍ୟ ରୂପେ ବିବେଚିତ ହୋଇଛି । ସଂସ୍କାର ଯୋଗୁଁ ୬୦୦୦ ଶ୍ରମିକଙ୍କ ଚାକିରି ନିୟମିତ ହୋଇପାରିଛି ଏବଂ ସେମାନଙ୍କ ମଧ୍ୟରେ ଏକ ପ୍ରତ୍ୟୟର ଜାଗରଣ ଆସିଛି ।

ମୁଖ୍ୟମନ୍ତ୍ରୀ ପୁଣି କହିଲେ ଯେ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ବର୍ତ୍ତମାନ ଓଡ଼ିଶା ସାରା ଭାରତରେ ପ୍ରଥମ ରାଜ୍ୟରେ ବିବେଚିତ ହୋଇଛି । ଆମ ଓଡ଼ିଶାର ପ୍ରାକୃତିକ ସଂପଦ ଅନ୍ୟ କେଉଁ ରାଜ୍ୟରେ ନାହିଁ । ନିକଟରେ କଲିକତାରେ ହୋଇଥିବା ଆମେରିକୀୟ ପୁଂଜୀ ନିବେଶକାରୀଙ୍କ ଏକ ସମ୍ମିଳନୀରେ ଆମେରିକାର ବାଣିଜ୍ୟ ମନ୍ତ୍ରୀ ଉଇଲିଅମ୍ସ ଡାଲି ପୁଂଜୀ ଆକର୍ଷଣ ପାଇଁ ଓଡ଼ିଶାର ଭୂମିକାକୁ ଉଚ୍ଚ ପ୍ରଶଂସା କରିଥିଲେ । ଏ.ଏଇ.ଏସ୍. ଇବ ଉପତୀକା ପ୍ରକଳ୍ପର ତୃତୀୟ ଓ ଚତୁର୍ଥ ୟୁନିଟ୍ କଳିଙ୍ଗ ପାୱାର ଜେନେରେସନ କର୍ପୋରେସନ ଓ ଅପର ଇନ୍ଦ୍ରାବତୀ ଯୋଜନାରୁ ଯେଉଁ ବିଦ୍ୟୁତଶକ୍ତି ଉତ୍ପାଦନ ହେଉଛି ତାହା ସାରା ଭାରତବର୍ଷକୁ ଆଲୋକିତ କରିପାରିବ ।

ସେ କହିଥିଲେ ଯେ, ରାଜ୍ୟର ଅଗ୍ରଗତି ହେଲେ ରାଜ୍ୟର ଲୋକ ଓ ରାଜ୍ୟର କର୍ମଚାରୀ କେହି ଗରିବ ରହିବେ ନାହିଁ । ଓଡ଼ିଶାକୁ ଏକ ଆଗୁଆ ରାଜ୍ୟରେ ପରିଣତ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରମିକ, କର୍ମଚାରୀ ଓ ସବୁ ଶ୍ରେଣୀର ଲୋକଙ୍କ ସହଯୋଗ କାମନା କରିଥିଲେ ।

ଏହି ସମ୍ମିଳନୀରେ ମହାସଂଘର ସଭାପତି ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ସଭାପତିତ୍ୱ କରିଥିଲେ ଓ ସାଧାରଣ ସଂପାଦକ ଶ୍ରୀ ଶରତଚନ୍ଦ୍ର ମହାନ୍ତି ବିବରଣୀ ପାଠ କରିଥିଲେ । ରାଜ୍ୟ ଶ୍ରମ ଓ ନିଯୁକ୍ତି ମନ୍ତ୍ରୀ ଶ୍ରୀ ଦୁର୍ଗାଶଙ୍କର ପଟ୍ଟନାୟକ ମୁଖ୍ୟବକ୍ତା ରୂପେ ଯୋଗ ଦେଇ ଭାଷଣ ଦେଇଥିଲେ ।

# ସ୍ୱାଧୀନତା ସଂଗ୍ରାମରେ ଶ୍ରୀଜଙ୍ଗର ଭୂମିକା

*ଶ୍ରୀ ପ୍ରଦୀପ୍ତ ଦାସ*

ଦୀର୍ଘ ଦୁଇଶହ ବର୍ଷ ବ୍ରିଟିଶ ଶାସନାଧୀନ ରହିବା ପରେ ଭାରତବାସୀ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତା ହାସଲ କରିଥିଲେ । ବ୍ରିଟିଶ ରାଜତନ୍ତ୍ର କବଳରୁ ମୁକ୍ତ କରିବା ପାଇଁ ଦେଶର ବିଭିନ୍ନ ସ୍ଥାନରେ ସଶସ୍ତ୍ର ସଂଗ୍ରାମ, ଆନ୍ଦୋଳନ, ବିଦ୍ରୋହ ଆଦି ସଂଘଟିତ ହୋଇଛି । ତନ୍ମଧ୍ୟରେ ୧୮୫୭ରେ ସିପାହୀ ବିଦ୍ରୋହ ଅନ୍ୟତମ । ଏହାକୁ ଇଂରେଜମାନଙ୍କ ବିରୋଧରେ ପ୍ରଥମ ସଂଗଠିତ ସଶସ୍ତ୍ର ବିଦ୍ରୋହ ବୋଲି କୁହାଯାଏ । ଓଡ଼ିଶାର ତାତ୍ୟା ଟୋପି ଏହି ବିଦ୍ରୋହରେ ଝାନ୍ସୀରାଣୀ ଲକ୍ଷ୍ମୀବାଈଙ୍କର ପ୍ରଧାନ ସାମରିକ ଉପଦେଷ୍ଟା ଥିଲେ । ଓଡ଼ିଆମାନେ ଚିରକାଳ ସ୍ୱାଧୀନ ଚେତା । ତେଣୁ ୧୮୦୩ ମସିହା ପର୍ଯ୍ୟନ୍ତ ସେମାନେ ଓଡ଼ିଶାକୁ ଦଖଲ କରିପାରିନଥିଲେ । ପରେ ୧୮୧୭ ମସିହାରେ ଖୋର୍ଦ୍ଧା ସମେତ ବିଭିନ୍ନ ଗଡ଼ଜାତ ଅଞ୍ଚଳରେ ଇଂରେଜ ବିରୋଧରେ ମୁକ୍ତି ସଂଗ୍ରାମ ଆରମ୍ଭ ହୁଏ । ବହୁ ଚେଷ୍ଟା କରି ଇଂରେଜମାନେ ଏହି ବିଦ୍ରୋହକୁ ଦମନ କରିଥିଲେ । ଓଡ଼ିଶାର ବୀର ପାଇକମାନଙ୍କୁ ଦୃଢ଼ ହସ୍ତରେ ଦମନ କରିଥିଲେ । ସ୍ୱାଧୀନତାର ପଚାଶ ବର୍ଷ ପୂର୍ତ୍ତି ଅବସରରେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ସମ୍ବନ୍ଧରେ ଆଲୋଚନା ବେଳେ ବାଲେଶ୍ୱର ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମକୁ ପ୍ରଥମ ସ୍ଥାନ ଦିଆଯାଇପାରେ । ଏହି ଜିଲ୍ଲାରେ ସ୍ୱାଧୀନତା ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟରେ ସଂଗ୍ରାମୀମାନେ ଯେଉଁଭଳି ତ୍ୟାଗ ସ୍ୱୀକାର କରିଛନ୍ତି ଏବଂ ନିର୍ଯ୍ୟାତନା ବରଣ କରିଛନ୍ତି, ତାହାର ପଟାନ୍ତର ନାହିଁ । ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି, ଶ୍ରୀଜଙ୍ଗ, ଉରମ, ଲୁଣିଆ, ତୁଡ଼ିଗଡ଼ିଆ, ଚଷାଖଣ୍ଡ, ବାଲେଶ୍ୱର ସହର ପ୍ରଭୃତି ସ୍ଥାନର ବିଭିନ୍ନ ଆନ୍ଦୋଳନ ଉଲ୍ଲେଖନୀୟ । ବାଲେଶ୍ୱର ଜିଲ୍ଲାର ଶ୍ରୀଜଙ୍ଗ ଗ୍ରାମବାସୀ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ଶ୍ରୀଜଙ୍ଗ ଗ୍ରାମଟି ବାଲେଶ୍ୱର ଜିଲ୍ଲା ସଦର ମହକୁମାଠାରୁ ୨୦ କି.ମି ଦୂର ଦକ୍ଷିଣରେ, ବସ୍ତାପ୍ରସାଦଠାରୁ ଚାରି କି.ମି. ପଶ୍ଚିମରେ ଏବଂ ଖଇରାପଡ଼ା ରେଳ ଷ୍ଟେସନଠାରୁ ୯ କି.ମି. ପୂର୍ବରେ ଅବସ୍ଥିତ । ସଂପ୍ରତି ଏହା ରେମୁଣା ବ୍ଲକ ଅନ୍ତର୍ଗତ । ଗ୍ରାମର ଉତ୍ତର ଓ ପଶ୍ଚିମ ଦିଗରେ ଐତିହାସିକ ସଲ୍ଟରୋଡ୍ ବାଲେଶ୍ୱରଠାରୁ ବାସୁଦେବପୁର ପର୍ଯ୍ୟନ୍ତ ପରିବ୍ୟାପ୍ତ । ଉତ୍ତର-ପୂର୍ବ ଦିଗରେ ଲୁଣିକର ଭଳି ଜଳିଆଁବରା ନଦୀ ପ୍ରବାହିତ । ଏହି ଗ୍ରାମଟି ଜିଲ୍ଲାର ଏକ ଜନବହୁଳ ଗ୍ରାମ ଭାବରେ ପରିଚିତ ।

ଐତିହାସିକ ଦୃଷ୍ଟିକୋଣରୁ ଏହି ଗ୍ରାମଟି କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଦେଶରେ ଏକ ଉଲ୍ଲେଖନୀୟ ସ୍ଥାନର ଅଧିକାରୀ । ଗ୍ରାମର ଉତ୍ତର ଭାଗରେ ମଲ୍ଲିକା ସାଗର ଓ ଅଚ୍ୟୁତା ସାଗର ନାମରେ ଦୁଇଟି ବିରାଟ ପୁଷ୍କରିଣୀ ଅଛି । ବ୍ୟାସକବି ଫକୀରମୋହନ ସେନାପତି ତାଙ୍କର ପ୍ରସିଦ୍ଧ ଉପନ୍ୟାସ "ଛ ମାଣ ଆଠ ଗୁଣ୍ଠ"ରେ ଯେଉଁ ଅସୁରଦୀଘି ପୁଷ୍କରିଣୀର ବର୍ଣ୍ଣନା ଦେଇଛନ୍ତି, ତାହା ମଲ୍ଲିକା ସାଗରକୁ ଦେଖିଲେ ବୁଝିପଡ଼େ । ଏହି ପୁଷ୍କରିଣୀ ସମ୍ବନ୍ଧରେ ସାହାଡ଼ା ସୁନ୍ଦରୀ ଲୋକକଥା ଏବଂ ଅନ୍ୟାନ୍ୟ କିମ୍ବଦନ୍ତୀ ପ୍ରଚଳିତ ଅଛି ।

ଅଚ୍ୟୁତାସାଗର ପଶ୍ଚିମ ଆଡ଼ିରେ ଏକ ଶିଳାଲେଖ ଅଛି । ବିଶିଷ୍ଟ ଐତିହାସିକ ଡକ୍ଟର ମନ୍ମଥ ନାଥ ଦାସ ଏହାର ପାଠୋଦ୍ଧାର କରିଛନ୍ତି । ଏହି ପୋଖରୀ ଦ୍ୱୟ ମୋଗଲ ସମ୍ରାଟ ଆକବରଙ୍କ ସମୟରେ ଅର୍ଥାତ ୧୫୯୮ ଖ୍ରୀଷ୍ଟାବ୍ଦରେ ଖନନ କରାଯାଇଥିଲା । ବଣତାରୀ ବିଶ୍ୱାଳ ନାମକ ଜଣେ ବ୍ୟକ୍ତି ଏହାର ଦାୟିତ୍ୱ ନେଇଥିଲେ । ସମ୍ରାଟ ଆକବର ତାଙ୍କ ସେନାପତି ମାନସିଂହଙ୍କୁ ଓଡ଼ିଶା ରାଜାଙ୍କ ଦରବାରକୁ ପଠାଇଥିଲେ । ସେ ଏହି ଅଞ୍ଚଳ ଦେଇ ଗସ୍ତ କରିଥିଲେ । ଅନ୍ୟ ଏକ ଶିଳାଲେଖ ଭୁବନେଶ୍ୱର ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ରହିଛି । ଗ୍ରାମର କେନ୍ଦ୍ରସ୍ଥଳ କାଛି ନାମକ ଏକ ଉଚ୍ଚମାଟି ଢିପକୁ ଖନନ କଲେ ଅଧିକ ତଥ୍ୟ ମିଳିପାରିବ ବୋଲି ଅନୁମାନ କରାଯାଏ ।

ସ୍ୱାଧୀନତା ସଂଗ୍ରାମ ସମୟରେ ଶ୍ରୀଜଙ୍ଗ ଗ୍ରାମ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା ବୋଲି ବିଭିନ୍ନ ଐତିହାସିକ ଦଲିଲ ଓ ତଥ୍ୟରୁ ପ୍ରମାଣିତ । ସଂଗ୍ରାମରେ ଅଂଶ ଗ୍ରହଣ କରିଥିବା ପ୍ରାୟ ସମସ୍ତ ସଂଗ୍ରାମୀ ଏବେ ପରଲୋକରେ । ସେମାନେ ସ୍ୱାଧୀନତା ସଂଗ୍ରାମ କାଳରେ ସେମାନଙ୍କର ତ୍ୟାଗ ଓ ଯନ୍ତ୍ରଣାର ଅନୁଭୂତି ଏହି ଲେଖକ ନିକଟରେ ବର୍ଣ୍ଣନା କରିଯାଇଛନ୍ତି ।

ମହାତ୍ମା ଗାନ୍ଧୀଙ୍କ ଆହ୍ୱାନକ୍ରମେ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଏହି ଆନ୍ଦୋଳନର ଉଦ୍ଦେଶ୍ୟ

ଥିଲା ପ୍ରତ୍ୟେକ କ୍ଷେତ୍ରରେ ପ୍ରତ୍ୟେକ କାର୍ଯ୍ୟରେ ଇଂରେଜ ସରକାରଙ୍କ କାର୍ଯ୍ୟକୁ ସହଯୋଗ ନ କରିବା । ଶାସନ କାର୍ଯ୍ୟକୁ ଅଚଳ କରିଦେବା ଥିଲା ଏହାର ପ୍ରଥମ ପଦକ୍ଷେପ । ଏହି କାର୍ଯ୍ୟକ୍ରମକୁ ସଫଳ ଭାବେ ରୂପାୟନ କରିଥିଲେ ବାଲେଶ୍ୱର ଜିଲ୍ଲାର ଶ୍ରୀଜଙ୍ଗ ଗ୍ରାମବାସୀମାନେ ।

ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ଡ଼ଃ ହରେକୃଷ୍ଣ ମହତାବ ବାଲେଶ୍ୱର ଜିଲ୍ଲାରେ କଂଗ୍ରେସର ନେତୃତ୍ୱ ନେଲେ । ତାଙ୍କୁ ଏହି କାର୍ଯ୍ୟରେ ସହଯୋଗ କରିଥିଲେ ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ, ବିଶ୍ୱନାଥ ହୋତା ପ୍ରମୁଖ । ଡ଼ଃ ମହତାବ, ସର୍ଦ୍ଦାର ସୁରେନ୍ଦ୍ର ପ୍ରମୁଖ ନେତାଗଣ ଜିଲ୍ଲାର ବିଭିନ୍ନ ଅଞ୍ଚଳ ଗସ୍ତକରି କଂଗ୍ରେସର କାର୍ଯ୍ୟକ୍ରମ ସମ୍ବନ୍ଧରେ ସୂଚନା ଦେଉଥାନ୍ତି । ମହାତ୍ମାଗାନ୍ଧୀଙ୍କ ପ୍ରଥମ ଦଫା ଅସହଯୋଗ ଆନ୍ଦୋଳନରେ ଶ୍ରୀଜଙ୍ଗ ଗ୍ରାମର ଅଧିବାସୀମାନେ ପ୍ରତ୍ୟକ୍ଷ ଭାବେ ସାମିଲ ହୋଇଥିଲେ ବୋଲି ଡ଼ଃ ମହତାବ ତାଙ୍କର ''ଓଡ଼ିଶା ଇତିହାସ'' ରେ ଉଲ୍ଲେଖ କରିଛନ୍ତି । ସମଗ୍ର ଭାରତବର୍ଷରେ ପ୍ରଥମ କରି ଶ୍ରୀଜଙ୍ଗ ଗ୍ରାମବାସୀମାନେ ଇଂରେଜ ସରକାରଙ୍କ ସହ ପ୍ରତ୍ୟକ୍ଷ ଭାବେ ଅସହଯୋଗ କରି ଗ୍ରାମର ସମସ୍ତ ପ୍ରଶାସନିକ କାର୍ଯ୍ୟ ପରିଚାଳନା ନିମନ୍ତେ ପଞ୍ଚାୟତ ପ୍ରତିଷ୍ଠା କରିଥିଲେ । ପଞ୍ଚାୟତରେ ଜଣେ ମୁଖ୍ୟଙ୍କ ବ୍ୟତୀତ ବିଚାର କାର୍ଯ୍ୟ ପାଇଁ ଜଣେ ବିଚାରପତି ଏବଂ ଜମିବାଡ଼ି କ୍ରୟ ବିକ୍ରୟ ପାଇଁ ଏକ ରେଜିଷ୍ଟ୍ରି ଅଫିସ ୧୯୨୭ ମସିହାରେ ସଂପୂର୍ଣ୍ଣ ଗଣତାନ୍ତ୍ରିକ ପଦ୍ଧତିରେ କାର୍ଯ୍ୟ କରୁଥିଲା । ଡ଼ଃ ମହତାବଙ୍କ ନେତୃତ୍ୱରେ ଅରଟରୁ ସୂତା କାଟି ଲୁଗା ବୁଣିବା, ରାସ୍ତାଘାଟ ନାଳନର୍ଦ୍ଦମା ପୁଷ୍କରିଣୀ ସଫା ରଖିବା ଆଦି କଂଗ୍ରେସର ରଚନାତ୍ମକ କାର୍ଯ୍ୟ ପରିଚାଳନା ପାଇଁ ଶ୍ରୀଜଙ୍ଗ ଓ ସଂଲଗ୍ନ ଶାଳଗାଁ ଗ୍ରାମରେ ଦୁଇଟି କଂଗ୍ରେସ ଅଫିସ କାର୍ଯ୍ୟ କରୁଥିଲା ।

ସ୍ୱାଧୀନତା ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ ଲବଣ ସତ୍ୟାଗ୍ରହ । ଓଡ଼ିଶା କଂଗ୍ରେସ କମିଟି ପକ୍ଷରୁ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଶ୍ରୀଜଙ୍ଗ ଗ୍ରାମ ପୂର୍ବ ପଟରେ ଥିବା ଇଂଚୁଡ଼ି ଗ୍ରାମରେ ଲୁଣମରା କାର୍ଯ୍ୟ ଅର୍ଥାତ୍ ଲବଣ ସତ୍ୟାଗ୍ରହ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା । ଗୋପବନ୍ଧୁ ଚୌଧୁରୀ ଇଂଚୁଡ଼ି ଆସିବା ବାଟରେ କଟକଠାରେ ଏକ ସାଧାରଣ ସଭାରେ ଇଂରେଜ ବିରୋଧୀ ଭାଷଣ ଦେଇ ଗିରଫ ହେଲେ । ଫଳରେ ଏହି ଦାୟିତ୍ୱ ଆଚାର୍ଯ୍ୟ ହରିହର ଦାଶଙ୍କ ଉପରେ ନ୍ୟସ୍ତ ହେଲା । ସେ ରାଜ୍ୟର ବିଭିନ୍ନ ଅଞ୍ଚଳର କଂଗ୍ରେସ କର୍ମୀମାନଙ୍କ ସହିତ ଇଂଚୁଡ଼ି ଆସି ୧୯୩୦ ମସିହା ଅପ୍ରେଲ ମାସ ୧୪ ତାରିଖ ଦିନ ଲୁଣ ମାରିଥିଲେ । ଏହି ଲୁଣମରା କାର୍ଯ୍ୟରେ ଶ୍ରୀଜଙ୍ଗ ଗ୍ରାମର ସ୍ୱାଧୀନତା ସଂଗ୍ରାମୀମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏହି ଗ୍ରାମର ସ୍ୱର୍ଗତ ଭିକାରୀ ମଲ୍ଲିକ ଇଂଚୁଡ଼ିଠାରେ ପ୍ରଥମ ଦିନରେ ମରାଯାଇଥିବା ଲୁଣ ପୁଡ଼ିଆକୁ ନିଜର ପିନ୍ଧିଲା ଗାମୁଛା କାନିରେ ବାନ୍ଧି ଦୀର୍ଘ ୨୦ କି.ମି. ରାସ୍ତା ପୋଲିସର ଲାଠିମାଡ଼ ମଧ୍ୟରେ ଚାଲିଚାଲି ବାଲେଶ୍ୱର ପରମିଟ୍ ପଡ଼ିଆଠାରେ ବିକ୍ରୟ କରାଇଥିଲେ । ସେତେବେଳେ ଏହାକୁ ''ସ୍ୱଦେଶୀ ଲୁଣ'' କୁହାଯାଉଥିଲା । ପରେ ପରେ ଗୋପବନ୍ଧୁ ଚୌଧୁରୀଙ୍କ ଧର୍ମପତ୍ନୀ ରମାଦେବୀ ଶ୍ରୀଜଙ୍ଗ ଆସି ଏହି ଗ୍ରାମର ଦକ୍ଷିଣ ପଟେ ପ୍ରବାହିତ ଲୁଣି ନଈ କଣ୍ଟିଆଚରା ଅବବାହିକାରେ କେବଳ ଶ୍ରୀଜଙ୍ଗର ନାରୀମାନଙ୍କୁ ନେଇ ସମଗ୍ର ଦେଶରେ ପ୍ରଥମ କରି ନାରୀମାନଙ୍କ ଦ୍ୱାରା ଲୁଣ ମାରି ଥିଲେ । ସେତେବେଳେ ପୋଲିସ ଏହାକୁ ପ୍ରତିରୋଧ କରି ନଥିଲା ବୋଲି ରମାଦେବୀ ତାଙ୍କର ଆତ୍ମଜୀବନୀ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ବର୍ଷା ଯୋଗୁଁ ଲୁଣମରା କାର୍ଯ୍ୟ ବନ୍ଦ ହେଲା । ସେତେବେଳେ ଇଂରେଜ ସରକାର ଜମିଦାର ଓ ଦଫାଦାରଙ୍କ ମାର୍ଫତରେ ଗ୍ରାମବାସୀମାନଙ୍କଠାରୁ ଚୌକିଦାରୀ ଟିକସ ଆଦାୟ କରୁଥିଲେ । ଶ୍ରୀଜଙ୍ଗ ଗ୍ରାମରେ ପୂର୍ବରୁ ପ୍ରତିଷ୍ଠିତ ପଞ୍ଚାୟତ ନିଷ୍ପତ୍ତି ଯୋଗୁଁ ଗ୍ରାମବାସୀମାନେ ଏହି ଟିକସ ନ ଦେବା ପାଇଁ ସିଦ୍ଧାନ୍ତ ନେଲେ । ଶ୍ରୀଜଙ୍ଗର ତତ୍କାଳୀନ ବିଶିଷ୍ଟ ବ୍ୟକ୍ତି ଗୌରମୋହନ ଦାସ ଓ ବିଦ୍ୟାଧର ରଥଙ୍କ ନେତୃତ୍ୱରେ ଗ୍ରାମବାସୀମାନେ ଏହି ସିଦ୍ଧାନ୍ତ ଗ୍ରହଣ କରିଥିଲେ । ତାଳପଦା ନିବାସୀ ଦଫାଦାରଙ୍କ ପକ୍ଷରୁ ଏହି ବିଷୟ ଇଂରେଜ ସରକାରଙ୍କୁ ଜଣାଇ ଦିଆଗଲା । ତା'ପରେ ଦଫାଦାର ପୋଲିସ ସହାୟତାରେ ଗ୍ରାମବାସୀମାନଙ୍କ ଉପରେ ଜୁଲୁମ ଚଳାଇଲେ । ପ୍ରାଥମିକ ଅବସ୍ଥାରେ ଗ୍ରାମବାସୀମାନେ ଅହିଂସଭାବେ ଏହି କର ବା ଟିକସ ଦେବେ ନାହିଁ ବୋଲି ପ୍ରକାଶ କରିଥିଲେ । ପୋଲିସ ଶ୍ରୀ ବାସୁଦେବ ରଥଙ୍କୁ ଧରି ଆଣି ଅଚ୍ୟୁତାସାଗର ପୋଖରୀ କୂଳକୁ ନେଇଗଲେ । ବାକବିତଣ୍ଡା ମଧ୍ୟରେ ପୋଲିସ ଶ୍ରୀ ରଥଙ୍କୁ ଲାଠିରେ ଆଘାତ କରିବାରୁ ଶଙ୍ଖଧ୍ୱନି ହେଲା । ଗ୍ରାମବାସୀମାନେ ହାତରେ ଲାଠି ଧରି ପୋଖରୀ କୂଳରେ ସମବେତ ହୋଇ ପୋଲିସଙ୍କୁ ବାଡ଼େଇଲେ । ଏହି ଲଢ଼େଇରେ ପୋଲିସମାନେ ଆହତ ହେଲେ । ସବଇନସପେକ୍ଟରଙ୍କୁ କଂଗ୍ରେସ କର୍ମୀମାନେ ଶାଳଗାଁ କଂଗ୍ରେସ ଆଶ୍ରମକୁ ନେଇ ଚିକିତ୍ସା କରି ନଥିଲେ ସେ ମୃତ୍ୟୁବରଣ କରିଥାଆନ୍ତେ । ଅନ୍ୟ ସିପାହୀମାନେ ମାଡ଼ଖାଇ ଅଚେତ ହେଲେ । ଗ୍ରାମର ଚୌକିଦାର ଏହି ଖବର ବାଲେଶ୍ୱର ଥାନାରେ ଦେବାରୁ ତହିଁ ପରଦିନ ଶତାଧିକ ପୋଲିସ ଫୌଜ ଆସି ଗାଁରେ ଛାଉଣି କରି ରହିଲେ । ତା ପରେ ପୋଲିସ ପକ୍ଷରୁ ଅକଥନୀୟ ଦମନଲୀଳା ଆରମ୍ଭ ହେଲା । ଭୟରେ ଗ୍ରାମବାସୀମାନେ ଘର ଦ୍ୱାର ଛାଡ଼ି ଛୁଟିଲେ । ସେମାନଙ୍କର ଘରଦ୍ୱାର ଧନରତ୍ନ ଲୁଟି ନିଆଗଲା । ଗୌର ମୋହନଦାସ ଓ ବିଦ୍ୟାଧର ରଥଙ୍କ ସଂପତ୍ତି ବାଜ୍ୟାପ୍ତ କରି ଦିଆଗଲା । ବହୁ ବ୍ୟକ୍ତି ଗିରଫ ହୋଇ ହଜାରୀବାଗ ଓ ବାଲେଶ୍ୱର ଜେଲରେ ରହିଲେ । ପୋଲିସ ଗାଁରେ ଥିବା ଯୋଗୁଁ ସେମାନଙ୍କ ଖର୍ଚ୍ଚ ଅର୍ଥାତ୍ ପିଉନିଟିଭ ଟିକସ ଗ୍ରାମବାସୀଙ୍କ ଉପରେ ଲାଗୁ ହେଲା । ଗୋଟିଏ ବର୍ଷ ଏହିପରି ଦମନଲୀଳା ଚାଲିଲା । ଶ୍ରୀଜଙ୍ଗବାସୀଙ୍କ ଦୁଃଖ ସାରା ଭାରତରେ ଆଲୋଚ୍ୟ ବିଷୟ ହେଲା । ଉରମର ବିଶିଷ୍ଟ ଜାତୀୟବାଦୀ କବି ବାଞ୍ଛାନିଧି ମହାନ୍ତି 'ଦୁଃଖିନୀ ଶ୍ରୀଜଙ୍ଗ କାହାଣୀ ଶୁଣି 'ହୃଦ ହୁଏ ହାଣି' ଶୀର୍ଷକରେ ଗୀତି କବିତା ଲେଖିଲେ । ଜାତିର ଜନକ ମହାତ୍ମା ଗାନ୍ଧୀ ତାଙ୍କ ସଂପାଦିତ ୟଙ୍ଗ ଇଣ୍ଡିଆ ରେ ଏହି

ଅତ୍ୟାଚାର ବିରୋଧରେ ପ୍ରତିବାଦ ଜଣାଇଲେ । ତତ୍କାଳୀନ ଓଡ଼ିଶାର ବହୁ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଡଃ ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ମାଳତୀ ଚୌଧୁରୀ, ସୁରେନ୍ଦ୍ର ପଟ୍ଟନାୟକ, ଭାଗବୃଷ୍ଣ ବୋଷ, ସର୍ଦ୍ଦାର ସୁରେନ୍ଦ୍ର ପ୍ରମୁଖ ଏହି ଗ୍ରାମକୁ ଆସିଥିଲେ । ଶ୍ରୀଜଙ୍ଗ ଘଟଣା ତତ୍କାଳୀନ ସମୟରେ କଂଗ୍ରେସ କର୍ମୀମାନଙ୍କୁ ଅଧିକ ସଂଗଠିତ କରି ଇଂରେଜ ସରକାରଙ୍କ ଅନ୍ୟାୟ ଅତ୍ୟାଚାର ବିରୋଧରେ ପ୍ରତିବାଦ କରିବାରେ ସହାୟକ ହୋଇଥିଲା ।

୧୯୪୨ ଭାରତ ଛାଡ଼ ଆନ୍ଦୋଳନ ବେଳେ ଶ୍ରୀଜଙ୍ଗ ଗ୍ରାମର ଶ୍ରୀ ଗୌରମୋହନ ଦାସ, ବିଦ୍ୟାଧର ରଥ, ଭୋଳାନାଥ ଦାଶ, ମହେନ୍ଦ୍ର ପ୍ରସାଦ ଦାସ, ଭିକାରୀ ମଲ୍ଲିକ, କୃଷ୍ଣଚନ୍ଦ୍ର ଦାସ, ବୁଦ୍ଧି ଦିବ୍ୟା, ଶ୍ୟାମ ସୁନ୍ଦର ଅଗସ୍ତି, ନୀଳମଣି ଦାସ ମହାପାତ୍ର ପ୍ରମୁଖ ସଂଗ୍ରାମୀମାନେ କାରାବରଣ କରିଥିବା ବେଳେ ଅନ୍ୟ ଗ୍ରାମବାସୀମାନେ ପୋଲିସ ନିର୍ଯ୍ୟାତନାର ଶିକାର ହୋଇଥିଲେ ।

ସ୍ୱାଧୀନତା ପ୍ରାପ୍ତି ଲାଗି ଶ୍ରୀଜଙ୍ଗ ଗ୍ରାମବାସୀମାନଙ୍କର ତ୍ୟାଗ ଉଲ୍ଲେଖଯୋଗ୍ୟ । ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ସେହି ମହାନ ଆତ୍ମାମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

*ଯାଯାବର ପ୍ରକାଶନୀ*
*ଶ୍ରୀଜଙ୍ଗ, ବାଲେଶ୍ୱର-୭୫୬୦୪୪*

---

## ଜାତୀୟ ସାମାଜିକ ସହାୟତା କାର୍ଯ୍ୟକ୍ରମ ଜରିଆରେ ତିନି ଲକ୍ଷ ଚାଳିଶ ହଜାର ହିତାଧିକାରୀ ଉପକୃତ

ଗତ ସେପ୍ଟେମ୍ବର ମାସ ସୁଦ୍ଧା (୧୯୯୭-୯୮ ଆର୍ଥିକ ବର୍ଷ) ଜାତୀୟ ସାମାଜିକ ସହାୟତା କାର୍ଯ୍ୟକ୍ରମ ଜରିଆରେ ରାଜ୍ୟରେ ତିନି ଲକ୍ଷ ଚାଳିଶ ହଜାର ହିତାଧିକାରୀ ଉପକୃତ ହୋଇଛନ୍ତି । ଚଳିତ ଆର୍ଥିକ ବର୍ଷ (୧୯୯୭-୯୮) ରେ ଧାର୍ଯ୍ୟ ଲକ୍ଷ୍ୟ ଚାରି ଲକ୍ଷ ପଚିଶ ହଜାର ତିନି ଶହ ପଚାଶ ଥିବାବେଳେ ଗତ ସେପ୍ଟେମ୍ବର ମାସ ସୁଦ୍ଧା ତିନି ଲକ୍ଷ ଚାଳିଶ ହଜାରରେ ପହଞ୍ଚିଛି ଏବଂ ଆସନ୍ତା ମାର୍ଚ୍ଚ ମାସ ସୁଦ୍ଧା ଏହି ଧାର୍ଯ୍ୟ ପୂରଣ ହେବାର ଯଥେଷ୍ଟ ଆଶା ରହିଛି ବୋଲି ବିଭାଗ ସୂତ୍ରରୁ ପ୍ରକାଶ ।

କେନ୍ଦ୍ର ସରକାରଙ୍କ ଅନୁଦାନ ଦ୍ୱାରା ୧୯୯୫ ମସିହାରୁ କାର୍ଯ୍ୟକାରୀ ହେଉଥିବା ଜାତୀୟ ସାମାଜିକ ସହାୟତା କାର୍ଯ୍ୟକ୍ରମ ଅନ୍ତର୍ଗତ ଜାତୀୟ ବାର୍ଦ୍ଧକ୍ୟ ଭତ୍ତା ଯୋଜନାରେ ଧାର୍ଯ୍ୟଲକ୍ଷ୍ୟ ଦୁଇଲକ୍ଷ ତେୟାଅଶୀ ହଜାର ଚାରିଶହ ଥିବାବେଳେ ଗତ ସେପ୍ଟେମ୍ବର ସୁଦ୍ଧା ଏହା ଦୁଇଲକ୍ଷ ଏକାଅଶୀ ହଜାର ହୋଇପାରିଛି ।

ସେହିପରି ଜାତୀୟ ପରିବାର କଲ୍ୟାଣ ଯୋଜନାରେ ଧାର୍ଯ୍ୟଲକ୍ଷ୍ୟ ପନ୍ଦର ହଜାର ଦୁଇଶହ ପଚାଶ ଓ ଜାତୀୟ ମାତୃମଙ୍ଗଳ ଯୋଜନା କାର୍ଯ୍ୟକ୍ରମରେ ଏକଲକ୍ଷ ଛବିଶ ହଜାର ସାତଶହ ଥିବା ବେଳେ ଗତ ସେପ୍ଟେମ୍ବର ମାସ ସୁଦ୍ଧା ଏହା ଯଥାକ୍ରମେ ସାତ ହଜାର ପାଞ୍ଚ ଶହ ପନ୍ଦର ଓ ପଚାଶ ହଜାର ଆଠ ଶହ ତେଷଠିରେ ପହଞ୍ଚିଛି ।

ସୂଚନା ଯୋଗ୍ୟ, ଜାତୀୟ ପରିବାର କଲ୍ୟାଣ ଯୋଜନାରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରର କୌଣସି ରୋଜଗାରକ୍ଷମ ବ୍ୟକ୍ତିଙ୍କ ଆକସ୍ମିକ ମୃତ୍ୟୁ କ୍ଷେତ୍ରରେ ୧୦ ହଜାର ଟଙ୍କା ଓ ସାଧାରଣ ମୃତ୍ୟୁରେ ୨ ହଜାର ୫୦୦ ଟଙ୍କା ଦିଆଯାଉଥାଏ । ସେହିପରି ଜାତୀୟ ମାତୃମଙ୍ଗଳ ଯୋଜନାରେ ମାତୃତ୍ୱ ପ୍ରାପ୍ତି ପୂର୍ବରୁ ପ୍ରଥମ ଦୁଇଟି ସନ୍ତାନ କ୍ଷେତ୍ରରେ ମହିଳାଙ୍କ ନିମନ୍ତେ ୩୦୦ ଟଙ୍କା ଅନୁଦାନ ଦିଆଯାଉଥାଏ ।

୬୫ ବର୍ଷରୁ ଉର୍ଦ୍ଧ୍ୱ ବୁଢ଼ାବୁଢ଼ୀ, କୁଷ୍ଠ ରୋଗୀ, ବିଧବା, ନାମ ମାତ୍ର ଚାଷୀ ଏବଂ ଭୂମିହୀନ ଶ୍ରମିକମାନଙ୍କ ମଙ୍ଗଳ ପାଇଁ ରାଜ୍ୟ ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବାର୍ଦ୍ଧକ୍ୟଭତ୍ତା ଯୋଜନାରେ ଧାର୍ଯ୍ୟଲକ୍ଷ୍ୟ ପାଞ୍ଚ ଲକ୍ଷ ତିରିଶ ହଜାର ଥିବା ବେଳେ ଗତ ସେପ୍ଟେମ୍ବର ମାସ ସୁଦ୍ଧା ପାଞ୍ଚଲକ୍ଷ ଅଠଷଠି ହଜାର ହିତାଧିକାରୀ ଉପକୃତ ହୋଇପାରିଛନ୍ତି ।

# ଜାତୀୟକବି ବାଞ୍ଛାନିଧି ଓ ପ୍ରଜା ଆନ୍ଦୋଳନ

ଶ୍ରୀ ଘନଶ୍ୟାମ ଧଳ

ପ୍ରାକ ସ୍ୱାଧୀନତା ବର୍ଷମାନଙ୍କରେ ଯେଉଁ କେତେଜଣ କବି, ଲେଖକ ଦେଶର ସ୍ୱାଧୀନତା ପାଇଁ କେବଳ କଲମ ଚାଳନା ନକରି ନିଜର ଜୀବନକୁ ସ୍ୱାଧୀନତା ସଂଗ୍ରାମରେ ଉତ୍ସର୍ଗ କରି ଦେଇଥିଲେ, ସେମାନଙ୍କ ମଧ୍ୟରୁ ଜାତୀୟ କବି ବାଞ୍ଛାନିଧି ଅନ୍ୟତମ । ପବିତ୍ର ଭକ୍ତତୀର୍ଥ ଇରମ୍ ଗ୍ରାମରେ ୧୮୯୭ ଅପ୍ରେଲ ମାସ ତା.୨୦ରିଖରେ ଚିନ୍ତାମଣି ମହାନ୍ତି ଓ ପବିତ୍ରା ଦେଈଙ୍କ ପ୍ରଥମ ସନ୍ତାନ ଭାବେ ସେ ଜନ୍ମଲାଭ କରିଥିଲେ । ଭଦ୍ରକ ହାଇସ୍କୁଲ ଓ କଟକର ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିବା ସମୟରେ କାନ୍ତକବି ଲକ୍ଷ୍ମୀକାନ୍ତ, ବିଜ୍ଞ ପ୍ରଶାସକ ଔପନ୍ୟାସିକ ବୈଷ୍ଣବ ଚରଣ ଦାସ ଓ କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁ ଥିଲେ ତାଙ୍କର ଘନିଷ୍ଠ ବନ୍ଧୁ । ପିତାଙ୍କୁ ଲୁଚାଇ ସେ ସଙ୍ଗୀତ ସାଧନା କଲେ ବୈଷ୍ଣବ ଚରଣ ଦାସଙ୍କ ବକସାହି ବାସଭବନରେ । ୧୯୧୧ରେ ମାଟ୍ରିକୁଲେସନ ପାସ୍ ପରେ ରେଭେନ୍ସା କଲେଜରେ ନାମ ଲେଖାଇଲେ । କଲେଜ ଜୀବନରେ କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁ , କାନ୍ତକବି ଲକ୍ଷ୍ମୀକାନ୍ତ ଓ ବାଞ୍ଛାନିଧିଙ୍କ ସଂପର୍କ ଆହୁରି ନିବିଡତର ହେଲା । କାଠଯୋଡିର ବାଲୁକା ଶଯ୍ୟାରେ ତିନି ବନ୍ଧୁ ସଙ୍ଗୀତ ଚର୍ଚ୍ଚା କରୁଥିଲେ । ମଞ୍ଚ ଉପଯୋଗୀ ପ୍ରଥମ ନାଟକ ରାମଶଙ୍କର ରାୟଙ୍କ 'କାଞ୍ଚି କାବେରୀ' ପ୍ରଥମେ ଅଭିନୟ କରିଥିଲେ ରେଭେନ୍ସା କଲେଜ ହଲ୍‌ରେ ଲକ୍ଷ୍ମୀକାନ୍ତ, ବାଞ୍ଛାନିଧି ଓ କୃଷ୍ଣପ୍ରସାଦ । ବାଞ୍ଛାନିଧି କିଛିମାସ ନୀଳଗିରିରେ ସ୍କୁଲ ଇନିସ୍‌ପେକ୍ଟର ହୋଇଥିଲେ । ବି.ଏ ପରୀକ୍ଷାରେ ପାସ୍ ପରେ ଭଦ୍ରକ ହାଇସ୍କୁଲର ନର୍ମାଲ ଟ୍ରେନିଂ ସ୍କୁଲରେ ଶିକ୍ଷକ ହୋଇଥିଲେ । ବାଞ୍ଛାନିଧିଙ୍କର ଉତ୍କଳମଣି ଗୋପବନ୍ଧୁଙ୍କ ସହ ଘନିଷ୍ଠ ସମ୍ପର୍କ ଥିଲା ।

ବାଞ୍ଛାନିଧିଙ୍କ କଲେଜ ଜୀବନ ମଧ୍ୟରେ ଗୋପବନ୍ଧୁ ଦେଶପ୍ରେମୀ ଯୁବକ କର୍ମୀ ହିସାବରେ ବାଞ୍ଛାନିଧିଙ୍କୁ ବାଛିଥିଲେ । ୧୯୧୬ ମସିହାରେ ବାଞ୍ଛାନିଧିଙ୍କ ବିବାହ ସମ୍ପନ୍ନ ହେଲା । ପିତା ଚିନ୍ତାମଣିଙ୍କର ଇଚ୍ଛା ବାଞ୍ଛାନିଧିଙ୍କୁ ବିବାହ ବନ୍ଧନରେ ଆବଦ୍ଧ କରି ସାଂସାରିକ ବନ୍ଧନରେ ବାନ୍ଧିଦେବେ । କିନ୍ତୁ ଭଗବାନଙ୍କର ଇଚ୍ଛା ଅନ୍ୟ ପ୍ରକାର । ଯାହାର ଜନ୍ମ ଦେଶ ମାତୃକାର ବନ୍ଧନକୁ ଛିନ୍ନ କରିବା ପାଇଁ ସଂଗ୍ରାମ କରିବା, ସେ ସଂଗ୍ରାମୀ ସିଂହକୁ କଣ ପଞ୍ଜୁରୀରେ ଆବଦ୍ଧ କରାଯାଇ ପାରିବ ? ବାଞ୍ଛାନିଧି ନିଜ ଗ୍ରାମ ଇରମସ୍ଥ ରାଧାମୋହନ ଥିଏଟର ପାର୍ଟିକୁ ପୁନର୍ଗଠନ କଲେ ଓ ଜନତା ମଧ୍ୟରେ ସ୍ୱାଧୀନତା ବହ୍ନି ପ୍ରଜ୍ୱଳିତ କରାଇବାର ପବିତ୍ର କାର୍ଯ୍ୟ ହାତକୁ ନେଲେ । ଏପରିକି ବିବାହର ଚତୁର୍ଥୀ ଦିନରେ ଅଭିନୟରେ ଯୋଗ ଦେଇଥିଲେ । ପିତା ଚିନ୍ତାମଣି ଭଦ୍ରକ କଚେରୀରେ ସ୍ୱନାମଧନ୍ୟ ମୋହରୀର । ତାଙ୍କର ଇଚ୍ଛା ବାଞ୍ଛାନିଧି ଜଣେ ଭଲ ଓକିଲ ହେବେ ଓ ପରିବାର ପୋଷଣ କରିବେ । ବାଞ୍ଛାନିଧିଙ୍କର ବନ୍ଧୁ ଗୌରାଙ୍ଗ ଚରଣ ଦାସ ଯେତେବେଳେ ପିତାଙ୍କର ଏହି ଇଚ୍ଛା ବାଞ୍ଛାନିଧିଙ୍କ ନିକଟରେ ପ୍ରକାଶ କଲେ, ବାଞ୍ଛାନିଧି ଉତ୍ତରରେ କହିଥିଲେ, 'ଗୌରାଙ୍ଗ', ମୁଁ ତୁମ୍ଭମାନଙ୍କର ମନର ଭାବ ବୁଝୁଛି ମାତ୍ର ମୋ ଜିଲ୍ଲାର, ମୋ ଦେଶର କୋଟି କୋଟି ବାପ ମା ଗଣ୍ଡିଏ ସୁଖରେ ଖାଇବାକୁ, ଖଣ୍ଡେ ଭଲଲୁଗା ପିନ୍ଧିବାକୁ ପାଉ ନଥିବାବେଳେ ମୁଁ କିପରି ମୋ ବ୍ୟକ୍ତିଗତ ସ୍ୱାର୍ଥପାଇଁ କେବଳ ବାପା ମାଙ୍କୁ ସୁଖୀ କରିବାକୁ ରୋଜଗାର କରିବି ? ଏପରି ସ୍ୱାର୍ଥପର ଲୋକ ଦୁନିଆରେ ବହୁତ ଅଛନ୍ତି । ଆଜି ଯଦି ଶିକ୍ଷିତ ଲୋକମାନେ ଟିକିଏ ଏକଥା ଭାବନ୍ତେ, ତେବେ ମହାତ୍ମାଙ୍କ ବଚନ ଏକା ବର୍ଷକେ ସାର୍ଥକହୋଇ ରାମ ରାଜ୍ୟ ପ୍ରତିଷ୍ଠିତ ହୁଅନ୍ତା ! ମାତ୍ର ତାହା ହେଉଛି କାହିଁ ? ସ୍ୱାର୍ଥ ଛାଡି ନିଃସ୍ୱାର୍ଥ ସେବା କେତେଜଣ କରି ପାରୁଛନ୍ତି । ଏହା ହେଲା ବାଞ୍ଛାନିଧିଙ୍କର ଜୀବନ ଦର୍ଶନ । ସେ ଜନ୍ମଲାଭ କରିଥିଲେ ଦେଶପାଇଁ, ଜାତି ପାଇଁ । ତଥାପି ବାଞ୍ଛାନିଧି ପିତୃବାକ୍ୟ ପାଳନ କରି ଜୀବନର ଶେଷଭାଗରେ ୧୯୩୭ ମସିହାରେ ଆଇନ୍ ପଢିଲେ ଓ କୃତକାର୍ଯ୍ୟ ହେଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ପଲ୍ଲୀର ଦରିଦ୍ରଲୋକଙ୍କୁ ଆଇନ୍‌ର ସୁରକ୍ଷା ଦେଇ ମହାଜନ ଓ ଜମିଦାରଙ୍କ କବଳରୁ ରକ୍ଷା କରିବା ଓ ଆପୋଷରେ ବିବାଦର ସମାଧାନ କରି ଅଯଥା ଖର୍ଚ୍ଚାନ୍ତରୁ ରକ୍ଷା କରିବା । ହାଇକୋର୍ଟରେ ଆଇନ୍ ବ୍ୟବସାୟ ପାଇଁ ତାଙ୍କୁ ଲାଇସେନ୍ସ ମିଳିଥିଲା ।

ବାଞ୍ଛାନିଧି ୧୯୧୬ରୁ ୧୯୩୮ ପର୍ଯ୍ୟନ୍ତ ବିଭିନ୍ନ ସମୟରେ ରାଧାମୋହନ ଥିଏଟର୍ସ, ନିଉ ଓଡିଶା ଥିଏଟର୍ସ, କଲିକତାରେ ଉତ୍କଳ ନାଟ୍ୟ ନିକେତନ ଗଠନରେ ମୁଖ୍ୟଭାଗ ନେଇ ଓଡିଶାର ପ୍ରତି ପୁରପଲ୍ଲୀ ଓ ଓଡିଶା ବାହାରେ କଲିକତା, ବିହାର, ସିଂହଭୂମି, ଚାଇଁବସା ଆଦି ସ୍ଥାନରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥିଲେ । ଜାତୀୟ ସଂଗୀତ ଗାନ କରି ସ୍ୱଦେଶୀ ଆନ୍ଦୋଳନ ଜନ ଜାଗରଣ ସୃଷ୍ଟି କରୁଥିଲେ । ନୀଳଗିରି, ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ,

ଢାଙ୍କଣରେ ଆଦି ଅଞ୍ଚଳରେ ରାଜା ଜମିଦାରଙ୍କ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ନିର୍ଭୀକ ଭାବରେ ସ୍ୱର ଉତ୍ତୋଳନ କରୁଥିଲେ । ଢେଙ୍କାନାଳଗଡରେ ନିମନ୍ତ୍ରଣ ପାଇ ସେ 'ଦି ନିଉ ଓଡିଶା ଥିଏଟର' ରେ ଅଭିନୟ କରିଥିଲେ । ଢେଙ୍କାନାଳରେ ସେତେବେଳେ ରାଜୁତି କରୁଥିଲେ ରାଜା ଶ୍ରୀ ଶଙ୍କର ପ୍ରତାପ ଦେଓ, ରାଜରାଣୀ ଧର୍ମପ୍ରାଣ ସ୍ୱଦେଶୀ ବତ୍ସଳା ଶ୍ରୀମତୀ ରତ୍ନପ୍ରଭା ଦେବୀ । ଅଭିନୟ ପରିବେଷଣ ସମୟରେ ମଞ୍ଚିରେ ମଞ୍ଚିରେ କବି ବାଞ୍ଛାନିଧି ରାଜାଙ୍କ ଅନ୍ୟାୟ ଅତ୍ୟାଚାର ଆଦି ବିଷୟକୁ ଉପଜୀବ୍ୟ କରି ସଂଗୀତ ରଚନାକରି ଗାନ କରୁଥିଲେ ଢେଙ୍କାନାଳ ଗଡର ସହସ୍ର ସହସ୍ର ପ୍ରଜାଙ୍କ ସମ୍ମୁଖରେ । ରାଜାଙ୍କର ଗଡ ମଧ୍ୟରେ ରାଜାଙ୍କ ବିରୁଦ୍ଧରେ ଅଗ୍ନିଗର୍ଭା ଓଜସ୍ୱିନୀ ସଙ୍ଗୀତମାନ ଗାନ କରୁଥିବାରୁ ଥିଏଟର ପାର୍ଟିର ସହକର୍ମୀମାନେ ପ୍ରମାଦ ଗଣିଲେ । ଦିନେ ଅଭିନୟ ପରେ ବାଞ୍ଛାନିଧିଙ୍କୁ ରାଜାଙ୍କ ଅନୁଚର ସମ୍ବାଦ ଦେଲେ, ''ମଣିମା ରାଜପ୍ରସାଦରେ ଆପଣଙ୍କୁ ସ୍ମରଣ କରୁଛନ୍ତି''। ବାଞ୍ଛାନିଧି ହସ ହସ ବଦନରେ ରାଜାଙ୍କୁ ବାହାରିଲେ । ବନ୍ଧୁ ଗୌରାଙ୍ଗ ଚନ୍ଦ୍ର ଦାସ ତାଙ୍କ ସଙ୍ଗରେ ଶଙ୍କାକୁଳ ଅବସ୍ଥାରେ ଗଲେ । ରାଣୀ ହଂସପୁରରେ ଅପେକ୍ଷା କରିଥିଲେ । ରାଜାସାହେବ ଏହି ସ୍ୱାଧୀନ-ଚେତା କବି ଓ କଳାକାରଙ୍କୁ ସସମ୍ମାନ ପାଛୋଟି ନେଲେ । ରାଣୀମାଙ୍କ ଅନୁରୋଧରେ ବାଞ୍ଛାନିଧି କେତୋଟି ଗୀତ ଗାଇଲେ । ତାଙ୍କୁ ମିଷ୍ଟାନ୍ନ ଭୋଜନ କରିବାକୁ ଅନୁରୋଧ କରାଗଲା । କିନ୍ତୁ ଅସମୟରେ ଭୋଜନ କରିବାକୁ ସେ ମନାକଲେ । ଶେଷରେ ରାଣୀମାଙ୍କର ମମତାଭରା ଅନୁରୋଧରେ ବାଞ୍ଛାନିଧି ମିଠା ଖାଇଲେ ଓ ରାଜାସାହେବ ବାଞ୍ଛାନିଧିଙ୍କୁ ଉପାୟନ ପ୍ରଦାନ କଲେ ।

ଭଦ୍ରକର ସାଳନ୍ଦୀ ନଦୀ ତଟବର୍ତ୍ତୀ କୁଆଁସ ଗ୍ରାମରେ କଂଗ୍ରେସ ଆଶ୍ରମ ବାଞ୍ଛାନିଧିଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ହୋଇଥିଲା । ଏହା ପୂର୍ବରୁ ଭଦ୍ରକର ବଙ୍କ ସାହିରେ ତାଙ୍କ ନିଜ ବାସ ଭବନରେ ୧୯୨୧ ମସିହାଠାରୁ ୧୯୨୨ ମସିହା ପର୍ଯ୍ୟନ୍ତ କଂଗ୍ରେସ କର୍ମୀ ଆଶ୍ରମ ଖୋଲାଯାଇଥିଲା । କୁଆଁସ ଗ୍ରାମରେ ଆଶ୍ରମ ପ୍ରତିଷ୍ଠାପାଇଁ ବାଞ୍ଛାନିଧିଙ୍କୁ ଜମିଦାନ କରିଥିଲେ ଦେଶପ୍ରେମୀ ଗୌରମୋହନ ମହାପାତ୍ର ।

ଏହି କଂଗ୍ରେସ ଆଶ୍ରମ ସେତେବେଳେ ଏ ଅଞ୍ଚଳରେ ବିଶେଷ ପ୍ରଭାବ ପକାଇଥିଲା । ଭଦ୍ରକ ସବ୍ ଡିଭିଜନରେ ଅନେକ ଜମିଦାର ପ୍ରଜାମାନଙ୍କ ବିରୁଦ୍ଧରେ ଖଜଣା ଆଦାୟ ପାଇଁ ସରକାରୀ କୋର୍ଟରେ ନାଲିସ୍ କରିବା ପରିବର୍ତ୍ତେ କଂଗ୍ରେସ ଅଫିସରେ ଆଶ୍ରୟ ନେଉଥିଲେ । ଅସହଯୋଗ ଆନ୍ଦୋଳନ ପାଇଁ ଭଦ୍ରକର ଇଦ୍‌ଗା ମସ୍‌ଜିଦ୍ ପ୍ରାଙ୍ଗଣରେ ଏକ ବିରାଟ ସଭା ବ୍ରିଟିଶ ସରକାରଙ୍କ ୧୪୪ ଧାରା ଭାଙ୍ଗିସକ୍ତେ ଅନୁଷ୍ଠିତ ହୋଇଥିଲା । ସଭାପରେ ବାଞ୍ଛାନିଧି, ଅଟଳ ବିହାରୀ ଆଚାର୍ଯ୍ୟ ଓ ଗୋବିନ୍ଦ ମିଶ୍ର (କଟକ) ଗିରଫ ହୋଇ କଟକରେ ଛମାସ ଜେଲ ଦଣ୍ଡ ଭୋଗିଲେ ।

ବାଲେଶ୍ୱର ଜିଲ୍ଲାର ଭଦ୍ରକ ସବ୍ ଡିଭିଜନସ୍ଥ ଏତଡାଳ ଗ୍ରାମର ଜମିଦାର ରାଜା ବାହାଦୁର କୁଆଁ, ଭାସ୍କର ଚନ୍ଦ୍ର ମହାପାତ୍ର, କୃଷ୍ଣପୁରର ଦରିଦ୍ର ଗୋପାଳମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିବା ଫଳରେ ଗୋପାଳମାନେ ଗୃହଶୂନ୍ୟ ହୋଇ ଅସହାୟ ଅବସ୍ଥାରେ ସମୁଦ୍ର କୂଳରେ ପଡି ରହିଲେ । ବାଞ୍ଛାନିଧି କର୍ମୀମାନଙ୍କୁ ନେଇ ଗୋପାଳଙ୍କ ପ୍ରତି ସୁବିଚାର ପାଇଁ ଆନ୍ଦୋଳନ କଲେ । ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବଙ୍କୁ ସେଠାକୁ ନେଇ ଏକ ଅମାନୁଷିକ କାର୍ଯ୍ୟ ଦେଖାଇଲେ । ଫଳରେ କୃଷ୍ଣପୁର ଗୋପାଳମାନଙ୍କର ଦୁଃଖ ଦୂର ହେଲା ଓ ଜମିଦାର ମହାଜନଙ୍କ ଜୁଲମର ଅବସାନ ଘଟିଲା ।

**ଶ୍ରୀଜଙ୍ଗରେ ପ୍ରଜା ଆନ୍ଦୋଳନ :**

ଶ୍ରୀଜଙ୍ଗ ଗ୍ରାମଟି ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଗୋପାଳପୁରଠାରୁ ଚାରି କିଲୋମିଟର ଉତ୍ତର ଦିଗକୁ । ଏହି ଗ୍ରାମର ଉତ୍ତର ପୂର୍ବ ଦିଗରେ ଲବଣତୀର୍ଥ ଇଞ୍ଚୁଡି । ଶ୍ରୀଜଙ୍ଗରେ ଜମିଦାର ନିଜେ ଜଣେ ସ୍ୱାଧୀନତା ସଂଗ୍ରାମୀ । ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ ଜମିଦାର ଗୌରମୋହନ ଦାସ ଓ ନିଜ ପ୍ରଜାମାନଙ୍କୁ ମଧ୍ୟ ସ୍ୱାଧୀନତା ସଂଗ୍ରାମ ପାଇଁ ଉତ୍ସାହିତ କରିଥିଲେ । ଇଞ୍ଚୁଡିଠାରେ ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଆନ୍ଦୋଳନ ବ୍ୟାପକ ରୂପ ଗ୍ରହଣ କଲା । ବାଞ୍ଛାନିଧି ଥିଲେ ଶ୍ରୀଜଙ୍ଗ ଆନ୍ଦୋଳନର ପ୍ରାଣ କେନ୍ଦ୍ର । ଓଡିଶାର ନେତୃବର୍ଗ ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ସରଳା ଦେବୀ, ମାଳତୀ ଚୌଧୁରୀ, ସର୍ଦ୍ଦାର ସୁରେନ୍ଦ୍ର ଦାସ ଓ ଭାରତୀୟ ନେତା ଜୀବରାମ କଲ୍ୟାଣଜୀ ସେଠାରେ ଆନ୍ଦୋଳନକୁ ତୀବ୍ରତର କଲେ । ବ୍ରିଟିଶ୍ ସରକାର ଏହି ଆନ୍ଦୋଳନକୁ ଦବାଇବା ପାଇଁ ପ୍ରଜାଜମିଦାର ସମସ୍ତଙ୍କ ଉପରେ ପିଟୁଣି ଟିକସ ବସାଇଲେ । ପ୍ରଜାମାନେ ଏହି ଟିକସର ବିରୁଦ୍ଧାଚରଣ କରିବାକୁ ବ୍ରିଟିଶ୍ ସରକାରର ଅକଥନୀୟ ଅତ୍ୟାଚାରର ଶିକାର ହେଲେ । କବି ବାଞ୍ଛାନିଧି ଦରଦିଭରା କଣ୍ଠରେ ଗାଇଛନ୍ତି,

କିଏ ନ ଶୁଣିଛି ସେ ଦାରୁଣ କଥା, କିଏ ନ ଜାଣିଛି ଗୋ
ଯିଏ ବା ଦେଖିଛି ସେ ନାରକୀ ଲୀଳା, ତା ହୃଦେ କି ବ୍ୟଥା ଆଣିଛି
ଗୋ ।୦।

ଦୁଃଖେ ଜୀ ଉଠିଲେ ଶ୍ରୀଜଙ୍ଗ କାହାଣୀ ପ୍ରତି ପ୍ରାଣେ ଦେଲାକି ସନ୍ତାପ ଆଣି
ପ୍ରତି ଲୋମକୂପ ଶିହରି ଉଠିଲା, ଜାଣେ ଯେ ମନକୁ ଆଣିଛି ଗୋ ।୧।

**କନିକା ପ୍ରଜା ଆନ୍ଦୋଳନରେ ଅଂଶ ଗ୍ରହଣ :**

ବିଂଶ ଶତାବ୍ଦୀର ପ୍ରଥମ ଚରଣରେ ଗାନ୍ଧିଜୀଙ୍କର ଦକ୍ଷିଣ ଆଫ୍ରିକାରୁ ପ୍ରତ୍ୟାବର୍ତ୍ତନ ସହ ଭାରତରେ ଜାତୀୟ ମୁକ୍ତି ଆନ୍ଦୋଳନର କ୍ରାନ୍ତିକାରୀ ଯୁଗର ହେଲା ଅଭ୍ୟୁଦୟ । ପଞ୍ଜାବର ଜାଲିଆନାବାଗ ହତ୍ୟାକାଣ୍ଡ ଓ ବିହାରର ଚୌରିଚୌରା କୃଷକ ଆନ୍ଦୋଳନ ପରେ ସମଗ୍ର ଭାରତରେ ଜନିକାର କୃଷକ ଓ ପ୍ରଜା ଆନ୍ଦୋଳନ ସୃଷ୍ଟି କରିଥିଲା ଏକ ଅପୂର୍ବ ଆଲୋଡନ, ଯାହାକି ସମଗ୍ର ଭାରତରେ ବ୍ରିଟିଶ ସରକାରର ଭିତ୍ତିକୁ ଦୋହଲାଇ ଦେଇଥିଲା । ଏହି ପ୍ରଜା ଆନ୍ଦୋଳନ ପାଇଁ ଉତ୍କଳ

ପ୍ରଦେଶ କଂଗ୍ରେସର ସଭାପତି ପଣ୍ଡିତ ଗୋପବନ୍ଧୁ ଦାଶ ପ୍ରଥମଥର କାରାବରଣ କରିଥିଲେ । ଉତ୍କଳ ପ୍ରଦେଶ କଂଗ୍ରେସ ସଂପାଦକ ଭାଗିରଥୀ ମହାପାତ୍ର, ବାଲେଶ୍ୱର ଜିଲ୍ଲା କଂଗ୍ରେସ ସଂପାଦକ ହରେକୃଷ୍ଣ ମହତାବ କାରାବରଣ କଲେ । କନିକା ପ୍ରଜା ଆନ୍ଦୋଳନ ଓଡ଼ିଶା କଂଗ୍ରେସର ଅସହଯୋଗ ଆନ୍ଦୋଳନର ପଟ୍ଟଭୂମିରେ ସଂଘଟିତ ହୋଇଥିଲା । ଜାତୀୟ କଂଗ୍ରେସ ନେତା ପଣ୍ଡିତ ଗୋପବନ୍ଧୁ, ଭାଗିରଥୀ ମହାପାତ୍ର, ସରଳା ଦେବୀ, ରାମଦାସ ବାବାଜୀ, କର୍ମୀ ମଧୁସୂଦନ ପଟ୍ଟନାୟକ, ଗଞ୍ଜାମର ଜନନେତା ନିରଞ୍ଜନ ପଟ୍ଟନାୟକ, ବିଶ୍ୱନାଥ ଦାଶ, କନିକାର ପ୍ରଜାନେତା ଦୀନବନ୍ଧୁ ଖଣ୍ଡାଏତ ରାୟ, ଅଗଣି ବେହେରା, ଲମ୍ବୋଦର ମହାପାତ୍ର, ଅଶ୍ୱିନୀ ପଲାଇ, ଆନନ୍ଦ ଚନ୍ଦ୍ର ଜେନା, ସଦାନନ୍ଦ ରସିକରାୟ, ରାଧାମୋହନ ମଦନରାୟ, କୃଷ୍ଣଚନ୍ଦ୍ର ମହଲା, ଭଗବାନ ସୂତାର, ସୂର୍ଯ୍ୟମଣି ସୂତାର, ସୁଦର୍ଶନ ଧଳ, ମହନି ଧଳ, ପୂର୍ଣ୍ଣାନନ୍ଦ ଜେନା, ପ୍ରଭାକର ସ୍ୱାଇଁ, ପୂର୍ଣ୍ଣାନନ୍ଦ ରାଉତରାୟ, ଉପେନ୍ଦ୍ର ମଙ୍ଗରାଜ, ନିତ୍ୟାନନ୍ଦ ସୂତାର, ଉଦୟନାଥ ନାୟକ, ଦଶ ବେହେରା, ଚକ୍ରଧର ବେହେରା, ସନ୍ଥ ବେହେରା, ସାମନ୍ତ ଭାଗବତ ପ୍ରସାଦ ମହାପାତ୍ର, ଜାତୀୟ କବି ଓ ଜାତୀୟ କଂଗ୍ରେସର ଭଦ୍ରକ ସଂଗଠକ କାହ୍ନୁଚରଣ ମହାନ୍ତି ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ଏଠାରେ କନିକା ରାଜ୍ୟ ଓ ପ୍ରଜା ଆନ୍ଦୋଳନର କାରଣ ଜାଣିବା ଉଚିତ । ଇଷ୍ଟ ଇଣ୍ଡିଆ କମ୍ପାନୀ ୧୮୦୩ ରେ ଓଡ଼ିଶା ନେଲାବେଳେ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ମାନ୍ଦ୍ରାଜ ସରକାରଙ୍କ ନିମକ ମାହାଲ ଅନ୍ତର୍ଭୁକ୍ତ ଥିଲା । ୧୯୦୪ ବେଳକୁ ରିସେଲ କମିଟି ଦ୍ୱାରା ଏହି ଅଞ୍ଚଳରୁ ମାନ୍ଦ୍ରାଜ ପ୍ରଦେଶର ନିମକ ମାହାଲ ସବୁ ଉଠିଗଲା । କନିକା ଏକ ପକ୍କି ମାହାଲ କିମ୍ବା କନିକା ରାଜ୍ୟ । ଓଡ଼ିଶାର ପୂର୍ବ ଉପକୂଳ ବର୍ତ୍ତମାନର ଭଦ୍ରକ ଜିଲ୍ଲାର ବାସୁଦେବପୁରଠାରୁ ଆରମ୍ଭ ହୋଇ କେନ୍ଦ୍ରାପଡ଼ା ଜିଲ୍ଲାର ମହାକାଳପଡ଼ା ପର୍ଯ୍ୟନ୍ତ ପ୍ରାୟ ୪୪୦ ବର୍ଗ ମାଇଲ ଅଞ୍ଚଳ । ସମୁଦ୍ରରେ ଦେଶୀ ବୋଇତରେ ବେପାର ବଣିଜ ଓ ଲୁଣ ଆମଦାନି କନିକା ଲୋକଙ୍କର ପ୍ରଧାନ ଜୀବିକା ଥିଲା । ୧୮୦୪ ଖ୍ରୀଷ୍ଟାବ୍ଦ ଅପ୍ରେଲ ତା ୭ ତାରିଖରେ ବ୍ରିଟିଶ ଇଷ୍ଟଇଣ୍ଡିଆ କମ୍ପାନୀ କନିକା ପ୍ରଜାଙ୍କର ସମୁଦ୍ର ଜଳରୁ ଲୁଣ ମାରିବା ଓ ବ୍ୟବସାୟ କରିବା କ୍ଷମତା ରଦ୍ଦ କଲେ ଓ ଏହା କମ୍ପାନୀର ଏକଚାଟିଆ ଅଧିକାର ହେଲା । ପ୍ରଜାମାନେ ବିଦ୍ରୋହ କଲେ । ୧୮୦୩ ରୁ ୧୯୦୨ ମଧ୍ୟରେ ବାରମ୍ବାର ଆନ୍ଦୋଳନ ଓ ଅନ୍ୟାନ୍ୟ କାରଣରୁ ବ୍ରିଟିଶ ସରକାରଙ୍କ କୋର୍ଟ-ଅଫ୍-ୱାର୍ଡ଼ସରେ କନିକାର ଶାସନ ପ୍ରାୟ ୪୦ ବର୍ଷ ଚାଲିଥିଲା । ୧୯୦୨ରେ ସାର ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, କେ.ଟି ଓ ବି.ଇ. କେ.ସି.ସି.ଆଇ.ଇ ଗାଦିନସିନ ହୋଇ ୧୯୨୨ ବେଳକୁ ଓଡ଼ିଶା ପ୍ରଦେଶର ଲାଟ ସାହେବଙ୍କ ପରାମର୍ଶଦାତା ହୋଇଥିଲେ । ମନ୍ତ୍ରୀମାନଙ୍କର କେବଳ ହସ୍ତାନ୍ତର ବିଷୟରେ ମତାମତ ନିଆଯାଏ । କିନ୍ତୁ ପରାମର୍ଶଦାତା ଯାହା ମତ ଦିଅନ୍ତି ତାହା ଲାଟ ସାହେବଙ୍କ ମତ ହୁଏ । କନିକାର ଭୂମି ଉପରେ ପ୍ରଜାସ୍ୱତ୍ୱ କନିକା ରାଜାଙ୍କ ଇଚ୍ଛାନୁଯାୟୀ ଥାଏ । ରାଜାଙ୍କ ହାତରେ ଏତେ କ୍ଷମତା ଠୁଳ ଥିଲା ଯେ ସେ ଚାହିଁଲେ ଜଣେ ରୟତଠାରୁ ନିମିଷକେ ସମସ୍ତ ଭୂସମ୍ପତ୍ତି କାଢ଼ି ନେଉଥିଲେ । ପ୍ରଜାର ଜମିରେ ଥିବା ଗଛ, ପୋଖରୀରେ ଥିବା ମାଛ ସବୁ ରାଜାଙ୍କର । ରାଜା ନିଜ ମନଇଚ୍ଛା ସମୟକୁ ସମୟ ଜମିବାଡ଼ିର ବନ୍ଦୋବସ୍ତ କରାଇ ଖଜଣା ବୃଦ୍ଧି କରୁଥିଲେ । ୧୯୦୬ରୁ ୧୯୩୬ ପର୍ଯ୍ୟନ୍ତ ରାଜାସାହେବ ପ୍ରାଦେଶିକ କାଉନସିଲ ବା ଇମ୍ପେରିଆଲ କାଉନ୍ସିଲକୁ ରାଜା ଜମିଦାରଙ୍କ ପ୍ରତିନିଧିଭାବେ ମନୋନୀତ ହେଉଥିଲେ । ୧୯୧୩ ମସିହା ପ୍ରଜାସ୍ୱତ୍ୱ ଆଇନ ଗଢ଼ି ପ୍ରଜାଙ୍କର କ୍ଷମତାକୁ ଅପହରଣ କଲେ । ପ୍ରଜା ଜମିଜମା ବିକ୍ରୟ ପୂର୍ବରୁ ଜମିଦାରଙ୍କ ଅନୁମତି ଲୋଡ଼ିବେ । ବିକ୍ରୟ ଲବ୍ଧ ଧନରୁ ଏକ ଚତୁର୍ଥାଂଶ ରାଜାଙ୍କୁ ଦେବାର ଧାର୍ଯ୍ୟ ହେଲା ।

ପ୍ରଜା ତାଙ୍କର ଶସ୍ୟ କେବଳ ରାଜାଙ୍କୁ ବିକ୍ରୟ କରି ପାରିବେ । ଚାନ୍ଦବାଲି ବନ୍ଦରକୁ ନେଇ ପାରିବେ ନାହିଁ । ୧୯୨୦-୨୧ ମସିହାର ଦୁର୍ଭିକ୍ଷ ସମୟରେ ରାଜା ସରକାରୀ ଗୋଲା ଖୋଲିବା ବନ୍ଦ କଲେ । କାରଣ ସେ ଓଡ଼ିଶା ରାଜ୍ୟର ସର୍ବମୟ କର୍ତ୍ତା (Counsel to Governor) । କିନ୍ତୁ ନିଜ ଗୋଲାର ଜଣକୁ ସେହି ଧାନ ଦିଆଗଲା । ପରିବାରରୁ ସ୍ତ୍ରୀ ଲୋକ, ବୋହୂ ଭୁଆସୁଣୀ, ଝିଅମାନେ ରାଜାଙ୍କ କଚେରୀ ଗୋଲାକୁ ଗଲେ ନାହିଁ । ପ୍ରଜାଙ୍କ ଦୁଃଖ, କଷ୍ଟ ଚରମ ସୀମାକୁ ସ୍ପର୍ଶ କଲା । ଏହି ସମୟରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ତରଫରୁ ନେତା ଓ କର୍ମୀମାନଙ୍କ ଅଗ୍ନିଗର୍ଭା ବକ୍ତୃତା ଓ ଆନ୍ଦୋଳନ ଦ୍ୱାରା କନିକାରେ କନିକା ରାଜା ଓ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହୁଏ କନିକାର ଛମୁଦା ଅଞ୍ଚଳରୁ । ବ୍ରିଟିଶ ଶାସନର ଏକ ସ୍ତମ୍ଭ ସ୍ୱରୂପ କନିକା ରାଜ ସରକାରଙ୍କ ଅନ୍ୟାୟ, ଅତ୍ୟାଚାରକୁ ଉପଜୀବ୍ୟ କରି ଆନ୍ଦୋଳନ ଆଗେଇ ଗଲା । କନିକା ରାଜାଙ୍କ କର୍ମଚାରୀଙ୍କ ପରାମର୍ଶ ଅନୁଯାୟୀ ପୋଲିସ୍ ମିଥ୍ୟା କେସ୍ କରି ପ୍ରଜା ନେତାଙ୍କୁ ଗିରଫ କଲେ । ପ୍ରଜାମାନେ ଏକ ମେଳ ଥିବାରୁ ପୋଲିସ୍ ହାତରୁ ପ୍ରଜାମାନଙ୍କୁ ଛଡ଼ାଇ ନେଲେ । କନିକା ରାଜା ୧୯୨୨ ମସିହା ଅପ୍ରେଲ ୨୧ ଓ ୨୨ ତାରିଖରେ ପାଟଣାଠାରେ ଲାଟସାହେବଙ୍କ ଅତିଥି ଥିବା ବେଳେ, ପୂର୍ବ ନିର୍ଦ୍ଧାରିତ ପରିକଳ୍ପନା ଅନୁଯାୟୀ କନିକାରୁ ଗୋଟିଏ ଟେଲିଗ୍ରାମ ପହଞ୍ଚିଲା ଯେ ହଜାର ହଜାର ପ୍ରଜା ରାଜକନିକାସ୍ଥ ରାଜବାଟି ଧ୍ୱଂସ କରିବାକୁ ଆଗେଇ ଆସୁଛନ୍ତି । ରାଜାସାହେବ ସେହି ଟେଲିଗ୍ରାମଟିକୁ ତତ୍କାଳୀନ ଲାଟସାହେବ ହୁଇଲର ସାହେବଙ୍କୁ ଦେଖାଇଲେ । ତାପରେ ଲାଟସାହେବଙ୍କ ଆଦେଶରେ କଟକର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଏକଶହ ସଶସ୍ତ୍ର ପୋଲିସ ଧରି କନିକାରେ ଆସି ପହଞ୍ଚିଲେ । ୧୩.୪.୧୯୨୨ ସକାଳେ ପ୍ରଜାମେଳିର ପୀଠସ୍ଥଳୀ ଆୟତନ ମୌଜା ଅଭିମୁଖେ ସଶସ୍ତ୍ର ସୈନ୍ୟ ଚାଳନା କଲେ । ଆୟତନରେ ପ୍ରଜାନେତା ଜୟରାମ ରାୟ, ଭଗବାନ ସୂତାରଙ୍କ ଘର ଲୁଟ ତରାଜ କରାଗଲା । ପ୍ରଜାମାନେ ସୈନ୍ୟମାନଙ୍କୁ ବାଧାଦେଲେ ଖଣ୍ଡା ଆଉ ଲାଠି ଚାଳନା କରି । ସେଠାରେ ପ୍ରଜାନେତା ସୂର୍ଯ୍ୟମଣି ସୂତାର, ସୁଦର୍ଶନ ଧଳ, ମହନି ଧଳ ଓ ନିତ୍ୟାନନ୍ଦ ସୂତାରଙ୍କୁ ଗିରଫ କରାଗଲା । ହାତରେ କଡ଼ି ଓ ଗୋଡ଼ରେ ବେଡ଼ି ଦିଆଯାଇ ସୈନ୍ୟମାନେ ସେମାନଙ୍କୁ

ଚଳାଇ ଚଳାଇ ପଦ୍ମପୁର ଗ୍ରାମ ଅଭିମୁଖେ ଚାଲିଲେ କିନ୍ତୁ ମେଘପୁର ମୁକାମରେ ପ୍ରଜା ସଭା ଡକାଯାଇଥିଲା । ପ୍ରାୟ ଦଶହଜାର ପ୍ରଜା ସେଠାରେ ଜୁଣ୍ଟ ହୋଇଥିଲେ । ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀକୃଷ୍ଣ ମହାପାତ୍ର ସେହି ଚାରିଜଣ ଗିରଫ ହୋଇଥିବା ପ୍ରଜା ନେତାଙ୍କୁ ସଙ୍ଗରେ ନେଇ ମେଘପୁର ଅଭିମୁଖେ ସୈନ୍ୟ ଚାଳନା କଲେ । ସଭା ପାଇଁ ଜୁଣ୍ଟ ହୋଇଥିବା ପ୍ରଜାମାନେ ପୂର୍ବରୁ ଗିରଫ ହୋଇଥିବା ପ୍ରଜାନେତାମାନଙ୍କୁ ମୁକ୍ତ କରିଦେବାକୁ ଜିଦ୍ ଧରିଲେ । ଶେଷରେ ପୋଲିସ ସାହେବ ଶ୍ରୀକୃଷ୍ଣ ମହାପାତ୍ରଙ୍କ ଆଦେଶରେ ବନ୍ଧୁକରୁ ସୈନ୍ୟମାନେ ଗୁଳି ଚାଳନା କଲେ । ଏହି ଘଟଣାରେ ପ୍ରାୟ ଦେଢ଼ଶହ ବ୍ୟକ୍ତି ଆଘାତ ପ୍ରାପ୍ତ ହୋଇ ଚାନ୍ଦବାଲି ଚିକିତ୍ସାଳୟରେ ଚିକିତ୍ସିତ ହେଲେ । ଅନେକ ପ୍ରଜା ମୃତ୍ୟୁମୁଖରେ ପଡ଼ିଥିଲେ ମଧ୍ୟ ସରକାରୀ ତଥ୍ୟରେ କୁହାଗଲା ବାସୁ ସେଠି ଓ ବିଶୁନି ମହୁଆଳ ମୃତ୍ୟୁ ବରଣ କରିଛନ୍ତି । ତା ୨୩.୪.୧୯୨୨ ରିଖ ଠାରୁ କନିକାର ଏହି ଛମୁକା ଅଞ୍ଚଳ (ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱ ଓ ବ୍ରାହ୍ମଣୀ ଖରସ୍ରୋତାର ଉତ୍ତର ପାର୍ଶ୍ୱ ମଧ୍ୟସ୍ଥ କନିକା ଅଞ୍ଚଳ)ରେ ଲୁଟତରାଜ, ନାରୀ ନିର୍ଯ୍ୟାତନାର ଲୋମହର୍ଷଣ ତାଣ୍ଡବ ଲୀଳା ଲାଗିଲା ଗୋଟିଏ ସପ୍ତାହ କାଳ । କନିକା ଅଞ୍ଚଳକୁ ବାହାରୁ କେହି ଆସି ପାରିବେ ନାହିଁ । ୧୪୪ ଧାରା ଜାରି । ଏହି ଅଞ୍ଚଳରେ ଦଶଟି ସ୍ଥାନରେ ଅସ୍ଥାୟୀ ସଶସ୍ତ୍ର ପୋଲିସ୍ ରହିଲେ ଛମାସ ପାଇଁ ଓ ସେମାନଙ୍କ ବ୍ୟୟଭାର ପ୍ରଜାମାନଙ୍କଠାରୁ ପିଟୁଣି ଟିକସ ଭାବେ ଆଦାୟ ହେଲା । ସାମରିକ ଆଇନ୍ ଜାରି କରିଦେଲେ ବ୍ରିଟିଶ ସରକାର । କନିକାର ପ୍ରଜାମାନଙ୍କୁ ଆତତାୟୀର ଆଖ୍ୟା ଦିଆଗଲା । ବ୍ରିଟିଶ ସରକାରଙ୍କର କର୍ମଚାରୀମାନେ କନିକା ରାଜାଙ୍କର ରାଜନୈତିକ ବ୍ୟୂହ ଭେଦ ନକରି ଅତ୍ୟାଚାରିତ ପ୍ରଜାଙ୍କ ଉପରେ ଦୋଷ ଲଦି ଦେଇ ଦଣ୍ଡ ଦେଲେ । ଛମୁକା ଅଞ୍ଚଳର ଏକଶହ ପଚାଶ ପ୍ରଜା ତିନି ମାସରୁ ଛମାସ ପର୍ଯ୍ୟନ୍ତ ଜେଲ୍ ଭୋଗ କଲେ କଟକ ଜେଲ ଖାନାରେ । ଏହି ଅତ୍ୟାଚାର କାହାଣୀ ଉତ୍କଳ ଦୀପିକାରେ ତା ୧୩.୫.୨୨ ରିଖରେ ପ୍ରକାଶିତ ହେଲା । ଉତ୍କଳମଣି ଗୋପବନ୍ଧୁ 'ସମାଜ'ରେ ବାରମ୍ବାର ପ୍ରକାଶ କଲେ । ଏହି ପ୍ରଜା ଆନ୍ଦୋଳନକୁ ବ୍ରିଟିଶ ସରକାର ଓ କନିକାରାଜ ସରକାର ଦବାଇ ଦେବାପାଇଁ ଯେଉଁ ହୀନ ଚକ୍ରାନ୍ତ କରିଥିଲେ ତହିଁରେ ମର୍ମାହତ ହୋଇ ତତ୍‌କାଳୀନ ବାଲେଶ୍ୱର ଜିଲ୍ଲା କଂଗ୍ରେସ ସଂପାଦକ ଯେଉଁ ପ୍ରଚାରପତ୍ର ବାଣ୍ଟିଥିଲେ ସେଥିରେ କନିକା ପ୍ରଜାଙ୍କ କଳୁଆ ମନୋବୃତ୍ତିର ପ୍ରଶଂସା ପୂର୍ବକ କନିକା ପ୍ରଜା ଆନ୍ଦୋଳନ ଭାରତ ସ୍ୱାଧୀନତା ସଂଗ୍ରାମକୁ ଦ୍ରୁତ ଗତିରେ ଆଗେଇ ନେଇଛି ଓ ବିବର୍ତ୍ତନ ନେଇଛି ବୋଲି ସ୍ୱୀକାର କରି କହିଛନ୍ତି, "The Kanika Sarkar thinks that he will obstruct the waves of non-co-operation movement by stretching out his hand. But be it remembered that the awakening of the people caused by the Non-Co-operation movement will lower the head not only of the Kanika Sarkar but also the sithi Sarkar.

Now we are awakened. Let the faint light of the awakening be kept up in the hearts. Eventually it will spread like wild fire grow furious and serve as a guide to many countries."

ବ୍ରିଟିଶ ସରକାରଙ୍କ କର୍ତ୍ତୃକ କନିକାର ଛମୁକା ଅଞ୍ଚଳରେ ଘଟିଥିବା ଅତ୍ୟାଚାର ବିରୁଦ୍ଧରେ ୧୯୨୨ ମସିହା ମଇ ମାସ ତା ୧୪ ରିଖରେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ପଣ୍ଡିତ ଗୋପବନ୍ଧୁଙ୍କ ସଭାପତିତ୍ୱରେ ବସି କନିକା ଅତ୍ୟାଚାରର ନିରପେକ୍ଷ ଅନୁସନ୍ଧାନ ନିମନ୍ତେ ପ୍ରସ୍ତାବ ଧାର୍ଯ୍ୟ ହେଲା । କିନ୍ତୁ ଏହି ସଭାପାଇଁ ଜିଲ୍ଲା ମାଜିଷ୍ଟ୍ରେଟ ୧୪୪ ଧାରା ଜାରି କରିଥିଲେ । ତା ୧୬.୪.୧୯୨୨ ରିଖରେ ଭଦ୍ରକରେ ଜିଲ୍ଲା କଂଗ୍ରେସ କମିଟି କନିକା ଅତ୍ୟାଚାର ଓ ଆନ୍ଦୋଳନ ବିଷୟରେ ବସିଲା । ଏଠାରେ ମଧ୍ୟ ଜିଲ୍ଲାପାଳ ୧୪୪ ଧାରା ଜାରି କରି ସଭା କରିବା ପାଇଁ ପ୍ରାଦେଶିକ କଂଗ୍ରେସ ସଭାପତି ଗୋପବନ୍ଧୁ ଦାସ ଓ ପ୍ରାଦେଶିକ ସଂପାଦକ ଭାଗିରଥୀ ମହାପାତ୍ରଙ୍କ ଉପରେ ନିଷେଧ ଆଦେଶ ଜାରି କଲେ । ଭଦ୍ରକରେ କଂଗ୍ରେସ ଅନୁଷ୍ଠାନର ପ୍ରଧାନ ସଂଗଠକ ବାଞ୍ଛାନିଧି ବାବୁ ମହତାବଙ୍କୁ କହିବାରୁ ମହତାବ ଭଦ୍ରକ ପୋଲିସ୍ ସାହେବ ହଡ୍‌ସନ୍ ସାହେବଙ୍କୁ ବୁଝାଇ କଂଗ୍ରେସ ଆଶ୍ରମ ସମ୍ମୁଖସ୍ଥ ମସ୍‌ଜିଦ୍ ପ୍ରାଙ୍ଗଣରେ ସଭା କରାଇଲେ । କନିକା ଅତ୍ୟାଚାରର ନିନ୍ଦାକରି ବିଭିନ୍ନ ପ୍ରସ୍ତାବ ଗ୍ରହଣ କରାଗଲା । ପଣ୍ଡିତ ଗୋପବନ୍ଧୁ ଓ ଭାଗିରଥୀ ମହାପାତ୍ରଙ୍କ ନାମରେ ବ୍ରିଟିଶ ସରକାରଙ୍କ ତରଫରୁ ଭଦ୍ରକ ସବ୍‌ଡିଭିଜନାଲ୍ ମାଜିଷ୍ଟ୍ରେଟ, ୧୪୪ ଧାରା ଅମାନ୍ୟ କରିଥିବାରୁ ୧୪୮ ଧାରାରେ କେସ୍ କଲେ । ଗୋପବନ୍ଧୁଙ୍କୁ ୧୯୨୨ ମେ ୩୧ ତାରିଖରେ ପୁରୀରୁ ଗିରଫ କରାଯାଇ କଟକ ଅଣାଗଲା । କନିକା ରାଜା ମଧ୍ୟ ଗୋପବନ୍ଧୁଙ୍କ ବିରୁଦ୍ଧରେ ମାନହାନୀ ମକଦ୍ଦମା ରୁଜୁକଲେ । ବିହାର-ଓଡ଼ିଶା ଲେଜିସଲେଟିଭ କାଉନ୍‌ସିଲରେ ଭଦ୍ରକର ବିଧାୟକ ସାମନ୍ତ ଭାଗବତ ପ୍ରସାଦ ମହାପାତ୍ର କନିକା ପ୍ରଜାଙ୍କ ଉପରେ ବ୍ରିଟିଶ ଫଉଜ କରିଥିବା ଅକଥନୀୟ ଅତ୍ୟାଚାର ଘଟଣାର ତଦନ୍ତ ପାଇଁ ଆଲୋଚନା କଲେ । ଏହା କନିକା ଡିବେଟ ନାମରେ ବିଦିତ । ଛମୁକା ପ୍ରଜାଙ୍କ ଉପରେ ଅକଥନୀୟ ଦମନଲୀଳା ଚଳାଇ ପ୍ରଜାଙ୍କୁ କାବୁ କରିଦେଇ ରାଜସରକାର ପାଞ୍ଚମୁକାରେ ପ୍ରଜାଙ୍କୁ ଭୟଭୀତ କରାଇଲେ । ପାଞ୍ଚମୁକାର ପ୍ରଜାନେତା ଚକ୍ରଧର ବେହେରା ଓ ତାଙ୍କର ସହକର୍ମୀ ଭଗବାନ୍ ଦୀକ୍ଷିତ, ସଙ୍କ ଚରଣ ବେହେରା କଂଗ୍ରେସ ବାର୍ତ୍ତା ପ୍ରଚାର କରୁଥିଲେ ଓ ଅସହଯୋଗ ଆନ୍ଦୋଳନକୁ ସକ୍ରିୟ କରି କନିକା ପ୍ରଜାଙ୍କ ମଧ୍ୟରେ ନୂତନ ଚେତନା ଓ ଶକ୍ତି ସଂଚାର କରୁଥିଲେ । କନିକା ରାଜା ମିଥ୍ୟା ମକଦ୍ଦମା ସଜାଇ ଏମାନଙ୍କୁ ଶାରୀରିକ ଓ ମାନସିକ ଯନ୍ତ୍ରଣା ଦେଲେ । ୧୯୨୨ ମେ ମାସରୁ ୧୯୨୪ ପର୍ଯ୍ୟନ୍ତ ଏହି ଦୁଇବର୍ଷ ଭଦ୍ରକ ସବଡ଼ିଭିଜନର ପ୍ରଧାନ କଂଗ୍ରେସ କର୍ମୀ ସଂଗଠକ ବାଞ୍ଛାନିଧି ମହାନ୍ତି କନିକା ପ୍ରଜା ଆନ୍ଦୋଳନରେ ନିଜକୁ ସଂଶ୍ଲିଷ୍ଟ କରାଇଥିଲେ ।

ଅସହଯୋଗ ଆନ୍ଦୋଳନର ବାର୍ତ୍ତା ଓ ସ୍ୱଦେଶୀ ଆନ୍ଦୋଳନ କନିକାର ଘରେ ଘରେ ପ୍ରଚାର ପାଇଁ ସେ କନିକା ପ୍ରଜାନେତା ଚକ୍ରଧର ବେହେରା ଓ ସଚ୍ଚି ଚରଣଙ୍କ ସେ ଅଧିକାଂଶ ସମୟ କଟାଉଥିଲେ ଏବଂ ଦେଶାତ୍ମବୋଧକ ସଂଗୀତ ଗାନ କରି ପ୍ରଜାମାନଙ୍କର ମନୋବଳ ଦୃଢ଼ କରାଉଥିଲେ । ଫଳରେ ରାଜକର୍ମଚାରୀମାନଙ୍କର କବି ବାଞ୍ଛାନିଧିଙ୍କ ପ୍ରତି ବିଦ୍ୱେଷଭାବ ବଢ଼ିଲା ।

୧୯୨୩ ମସିହା ଘଣ୍ଟେଶ୍ୱରଠାରେ ପ୍ରଜାମାନେ ମିଳିତଭାବେ ଦୁର୍ଗାପୂଜା ଉତ୍ସବ ପାଳନ ପାଇଁ ବନ୍ଦୋବସ୍ତ କଲେ । ପ୍ରଜାନେତା ଚକ୍ରଧର ବାବୁ ଦେବୀଙ୍କ ଘଟ ଉତ୍ତୋଳନ କଲେ । ପ୍ରଜାମାନଙ୍କ ମଧ୍ୟରେ ନୂତନ ଉନ୍ମାଦନାରେ କନିକା ରାଜା ପ୍ରମାଦ ଗଣିଲେ । ଅସହଯୋଗ ଆନ୍ଦୋଳନ ଓ ପ୍ରଜାଙ୍କ ମଧ୍ୟରେ ଏକତା କରାଇ ନ ଦେବା ପାଇଁ ଭଦ୍ରକ ମାଜିଷ୍ଟ୍ରେଟଙ୍କ ନିକଟରେ ଆଇନ ଶୃଙ୍ଖଳା ବ୍ୟାଘାତ ଘଟିଛି ବୋଲି ଚକ୍ରଧର ବାବୁ ଓ ଅନ୍ୟାନ୍ୟଙ୍କ ନାମରେ କେଶ ଦାୟର କଲେ । ତତ୍କାଳୀନ ପଲ୍ଲିମାହାଲ କନିକାରେ ପ୍ରଜାଙ୍କର ଜମି ଉପରେ ସ୍ୱତ୍ୱ ଖୁବ୍ କମ । ଜମିଦାରଙ୍କର ସମସ୍ତ ଜମିଜମା । ଦୁର୍ଗାପୂଜା ହେଉଥିବା ବିଜେ ସ୍ଥଳୀ ରାଜା ବାହାଦୂରଙ୍କର । ଏଣୁ ଏଠାରେ ବିଦ୍ରୋହୀ ପ୍ରଜାମାନଙ୍କୁ ପୂଜା କରାଇ ଦେଲେ ନାହିଁ । ଆଉ ଏକ ଗ୍ରାମ ପରମାନନ୍ଦପୁରରେ କୌଣସି ଏକ ପ୍ରକାର ରୟତି ଜମି ପ୍ରଜାମଣ୍ଡଳ ଦ୍ୱାରା କ୍ରୟ କରାଯାଇ ସେଠାରେ ଦୁର୍ଗାପୂଜା କରାଗଲା । କବି ବାଞ୍ଛାନିଧି ଜିଲାବୋର୍ଡର ସଭ୍ୟ । ସେ ଏହି ଉତ୍ସବରେ ଯୋଗଦେଇ ଦେଶାତ୍ମବୋଧ ଓ ଜାତୀୟ ସଂଗୀତ ପରିବେଷଣ କରିଥିଲେ । ଭାଷଣ ଦେଇ ଜନସାଧାରଣଙ୍କୁ ବ୍ରିଟିଶ ସରକାର ତଥା ରାଜସରକାରଙ୍କର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଚତାଇଦେଲେ । ରାଜାକୁବର୍ଗ ପକ୍ଷଙ୍କର ବାଞ୍ଛାନିଧି ବାବୁଙ୍କ ପ୍ରତି ପ୍ରତିହିଂସା ରହିଲା । ଦୁର୍ଗାପୂଜା ପରେ କବି ବାଞ୍ଛାନିଧି ଓ ସଚ୍ଚିଚରଣ ବେହେରା ପରମାନନ୍ଦପୁରରୁ ଫେରୁଛନ୍ତି ଗୁଆମାଳରେ ହରିଜନ ସମ୍ମିଳନୀରେ ଯୋଗ ଦେବା ପାଇଁ । ସେମାନେ ଚାନ୍ଦବାଲି-ଭଦ୍ରକ ରାସ୍ତାରେ ନାଲଗୁଣ୍ଡାଠାରେ ଯାଉଛନ୍ତି, ଏହି ସମୟରେ ଅତର୍କିତଭାବେ ରାଜାଙ୍କର ଦଶବାରଜଣ ଗୁଣ୍ଡା ବାଞ୍ଛାନିଧି ଓ ସଚ୍ଚିଚରଣଙ୍କୁ ଆକ୍ରମଣ କଲେ । କେତେଜଣ କବି ବାଞ୍ଛାନିଧିଙ୍କୁ ଟାଙ୍ଗିଆମାରି ମାରି ନାଲଗୁଣ୍ଡା ଗ୍ରାମ ଆଡ଼କୁ ନେଇଗଲେ । ଅନ୍ୟମାନେ ସଚ୍ଚିଚରଣଙ୍କୁ ଏତେଦୂର ମାଡ଼ ମାରିଲେ ଯେ, ସେ ମରିଯାଇଛନ୍ତି ବୋଲି ଭାବି ନୟନଯୋରିରେ ଫୋପାଡ଼ି ଦେଇଗଲେ । କବି ବାଞ୍ଛାନିଧି ଭଦ୍ରକ ପ୍ରତ୍ୟାବର୍ତ୍ତନ କଲେ ଓ ସଚ୍ଚିଚରଣ ଭାଗ୍ୟବଳରୁ ବଞ୍ଚିଗଲେ । ସେହିବର୍ଷ ସଚ୍ଚିଚରଣ ବମ୍ବେଠାରେ ହେଉଥିବା କଂଗ୍ରେସ ଅଧିବେଶନ୍‌ରେ ଯୋଗଦେଲେ ଓ କନିକା ଅତ୍ୟାଚାର ବିଷୟ ବର୍ଣ୍ଣନା କଲେ । କଂଗ୍ରେସ ଅଧିବେଶନ କାର୍ଯ୍ୟସୂଚୀରେ କନିକା ବିଷୟ ଆଲୋଚନା ପାଇଁ ସ୍ଥାନ ପାଇଲା ।

କନିକା ପ୍ରଜା ଆନ୍ଦୋଳନରେ ଓତଃପ୍ରୋତ ଭାବେ ଜଡ଼ିତ କବି ବାଞ୍ଛାନିଧି ତାଙ୍କର ମହାନ୍ ଜାତୀୟ ସଂଗୀତ ଦ୍ୱାରା ପ୍ରଜାମାନଙ୍କୁ ଉଦବୁଦ୍ଧ କରାଉ ଥିଲେ । ଗୋପବନ୍ଧୁ କନିକା ଆନ୍ଦୋଳନ ପାଇଁ ତା ୩୧.୫.୧୯୨୨ ରିଖରେ ଗିରଫ ହୋଇ କଟକ ଓ ହଜାରିବାଗରେ ଜେଲରେ କାରାବରଣ କରି ଥିଲେ । ୧୯୨୪ ମସିହା ଜୁନ ମାସରେ କଟକଠାରେ ଉତ୍କଳ ପ୍ରାଦେଶିକ ସମ୍ମିଳନୀରେ ଯୋଗ ଦେଇଥିଲେ । ଏହି ଅଧିବେଶନରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ପୌରହିତ୍ୟ କରିଥିଲେ ।

ଗୋପବନ୍ଧୁ ହଜାରି ବାଗ୍ ଜେଲରୁ ଆସି ସେଠାରେ ପହଞ୍ଚିଲେ । । ଗୋପବନ୍ଧୁଙ୍କୁ ଦେଖି ସଭାସ୍ଥ ଉପସ୍ଥିତ ଜନତା ବାସେ ଆପଣଙ୍କୁ ଅଭୂତପୂର୍ବ ସମ୍ମାନ ଦେଖାଇଲେ । ସମ୍ବର୍ଦ୍ଧନା ଜଣାଇଲେ । ସେ ମଧୁମୟ ମିଳନ ଦୃଶ୍ୟ ଦେଖି ସଭାପତି ଆସନରୁ ଉଠିଯାଇ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ଭାବ ବିହ୍ୱଳ ହୋଇ ଗୋପବନ୍ଧୁଙ୍କୁ କୁଣ୍ଢାଇ ପକାଇ କହିଲେ, ''ଗୋପବନ୍ଧୁ, ବାସ୍ତବରେ ତୁମେ ଦରିଦ୍ର ଉତ୍କଳର ମଣି, ତୁମ ପାଇଁ ଉତ୍କଳ ଜନନୀ ଧନ୍ୟ ହୋଇଛି ।'' ସେହି ଖୋଲା ଅଧିବେଶନରେ କନିକା ଅତ୍ୟାଚାରର କାହାଣୀ ବର୍ଣ୍ଣନା କରି କନିକାର ଦୁଃଖ ମୋଚନ ପାଇଁ ଗୋପବନ୍ଧୁଙ୍କ କାରାବରଣକୁ ଉଲ୍ଲେଖ କରି ଜାତୀୟ କବି ଗାଇ ଉଠିଲେ, ସ୍ୱରଚିତ ରାଗ-ଖମ୍ବାଜର ଗୀତଟି । ଯାହା ଶୁଣି ସଭାସ୍ଥ ସମସ୍ତଲୋକ ଶୋକାଭିଭୂତ ହୋଇପଡ଼ିଥିଲେ । ବାଞ୍ଛାନିଧିଙ୍କ ସେହି ଉଦ୍ଦାମ ଜାଗରଣ ତଥା କରୁଣାତ୍ମକ ସଙ୍ଗୀତ ଶୁଣି ଗୋପବନ୍ଧୁଙ୍କ ଚକ୍ଷୁଦ୍ୱୟ ସଜଳ ହୋଇ ଆସିଲା । ସେ ଆଉ କୋହ ସମ୍ବରଣ କରି ନପାରି କାନ୍ଦି କାନ୍ଦି କହି ଉଠିଲେ, ''ବାଞ୍ଛାନିଧି, ତୁମେ କନିକାର ଦୁଃଖ, ଯନ୍ତ୍ରଣା, କଷ୍ଟ, ନିର୍ଯ୍ୟାତନା ଯେଉଁ ପରିମାଣରେ ଅନୁଭବ କରି ପାରିଛ, ମୁଁ ସେତେ ପରିମାଣରେ ଅନୁଭବ କରି ପାରି ନାହିଁ । କାରଣ, ମୁଁ ଜୀବନରେ ଅନେକ ସମୟ ବନ୍ଦୀ ହୋଇ ଜେଲରେ ରହିଗଲି ।''

ବାଞ୍ଛାନିଧିଙ୍କ ସେହି ଗୀତଟି ହେଲା -

**ରାଗ-ଖମ୍ବାଜ**

କେତେଦିନ ଆଉ ଦୁଃଖିନୀ କନିକା
ଅନୀତି ଯାତନା ସହିବ,
ଦୁଃଖ ସହିବାକୁ ଦୁଃଖିନୀ ଲଲାଟେ
ଲିହିଥିଲା କିବା ଦଇବ ।୦।
କର ଦେଇ ଦେଇ ସାରିଛି ସମ୍ବଳ
ମାଡ଼ ଖାଇ ଖାଇ ହରାଇଛି ବଳ
ଆହା ବୋଲିବାକୁ ସାହା କେହି ନାହିଁ
କାହା ଆଗେ ଦୁଃଖ କହିବ ।୧।
ପଞ୍ଜାବ କାହାଣୀ ଶୁଣୁଥିଲ କାନେ
କନିକାର ଲୀଳା ଦେଖୁଛ ନୟନେ
ଶତ ଅତ୍ୟାଚାର କନିକାର ତୁଳେ
ପଞ୍ଜାବଙ୍କ ସରି ହୋଇବ ।୨।
କନିକା ରାଇଜ ଜମିଦାର ଛାର

ଏତେ ଅତ୍ୟାଚାର ଏତେ ବଳାତ୍କାର
ହୋଇଥାନ୍ତା ଯଦି ମହୀଶୂର ଜୈପୁର
କି ହୁଅନ୍ତା କିଏ କହିବ ।୩।
ଅତ୍ୟାଚାରୀ ନର ପିଶାଚ ମାନସ
ଅତ୍ୟାଚାର ବିନା ନୋହଇ ସନ୍ତୋଷ
ପାପୀ ପାପ କର୍ମ ବିନେ ନକଲେ
ଆହାରକି ତାକୁ ରୁଚିବ ।୪।
ଦୁଃଖ ସହି ସହି କନିକା ରମଣୀ
ଅହଲ୍ୟା ସୁନ୍ଦରୀ ହୋଇଲା ପାଷାଣୀ
ନାହିଁକେ ଭାରତେ କେହି ବୀର-ରାମ-ପାଦ
ପରଶେ ଉଦ୍ଧାରିବ ।୫।
ତା ଦୁଃଖ ଫେଡିବା ପାଇଁ ଗୋପବନ୍ଧୁ
ଉତ୍କଳର ପ୍ରାଣ ଦୀନ ଜନ ବନ୍ଧୁ
ବରିନେଲେ ଦୀର୍ଘ କାରାଗାର ଦଣ୍ଡ
ନାହିଁ କେହି ଏହା ହେଜିବ ।୬।
ନାହିଁକି ଉତ୍କଳେ ଦଶଟି ଅକାଳୀ
ଦାଉଦାକୁ ବୀର ବାଘର ଆହାଳୀ
ହୁଅନ୍ତା ଦିନକେ ଜାଗୃତ ନରା
ସ୍ୱର୍ଣ୍ଣଦ୍ୱାର ମହା ଆହବ ।୭।

ଜାତୀୟ କବି ବାଞ୍ଛାନିଧି ଦେଶର କୋଟି କୋଟି ଲୋକଙ୍କର ଦୁଃଖ, ଯାତନା, ଶୋଷଣ, ଅତ୍ୟାଚାରରେ ମର୍ମାହତ ହୋଇ ବିପ୍ଳବର ସ୍ୱର ଉତ୍ତୋଳନ କଲେ ତାଙ୍କର କଲମ ମୁନରେ । କାର୍ଯ୍ୟ ମଧ୍ୟ କଲେ ଶୋଷିତ ଅତ୍ୟାଚାରିତ ନିରୀହ, ନିରନ୍ନ ପ୍ରଜାବର୍ଗଙ୍କ ପାଇଁ । ତାଙ୍କର କଣ୍ଠରୁ ଉଦ୍ଦାମ ସ୍ୱରରେ ନିଃସୃତ ହେଲା ଦେଶାତ୍ମବୋଧକ ସଙ୍ଗୀତର ଉତ୍ତାଳ ତରଙ୍ଗ । ଏବେ ବି ଓଡ଼ିଶାର ପୁର ପଲ୍ଲୀରେ ଜାତୀୟ ଦିବସ ଓ ସାଂସ୍କୃତିକ ଉତ୍ସବମାନଙ୍କରେ ବାଞ୍ଛାନିଧିଙ୍କର କାଳଜୟୀ ସଙ୍ଗୀତ ''ଗାଅ ସ୍ୱାଧୀନ ଭାରତ'' ଓ ''ରେ ପତାକା'' ଗାନ ହୋଇ ଆସୁଛି

ଗାଅ ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ,
ସ୍ୱାଧୀନ ,ସ୍ୱାଧୀନ ସ୍ୱାଧୀନ ରେ
ଗାଏ ସାଗର ଲୁଧିର ଅମର କୂଜିତ
ଭାଲ ହିମାଦ୍ରି ଶିଖରେ କମ୍ପିତ
ସ୍ୱାଧୀନ, ସ୍ୱାଧୀନ ସ୍ୱାଧୀନ ରେ ।୦।
କମ୍ପେ ବିନ୍ଧ୍ୟଗିରି କାନନ କୁଞ୍ଜ
ଝମ୍ପେ ନିର୍ଝରିଣୀ ପ୍ରଭାତ ପୁଞ୍ଜେ
ଚପଳା ଚମକେ ଗଗନେ ପୁଲକେ
ନୀରଦ ନିସ୍ୱନରେ ।୧।
ପାବନୀ ଗଙ୍ଗା ଯମୁନା ସଙ୍ଗେ
ସିନ୍ଧୁ ମହାନଦୀ କାବେରୀ ରଙ୍ଗେ
ପ୍ଲାବିତ ଭୂବନ ସୁରଧୁନୀ ଶୋଭନ
ସୂଚିତ ସ୍ୱାଧୀନ ରେ ।୨।
ବଙ୍ଗୋପସାଗର ଉତ୍କଳ ଦେଶେ
ନର୍ତ୍ତନ କୀର୍ତ୍ତନ ଉନ୍ମତ୍ତ ବେଶେ
ଅଙ୍ଗେ ରଙ୍ଗେ ତରଙ୍ଗେ ଭଙ୍ଗେ
ସୂଚିତ ସ୍ୱାଧୀନରେ ।୩।
ଜାତୀୟ କେତନ ଉଡ଼ାଇ କି ଗର୍ବ
ଅରିକୁଳ ଦର୍ପ କରିବକି ଖର୍ବ
ସେତ ଜାତୀୟ ଗୌରବ, ଜାତୀୟ ସଂପଦ
ଜାତୀୟ ଜୀବନ ରେ ।୪।

\+ + + + + + + + +

ରେ ପତକା, ଜାତିର ଗରବ, ଜାତିର ଜୀବନ ପରାଣ ତୁହିରେ ।
ଏକତା-ପୀରତି-ଶାନ୍ତି-ମୂରତି, ସୁନ୍ଦର ତୋହର ସମାନ ନାହିଁରେ ।୦।
ତୋହରି ଲାଗି କେତେ ଯେ ସମର, ଲାଗିଛି ଜାଗିଛି କୀରତି ଅମର
ତୋହରି ଲାଗି କେତେ କାରାଗାର, ବରିଲେ ମରିଲେ ସମର ଭୂଇଁରେ ।୧।

ତୋହରି ଲାଗି ଦେଶେ ଦେଶେ, ପୀରତି ହୋଇଛି ବଇରୀ ଶେଷେ
ତୋହରି ଲାଗି ଅରିର ଖଡ଼ଗ ଶରୀର ରକତ ଦେଲେ ରଞ୍ଜାଇରେ ।୨।

ଜାଣିଛି ଯେ ଥରେ ଜାତୀୟତା ସ୍ୱାଦୁ ଚାଖିଛି ଯେ ଥରେ ସ୍ୱାଧୀନତା ମଧୁ ପାରିଛି ଦେବାକୁ ଜୀବନ ଯୌବନ ମାନ ସନମାନ ବିମନ ନୋହିରେ ।୩।

ଉଡ଼ୁଥୁ ଉଡ଼ୁଥୁ, ଉଡ଼ୁଥିବ ପରା, ଏ ଦେଶ ଧରିଥିବ ଧରା
ଯାବତ ଜାତିର ଜଣିଏ, ପରାଣେ ଥିବ ତୁ ବିରାଜିବୁ ଗଗନ ଛୁଇଁରେ ।୪।

ଧନ୍ୟ ଧନ୍ୟ ତୁହି ତିନି ରଙ୍ଗିଆରେ, ଧରିଛୁ ସଂଘରେ ସୁଖ ସାଙ୍ଗିଆରେ
ଚରଖା ଦରିଦ୍ର-ସେବା-ଅବତାର, ବକ୍ଷରେ ସେ ଚିହ୍ନ ନମୁଛି ମୁହିଁ ରେ ।

—o—

ସହାୟକ ଗ୍ରନ୍ଥାବଳୀ - ୧. ଜାତୀୟ କବି ବାଞ୍ଛାନିଧି ୨, ବିପ୍ଳବୀ ଚକ୍ରଧର ୩. ହେ ସାଥି ହେ ସାରଥୀ ୪. ଗୋପବନ୍ଧୁ ରଚନାବଳୀ ୫. କନିକା ବିପ୍ଳବ ୬. ସହୀଦ ବାସୁ ବିଷୁନୀ ୭. କନିକା ଡିବେଟ ।

ଚାନ୍ଦବାଲି,
ପିନ- ୭୫୬ ୧୩୩

# ଲବଣ ସତ୍ୟାଗ୍ରହରେ କାକଟପୁର

ଶ୍ରୀ ସୋମନାଥ ପାତ୍ର

ସ୍ୱାଧୀନତା ଆନ୍ଦୋଳନରେ ଲବଣ ସତ୍ୟାଗ୍ରହ ଏକ ମୁଖ୍ୟ ଭୂମିକା ନେଇଥିଲା । ଇଂରେଜ ବଣିକମାନେ ବିଲାତରୁ ଲୁଣ ଆଣି ଭାରତରେ ବିକ୍ରି କରିବା ଯୋଗୁ ଭାରତର ଲୁଣ ମରା ବାଧା ପାଇଲା ଓ ଲୁଣ ଚାଷୀମାନେ କ୍ଷତିଗ୍ରସ୍ତ ହେଲେ । ଭାରତର ଲୋକେ ଲୁଣ ମାରି ବିକ୍ରି କରିପାରିବେ ନାହିଁ ବୋଲି ସରକାର ଆଦେଶ ଜାରି କଲେ । ଏହି ଆଦେଶ ବିରୁଦ୍ଧରେ ଗାନ୍ଧୀ ପ୍ରତିବାଦର ସ୍ୱର ଉଠାଇଲେ । ସତ୍ୟାଗ୍ରହ ଆନ୍ଦୋଳନ ଚଳାଇବା ପାଇଁ ଗାନ୍ଧିଜୀ ଦେଶବାସୀଙ୍କୁ ଆହ୍ୱାନ ଦେଲେ । ନିଜେ ଗାନ୍ଧିଜୀ ଲୁଣ ମାରିବା ପାଇଁ ସାବରମତୀ ଆଶ୍ରମରୁ ଡାଣ୍ଡି ପର୍ଯ୍ୟନ୍ତ ପଦଯାତ୍ରା ଆରମ୍ଭ କଲେ । ତାଙ୍କ ସହିତ ଶହ ଶହ କର୍ମୀ ଯୋଗଦେଲେ । ସାରା ଭାରତରେ ସମୁଦ୍ର ଉପକୂଳ ଅଞ୍ଚଳମାନଙ୍କରେ ଲୁଣ ମରାଯିବା ପାଇଁ ସ୍ଥାନ ସ୍ଥିର କରାଗଲା ।

ଓଡ଼ିଶାରେ ବାଲେଶ୍ୱରର ଇଞ୍ଚୁଡ଼ି, ଇରମ, ଗଞ୍ଜାମର ହୁମା, ପୁରୀ ଜିଲ୍ଲାର ଅସ୍ତରଙ୍ଗ ଅଞ୍ଚଳ କୁହୁଡ଼ିଠାରେ ଲୁଣମରା ଯିବା ପାଇଁ ପ୍ରସ୍ତୁତି ଚାଲିଲା । ସ୍ୱେଚ୍ଛାସେବକମାନଙ୍କ ତାଲିକା ସଂଗ୍ରହ କରାଗଲା ଓ ସତ୍ୟାଗ୍ରହୀମାନଙ୍କୁ ବଛା ଗଲା ।

୧୯୩୦ ମସିହା ମଇ ୨୧ ତାରିଖରେ କାକଟପୁର-ଅସ୍ତରଙ୍ଗ ଅଞ୍ଚଳର କୁହୁଡ଼ିଠାରେ ଲୁଣ ମରାଯିବ ବୋଲି ପ୍ରଚାର ହୋଇଗଲା । ଲୋକେ ଚାରିଆଡ଼େ ଗାଇ ବୁଲିଲେ—

''ଗାନ୍ଧିଜୀ ନେ ହୁକୁମ ଦିଆ

ନେହିଁ ଡ଼ରେଙ୍ଗେ, ନେହିଁ ଡ଼ରେଙ୍ଗେ''

\+ + + + + + +

''ଥାନା ଆମର ଶ୍ୱଶୁର ବାଡ଼ି, ଜେଲ ଖାନା ଆମର ଘର

କୋନ ଶାଲାକୁ ନାହିଁ ଆମର ଡ଼ର''

ଲୋକେ ଝାଞ୍ଜ, ମୃଦଙ୍ଗ, ଗିନି, କରତାଳ ଧରି ପଟୁଆର କରି ଗୀତ ଗାଇ ଗାଁ ଗାଁ ବୁଲି ପ୍ରଚାର କଲେ । କହିଲେ—

''ଆମ ଦରିଆରୁ ମାରିବୁ ଲୁଣ
ଗୋରା ବେପାରୀଙ୍କ ଭାଙ୍ଗିବୁ ଟାଣ ।''
ସାରା ବିଲାତରେ ହାହାକାର ଆମେ ପକାଇ ଦେବୁ
ଗୋରା ବେପାରୀଙ୍କୁ ଏପାରି ସେପାରି ନଚାଇଦେବୁ
ନଚାଇଦେବୁ ।''

କାକଟପୁରଠାରୁ ପାଞ୍ଚ କିଲୋମିଟର ଦୂର ପୂର୍ବଦିଗକୁ କ୍ଷୁଦ୍ର କୁହୁଡ଼ି ଗ୍ରାମଟି ଅବସ୍ଥିତ । ଗ୍ରାମର ଉତ୍ତର ଦିଗରେ ବହିଯାଉଛି ଏକ ଛୋଟିଆ ଲୁଣା ନଦୀର ଧାରା । ଗ୍ରାମ ନିକଟରେ ବିସ୍ତୃତ ପ୍ରାନ୍ତର । ସ୍ଥିର ହେଲା ଏଇଠାରେ ଲୁଣ ମରାଯିବ ।

ଲୁଣ ମରା ଆନ୍ଦୋଳନକୁ ନେତୃତ୍ୱ ଦେବା ଓ ପରିଚାଳନା କରିବା ପାଇଁ କଂଗ୍ରେସ ତରଫରୁ ପଣ୍ଡିତ ନୀଳକଣ୍ଠ ଦାସ ଏଠାରେ ପହଞ୍ଚି ସମସ୍ତ ପ୍ରସ୍ତୁତି ଚଳାଉଥିଲେ । ନିକଟରେ ଥିବା ଓଳଙ୍ଗର ଗ୍ରାମରେ ସ୍ୱେଚ୍ଛାସେବକମାନେ ରହିବା ପାଇଁ ଏକ କ୍ୟାମ୍ପ କରାଗଲା । ଗ୍ରାମର ମୁଖିଆ ବ୍ୟକ୍ତି ଭୁବନାନନ୍ଦ ସ୍ୱାଇଁ ସ୍ୱେଚ୍ଛାସେବକମାନଙ୍କର ରହିବା ଓ ଖାଇବାର ସମସ୍ତ ଦାୟିତ୍ୱ ବହନ କଲେ । ତାଙ୍କ ପରିବାର ଓ ଓଳଙ୍ଗର ଗ୍ରାମର ସବୁ ଲୋକେ ଏହି କାର୍ଯ୍ୟରେ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ ଦେଲେ ।

ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ସ୍ୱେଚ୍ଛାସେବକଗଣ ଦୁଇଦିନ ପୂର୍ବରୁ କ୍ୟାମ୍ପରେ ପହଞ୍ଚି ଯାଇଥାନ୍ତି ।ପୁରୀ ଟାଉନ, ବାଣପୁର, ଟାଙ୍ଗି, ଗୋପ, ନିମାପଡ଼ା ଓ କାକଟପୁରର ବହୁ ସ୍ୱେଚ୍ଛାସେବକ ନିଜର ନାମ ତାଲିକା ପଞ୍ଜିକରଣ କରି ସତ୍ୟାଗ୍ରହୀ ହେବାପାଇଁ ସମ୍ମତି ଦେଇଥାନ୍ତି ।

ପ୍ରଥମ ଦିନର ସତ୍ୟାଗ୍ରହୀ କିଏ ହେବ ? ଏହି ବିଚାର ଚାଲିଲା । ଏହି ସମୟରେ ଗଙ୍ଗାନାରାୟଣପୁର (ବେଲଗାଡ଼ିଆ) ଗ୍ରାମର ମଧୁସୂଦନ ମିଶ୍ର ଏଣ୍ଟ୍ରାନ୍ସ ପାଶ୍ କରି ଆସି ଘରେ ଥାନ୍ତି । ସେ ସତ୍ୟାଗ୍ରହୀ ହେବାପାଇଁ ନାମ ଦେଇଥାନ୍ତି । ତାଙ୍କୁହିଁ ବଛାଗଲା । ଲୋକେ ମଧୁବାବୁ କି ଜୟ, ଗାନ୍ଧୀ ମହାତ୍ମାକି ଜୟ, ଭାରତ ମାତାକି ଜୟ ଧ୍ୱନି ଦେଇ ମଧୁବାବୁଙ୍କ ବେକରେ ଫୁଲମାଳ ପକାଇ ନଡିଆ କୀର୍ତ୍ତନ କରି ସତ୍ୟାଗ୍ରହ କ୍ଷେତ୍ରକୁ ନେଇ ଆସିଲେ ।

ମଇ ୨୧ ତାରିଖ ସକାଳ ୮ଟା ବେଳକୁ କୁହୁଡ଼ି ପଡ଼ିଆ ଲୋକାରଣ୍ୟ ହୋଇ ଯାଇଥିଲା । କୁହୁଡ଼ି ଗାଁର ଲୋକେ ନିଜ ଦୁଆରେ ପୂର୍ଣ୍ଣକୁମ୍ଭ ବସାଇ, ସ୍ୱେଚ୍ଛାସେବକମାନଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ଜନ ସମାବେଶକୁ ରୋକିବା ପାଇଁ ଓ ଲୁଣ ମରାକୁ ବେଆଇନ ଘୋଷଣା କରିବା ପାଇଁ ଶହ ଶହ ବନ୍ଧୁକ ଓ ଲାଠିଧାରୀ ପୁଲିସ୍ କୁହୁଡ଼ି ପଡ଼ିଆରେ ପହଞ୍ଚି ଡେରା ପକାଇ ପଥ ଓଗାଳି ଥିଲେ ।

ଲୋକଙ୍କ ପହୁଆରରେ ମଧୁବାବୁ କୁହୁଡ଼ି ପଡ଼ିଆରେ ପହଞ୍ଚିବା ସଙ୍ଗେ ପୁଲିସ୍ ତାଙ୍କୁ ଗିରଫ କରିନେଲା । ମଧୁବାବୁ ଗିରଫ ହୋଇଯିବା ପରେ ସ୍ୱେଚ୍ଛାସେବୀମାନଙ୍କ ମଧ୍ୟରୁ ଜଣକ ପରେ ଜଣେ ଲୁଣ ମାରି ଗିରଫ ହେବା ପାଇଁ ପ୍ରସ୍ତୁତ ହୋଇଗଲେ ।

ଗୋଟିଏ ମାଟି ହାଣ୍ଡିରେ ଲୁଣ ପାଣି ରଖି ତାହାକୁ ଚୁଲିରେ ବସାଇ, ନିଆଁ ଜାଳି ଲୁଣ ମାରିବାକୁ ହେଉଥିଲା । ସ୍ୱେଚ୍ଛାସେବକ ସତ୍ୟାଗ୍ରହୀମାନେ ସେହି ଲୁଣ ହାଣ୍ଡି ଓ ଚୁଲିକୁ ଚାରିପାଖ ଘେରି ଜଗିରହୁଥିଲେ ।

ଲୋକଙ୍କୁ ଘଉଡ଼ାଇ ଦେବାପାଇଁ ପୁଲିସର ସଶସ୍ତ୍ର ବାହିନୀ ହିଂସ୍ର ହୋଇ ଉଠିଲେ । ସତ୍ୟାଗ୍ରହୀଙ୍କ ଉପରେ ଲାଠି ଚଳାଇଲା । ଗୁଳି ଫୁଟାଇଲା । ଲୁଣ ପାଣି ରଖା ଯାଇଥିବା ହାଣ୍ଡି ଓ ଚୁଲିକୁ ଭାଙ୍ଗି ଦେଲା ।

ପୁଲିସର ଲାଠିମାଡ଼ରେ ଓଡ଼ିଶା ଗୋପବନ୍ଧୁ ଦରିଦ୍ର ନାରାୟଣ ସେବା ସମିତିର ସମ୍ପାଦକ ଶ୍ରୀ ଜଗନ୍ନାଥ ରଥଙ୍କ ଦାନ୍ତ ଖସି ପଡ଼ିଲା । ତାଙ୍କର ହାଡ଼ ଭାଙ୍ଗିଯାଇ ସେ ମୂର୍ଚ୍ଛା ହୋଇ ପଡ଼ିଗଲେ । ବାଣପୁରର ଶଙ୍କର ଷଡ଼ଙ୍ଗୀ ଓ ଆଉ ବହୁଲୋକ ଲାଠି ମାଡ଼ରେ ଆହତ ହୋଇ ରକ୍ତାକ୍ତ ଓ କ୍ଷତବିକ୍ଷତ ହେଲେ । ବୋଇତଢ଼ ଅଞ୍ଚଳର ବାଳାମର ନାମକ ଜଣେ ଯୁବକର ଡାକ୍ତରଖାନାରେ ମୃତ୍ୟୁ ହେଲା । ପୁଲିସର ଏହି ପ୍ରକାର ଦମନ ସତ୍ତ୍ୱେ ମଧ୍ୟ ଲୋକେ ଲାଠି, ଗୁଳିକୁ ଖାତିର ନକରି ଜଣକ ପରେ ଜଣେ ସତ୍ୟାଗ୍ରହ କରିବାକୁ ଆଗେଇ ଆସିଲେ । ଜଗନ୍ନାଥ ରଥ, ଭୁବନାନନ୍ଦ ସ୍ୱାଇଁ, ବାଳକୃଷ୍ଣ ସ୍ୱାଇଁ, ପୁରୁଷୋତ୍ତମ ମୁଦୁଲିଙ୍କୁ ପୁଲିସ୍ ଗିରଫ କରିନେଲେ ।

ନେତାମାନେ ଗିରଫ ହୋଇ ଯିବାପରେ ଆନ୍ଦୋଳନକୁ ଚଳାଇ ରଖିବା ପାଇଁ ବାଲେଶ୍ୱରର ଇରମ ଦାୟିତ୍ୱରେ ଥିବା ଏ ଅଞ୍ଚଳର ପାଟପୁର ଗ୍ରାମନିବାସୀ ଗତିକୃଷ୍ଣ ସ୍ୱାଇଁଙ୍କୁ କୁହୁଡ଼ିକୁ ଅଣାଗଲା । ଗତିବାବୁ ଇରମରୁ ଆସି କୁହୁଡ଼ିରେ ପହଞ୍ଚି ନେତୃତ୍ୱ ଦେଇ ଆନ୍ଦୋଳନ ଚଳାଇ ରଖିବାକୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ ଯୋଗାଇ ଦେଲେ । କୁହୁଡ଼ି ସହିତ ଏ ଅଞ୍ଚଳର ନଟରା, ବଡ଼ଗୋଲା, କେଉଟଜଙ୍ଗା, ଟିକରପଡ଼ା, କଉଳପାଟିଆଠାରେ ଲୁଣ ମରା କାର୍ଯ୍ୟ କରାଗଲା । ପୁଲିସ ଓଳଙ୍ଗର କ୍ୟାମ୍ପରୁ ଗତିକୃଷ୍ଣ ସ୍ୱାଇଁ ଓ ନଟରା କ୍ୟାମ୍ପରୁ ଏହି ଗ୍ରାମର ନୀଳକଣ୍ଠ ସ୍ୱାଇଁ ଏବଂ ଜଗନ୍ନାଥ ପୁର ଗ୍ରାମର ଗୋପୀନାଥ ଷଡ଼ଙ୍ଗୀଙ୍କୁ ଗିରଫ କରିନେଲେ । ତା'ପରେ ଲୁଣମରା ଆନ୍ଦୋଳନ ବନ୍ଦ ରହିଲା ।

ସେହି ପୁଣ୍ୟଭୂମି କୁହୁଡ଼ି ପଡ଼ିଆରେ ଉତ୍କଳ ସଂଗ୍ରାମ ସ୍ମୃତି ସମିତି (କାକଟପୁର) ତରଫରୁ ସ୍ୱାଧୀନତା ସଂଗ୍ରାମୀମାନଙ୍କର ନାମ ଲିଖିତ ଏକ ଫଳକ ଏବଂ ଗାନ୍ଧିଜୀଙ୍କ ଏକ ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଛି । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କର ଏକ ପ୍ରତିମୂର୍ତ୍ତି ମଧ୍ୟ ସ୍ଥାପନ କରାଯାଇଛି । ପ୍ରତିବର୍ଷ ମଇ ୨୧ ତାରିଖରେ ଏହି ସ୍ଥାନରେ ସଂଗ୍ରାମୀ ସ୍ମୃତି ସମିତି ତରଫରୁ ସାଧାରଣ ସଭା କରାଯାଇ ପ୍ରତିମୂର୍ତ୍ତିମାନଙ୍କରେ ମାଲ୍ୟାର୍ପଣ କରାଯାଉଛି ।

ଏବେ ବି କୁହୁଡ଼ି ଗ୍ରାମର ପ୍ରତ୍ୟକ୍ଷଦର୍ଶୀ ଅଗଣି ସ୍ୱାଇଁ ଜୀବିତ ରହିଛନ୍ତି । ସ୍ୱାଧୀନତା ପ୍ରାପ୍ତିର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ଲବଣ ସତ୍ୟାଗ୍ରହ ବେଳର ଆନ୍ଦୋଳନରେ କାକଟପୁର-ଅସ୍ତରଙ୍ଗ ଅଞ୍ଚଳର ଅବଦାନକୁ ସ୍ମରଣ କରିବା ସହିତ ସେହି ପୁଣ୍ୟାତ୍ମା ସତ୍ୟାଗ୍ରହୀ ଓ ଶହୀଦମାନଙ୍କ ପ୍ରତି କୃତଜ୍ଞତା ଜଣାଉଛୁ ।

କାକଟପୁର
ଜିଲ୍ଲା - ପୁରୀ

—o—

# ଯାଜପୁରରେ ଭାରତ ଛାଡ଼ ଆନ୍ଦୋଳନ

*ଶ୍ରୀ ନାରାୟଣ ବାରିକ୍*

୧୯୪୨ର ଅଗଷ୍ଟ ବିପ୍ଳବ ଇତିହାସରେ ଭାରତଛାଡ଼ ଆନ୍ଦୋଳନ ନାମରେ ଅଭିହିତ । ୧୯୪୨ ମସିହା ଅଗଷ୍ଟ ମାସ ୮ ତାରିଖରେ ଜାତୀୟ କଂଗ୍ରେସର ବମ୍ବେ ଅଧିବେଶନରେ ଭାରତଛାଡ଼ ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହୋଇଥିଲା । କିନ୍ତୁ ଆନ୍ଦୋଳନ ପାଇଁ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପ୍ରସ୍ତୁତ ହେବା ପୂର୍ବରୁ ଇଂରେଜ ସରକାର କଂଗ୍ରେସ ନେତୃବୃନ୍ଦଙ୍କୁ ଗିରଫ କରିନେଲେ ଓ କଂଗ୍ରେସ ଅନୁଷ୍ଠାନଗୁଡ଼ିକୁ ବେଆଇନ ଘୋଷଣା କଲେ । ଗାନ୍ଧୀଜିଙ୍କର 'କର ବା ମର' ଡ଼ାକରା ସାରା ଭାରତରେ ପ୍ରତିଧ୍ୱନିତ ହେଲା । ଚାରିଆଡ଼େ ଆନ୍ଦୋଳନ ତେଜି ଉଠିଲା ।

ଯାଜପୁରରେ ଭାରତଛାଡ଼ ଆନ୍ଦୋଳନ ଅତ୍ୟନ୍ତ ଭୟାବହ ରୂପ ନେଇଥିଲା । ନେତାମାନଙ୍କୁ ଗିରଫ କରିବା ସହ ଗୋପବନ୍ଧୁ ଚୌଧୁରୀଙ୍କ ଦ୍ୱାରା ସ୍ଥାପିତ ବରୀ ସେବାଶ୍ରମ ଓ ଯାଜପୁର ତାରାମଦନ ଆଶ୍ରମକୁ ସରକାର ଅଧିକାର କରିନେଲେ । ବରୀ ଆଶ୍ରମର କାଗଜପତ୍ରକୁ ନିକଟସ୍ଥ ଏକ ପୂର୍ତ୍ତ ବିଭାଗ ଗୃହକୁ ସ୍ଥାନାନ୍ତରିତ କରାଗଲା । ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ଗିରଫଦାରୀରେ ଜନତା ଉତ୍ତ୍ୟକ୍ତ ହୋଇ ଉଠିଲେ । ବରୀ, ଯାଜପୁର, ଦଶରଥପୁର, ବିଞ୍ଝାରପୁର ଓ ବଡ଼ଚଣା ପ୍ରଭୃତି ଅଞ୍ଚଳରେ ଉତ୍ତେଜନା ବୃଦ୍ଧି ପାଇଲା ।

ବରୀ, ଯାଜପୁର ଟାଉନ ଓ ଦଶରଥପୁରଠାରେ ବିରାଟ ପ୍ରତିବାଦ ଶୋଭାଯାତ୍ରାମାନ ବାହାରି ସରକାରଙ୍କ ଦମନ ନୀତିର ତୀବ୍ର ପ୍ରତିବାଦ କରାଗଲା । ଅଗଷ୍ଟ ୧୫ ତାରିଖରେ ଯାଜପୁରର ସବ୍‌ଡ଼ିଭିଜନାଲ ଅଫିସର ପରିସ୍ଥିତିର ଭୟାବହତା ସଂପର୍କରେ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଜଣାଇ ତାଙ୍କୁ ଯାଜପୁର ଆସିବା ପାଇଁ ଅନୁରୋଧ କଲେ । ଅଗଷ୍ଟ ୧୬ ତାରିଖ ଦିନ ଧାରପୁର, ବାଲିଆ, ହଲଦୀବସନ୍ତ, ହାଟସାହି, ବରୀ ଓ କାଇପଡ଼ାରେ ୬ଟି ଶୋଭାଯାତ୍ରା ବାହାରିଥିଲା । ଆନ୍ଦୋଳନକାରୀମାନେ ବରୀ ଆଶ୍ରମରେ ନିଆଁ ଲଗାଇଦେଲେ । ତାପର ଦିନ ହରିପୁର ହାଟରେ ପର୍ଶୁରାମ ମହାନ୍ତିଙ୍କ ନେତୃତ୍ୱରେ କେତେକ ବିପ୍ଳବୀ ଆସିଷ୍ଟାଣ୍ଟ ସବ୍-ଇନିସ୍‌ପେକ୍ଟର ଓ କେତେଜଣ ଚୌକିଦାରଙ୍କ ଉପରେ ଚଢ଼ାଉ କଲେ । ସେହି ଦିନ ବିଂଝାରପୁର ଥାନାର କାଇପଡ଼ାଠାରେ ଉତ୍ତ୍ୟକ୍ତ ଜନତା ଡ଼ାକଘର ଉପରେ ଚଢ଼ାଉ କରି ସମସ୍ତ କାଗଜପତ୍ର ପୋଡ଼ିଦେଲେ । ପରିସ୍ଥିତି ଭୟାବହ ରୂପ ନେବାରୁ ସେଠାକାର ପୋଷ୍ଟମାଷ୍ଟର ଯାଜପୁରର ଏସ୍. ଡ଼ି.ଓ. ଙ୍କ ନିକଟକୁ ଏକ ଏସ୍. ଓ. ଖବର ପଠାଇଲେ । ଅଗଷ୍ଟ ୧୮ ତାରିଖରେ କେତେକ ଛାତ୍ର ଓ ବିପ୍ଳବୀ ଯାଜପୁର ହାଇସ୍କୁଲ ଉପରେ ଚଢ଼ାଉ କରି ସ୍କୁଲର ଆସବାବପତ୍ର ଓ କାଚ ଆଲମୀରା ଭାଙ୍ଗି ପକାଇଲେ । ୧୯ ତାରିଖ ଦିନ ଯାଜପୁର ହାଇସ୍କୁଲର ଛାତ୍ରମାନେ ଗୋଟିଏ ଶୋଭା ଯାତ୍ରାରେ ଓ ବିପ୍ଳବୀମାନେ ଏକ ଶୋଭାଯାତ୍ରାରେ ଆସି ଯାଜପୁର ସବ୍ ଡ଼ିଭିଜନାଲ ଅଫିସ ହତା ମଧ୍ୟରେ ପହଞ୍ଚିଲେ । କିନ୍ତୁ ଏସ୍.ଡ଼ି.ଓ.ଙ୍କ ଅନୁରୋଧ କ୍ରମେ ଶୋଭାଯାତ୍ରାକାରୀମାନେ କିଛି ଗଣ୍ଡଗୋଳ ନକରି ଫେରି ଯାଇଥିଲେ ।

ଅଗଷ୍ଟ ୨୦ ତାରିଖ ଦିନ ବିପ୍ଳବୀମାନେ ଧର୍ମଶାଳାଠାରେ ଜଳକର ଅଫିସ ପୋଡ଼ିଦେଲେ ଓ ଗୋପାଳପୁର ଡ଼ାକବଂଗଳା ଉପରେ ଚଢ଼ାଉ କରି ସମସ୍ତ ଆସବାବପତ୍ର ନଷ୍ଟ କରିଦେଲେ । ୨୧ ତାରିଖରେ ଯାଜପୁର ଟାଉନ ନିକଟରେ ଜଣେ ଡାକ କର୍ମଚାରୀଙ୍କ ଡ଼ାକ ବ୍ୟାଗ ପୋଡ଼ି ଦିଆଗଲା । ସେହିଦିନ କଟକରୁ ଜଣେ ଡ଼ି.ଏସ୍. ପି. ବନ୍ଧୁକଧାରୀ ପୋଲିସ ବାହିନୀ ସହ ଆସି ବରୀ ଓ ବାଲିଆପାଳରୁ ବରୀ ଆଶ୍ରମ ପୋଡ଼ି ଓ ହରିପୁର ହାଟ ଗଣ୍ଡଗୋଳରେ ଜଡ଼ିତ ପର୍ଶୁରାମ ମହାନ୍ତିଙ୍କ ସମେତ ୬ ଜଣ ବିଦ୍ରୋହୀଙ୍କୁ ଗିରଫ କରିବାରୁ ସେ ଅଞ୍ଚଳରେ ପ୍ରବଳ ଉତ୍ତେଜନା ପ୍ରକାଶ ପାଇଲା । ଗିରଫର ପ୍ରତିବାଦରେ ସରକାର ବିରୋଧୀ ଧ୍ୱନି ଦେଇ ବହୁ ସଂଖ୍ୟକ ଲୋକ ପୋଲିସ ବାହିନୀର ଅନୁଗମନ କରି ବରୀ ପର୍ଯ୍ୟନ୍ତ ଆସିଲେ । ଅଗଷ୍ଟ ୨୨ ତାରିଖରେ ବିପ୍ଳବୀମାନେ ବାଲିଚନ୍ଦ୍ରପୁର ତହସିଲ ଓ ପୋଷ୍ଟ ଅଫିସ୍, ନେଉଳପୁର ଖଜଣା ଅସୁଲକାରୀ ଅଫିସ୍ ଏବଂ ଅରେଇ ତହସିଲ ଅଫିସର କାଗଜପତ୍ର ପୋଡ଼ିଦେଲେ ଓ ଆଖୁଆପଦା କେନାଲ ବନ୍ଧ କାଟିଦେଲେ । ସେତେବେଳକୁ ଦଶରଥପୁର ଅଞ୍ଚଳରେ ଆନ୍ଦୋଳନ ଭୀଷଣ ଆକାର ଧାରଣ କରିଥିଲା । ଅଗଷ୍ଟ ୨୫ ତାରିଖ ଦିନ ଅହିଂସାର ସଂଗ୍ରାମୀ ଭଗବାନ ସାହୁ ଓ ବିପ୍ଳବୀ ନେତା ପଦ୍ମନାଭ ରାୟଙ୍କ ନେତୃତ୍ୱରେ ଛତ୍ରପଡ଼ା ଡ଼ାକବଙ୍ଗଳା, ଦଶରଥପୁର ଜଳକର ଅଫିସ ଓ ଡ଼ାକବଙ୍ଗଳାକୁ ପୋଡ଼ି ଦିଆଗଲା । ଦଶରଥପୁର ଇ.ଟି. ଟ୍ରେନିଂ ସ୍କୁଲରେ ଛାତ୍ରମାନେ ନିଆଁ ଲଗାଇଦେଲେ । ଭଗବାନ ସାହୁ ଓ ଅନ୍ୟ କେତେଜଣ ବିପ୍ଳବୀ ବୈତରଣୀ

ଟଙ୍କ ଦେଇ କଟ୍ରା ଆସୁଥିବା ବାଟରେ ଜୟନ୍ତରା ପୋଲିସ୍ ବିଟ୍ ହାଉସ୍‌ରେ ସାଧା ପୋଷାକଧାରୀ ଦୁଇଜଣ ସିପାହୀ ଯାଜପୁରକୁ ଖବର ନେଇ ଯାଉଥିବା ବେଳେ ସେମାନଙ୍କୁ ଓ ଧାନ ବିଆଲିରେ ଲୁଚିଥିବା ଜମାଦାରଙ୍କୁ ଜୟନ୍ତରା ଆଣି ପୋଲିସ୍ ପୋଷାକ ପୋଡ଼ିଦେଲେ ଓ ଜୟନ୍ତରା ପୋଲିସ ବିଟ୍ ହାଉସ୍‌କୁ ପୋଡ଼ି ଭସ୍ମ କରିଦେଲେ । ଅହିୟାସ ଡାକବଙ୍ଗଳାକୁ ମଧ୍ୟ ପୋଡ଼ି ଦିଆଗଲା ।

ବଡ଼ଚଣା ଅଞ୍ଚଳରେ କୃଷ୍ଣଚନ୍ଦ୍ର ରାଉତଙ୍କ ନେତୃତ୍ୱରେ ଆନ୍ଦୋଳନ ତେଜି ଉଠିଥିଲା । ଧାନମଣ୍ଡଳରେ ବିରାଟ ଜନ ସମାବେଶର ଖବର ପାଇ କଟକର ଜିଲ୍ଲା ମାଜିଷ୍ଟ୍ରେଟ ଓ ପୋଲିସ୍ ଅଧ୍ୟକ୍ଷ ଅବସ୍ଥାକୁ ଆୟତ୍ତ କରିବା ପାଇଁ ଅଗଷ୍ଟ ୨୬ ତାରିଖରେ ସେଠାରେ ପହଞ୍ଚିଲେ । ଦର୍ପଣ ଷ୍ଟେଟର ମ୍ୟାନେଜରଙ୍କ ରିପୋର୍ଟ ମୁତାବକ ବିପ୍ଳବୀମାନେ ୨ ଜଣ ଚୌକିଦାରଙ୍କ ପୋଷାକ ପୋଡ଼ି ଦେଇଥିଲେ ଓ ଦର୍ପଣ ଷ୍ଟେଟ ଅଫିସ ତଥା ବଡ଼ଚଣା ଥାନା ଉପରେ ଚଢ଼ାଉ କରିବାର ଯୋଜନା କରିଥିଲେ । ଜିଲ୍ଲା ମାଜିଷ୍ଟ୍ରେଟ ପୋଲିସ ଦଳ ସହ ବଡ଼ଚଣା ଯାଇ ସେଠାରୁ କେତେଜଣ ବିପ୍ଳବୀଙ୍କୁ ଗିରଫ କରିବା ପରେ ବିପ୍ଳବୀମାନେ ମଧୁପୁରଗଡ଼ ମଧ୍ୟରେ ଅଛନ୍ତି ବୋଲି ଖବର ପାଇଲେ । ସେହି ସମୟରେ ବାସୁଦେବ ସାମଲ ଓ ଆର୍ତ୍ତବନ୍ଧୁ ମହାନ୍ତି ପ୍ରମୁଖ ବିପ୍ଳବୀମାନେ ହରିଦାସପୁର ପୋଲିସ ପର୍ଯ୍ୟବେକ୍ଷଣ ଘରକୁ ପୋଡ଼ିବାକୁ ଉଦ୍ୟମ କରିଥିଲେ । ପୋଲିସ ବାହିନୀ ଗଡ଼ମଧୁପୁର ପାଟ ଭିତରେ ଘେରାଉ କରି ବାସୁଦେବ ସାମଲ, ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ, ରସମଣି ସାମଲ, ତ୍ରିଲୋଚନ ମହାନ୍ତି ଓ ବୀର କିଶୋର ରାୟଙ୍କୁ ଗିରଫ କରିନେଲେ । କିନ୍ତୁ ବିପ୍ଳବୀ ନେତା କୃଷ୍ଣଚନ୍ଦ୍ର ରାଉତ କୌଣସି ମତେ ସେ ସ୍ଥାନରୁ ଖସି ପଳାଇ ଥିଲେ ।

ଡି. ଏସ୍.ପି. ଲକ୍ଷ୍ମଣ ମିଶ୍ର ଯାଜପୁରର ସବ୍-ଡେପୁଟି କଲେକ୍ଟର ଗୋପାଳ ରାଓ ପଟ୍ଟନାୟକ, ପେସ୍କାର ସୁକୁମାର ଦାସ, ବିଂଝାରପୁର ପୋଲିସ ସବ୍-ଇନିସ୍‌ପେକ୍ଟର ନବାବ୍ ଖାଁ ଓ ୨୭ ଜଣ ବନ୍ଧୁକଧାରୀ ସିପାହୀଙ୍କୁ ସଂଗରେ ନେଇ କାଇପଦ୍ରାର ବିପ୍ଳବୀ ନେତା କେଶୁଧର ବରିଆର ସିଂହଙ୍କୁ ଗିରଫ କରିବା ପାଇଁ ଅଗଷ୍ଟ ୨୫ ତାରିଖ ସନ୍ଧ୍ୟାରେ କାଇପଦ୍ରା ପ୍ରାଥମିକ ସ୍କୁଲଘରେ ପହଞ୍ଚିଥିଲେ । ଅଗଷ୍ଟ ୨୬ ତାରିଖ ଦିନ କାଇପଦ୍ରା ହାଟ ଗୋଲାଠାରେ ଏକ ଜନ ସମାବେଶର ଖବର ପାଇ ଡି. ଏସ୍.ପି. ଲକ୍ଷ୍ମଣ ମିଶ୍ର ସେଠାରୁ ବିଦ୍ୟାଧର ରାୟ, ରତ୍ନମଣି ତ୍ରିପାଠୀ, ହୃଷିକେଶ ରାୟ, କେଶୁଧର ସାମଲ, ରସାନନ୍ଦ ଶୁକ୍ଳ, ଅକ୍ଷୟ ଓ ହରେକୃଷ୍ଣଙ୍କୁ ଗିରଫ କରି ଲୋକମାନଙ୍କୁ ସ୍ଥାନ ତ୍ୟାଗ କରିବାକୁ ନିର୍ଦ୍ଦେଶ ଦେଲେ । ଅନ୍ଧାରପୁର ଗ୍ରାମର ମୁକ୍ତେଶ୍ୱର ମିଶ୍ର ଓ ଭଗବାନ୍ ପତି ମଧ୍ୟ ପୋଲିସ ଦ୍ୱାରା ଗିରଫ ହୋଇଥିଲେ । ମୋଟ ୧୬ ଜଣ ଗିରଫ ବ୍ୟକ୍ତିଙ୍କୁ ନେଇ ପୋଲିସ ବିଂଝାରପୁର ବାହାରିବା ସମୟରେ ପ୍ରାୟ ତିନି ହଜାର ପର୍ଯ୍ୟନ୍ତ ଉତ୍ତ୍ୟକ୍ତ ଜନତା କାଇପଦ୍ରାଠାରେ ସେମାନଙ୍କର ପ୍ରତିରୋଧ କରି ଗିରଫ ବ୍ୟକ୍ତିମାନଙ୍କର ମୁକ୍ତି ଦାବୀ କଲେ । ପ୍ରବଳ ଉତ୍ତେଜନା ଓ ଗଣ୍ଡଗୋଳ ପରିସ୍ଥିତି ମଧ୍ୟରେ ଡି. ଏସ୍.ପି. ଲାଠି ମାଡ଼ରେ ଆହତ ହୋଇ ରିଭଲଭରରୁ ଗୁଳି ଚାଳନା କଲେ ଓ ସଂଗେ ସଂଗେ ପୋଲିସ ବାହିନୀ ମଧ୍ୟ ବନ୍ଧୁକରୁ ଗୁଳି ଚାଳନା ଆରମ୍ଭ କରିଦେଲେ । ପୋଲିସ ରିପୋର୍ଟ ଅନୁସାରେ ପୋଲିସର ୨୧ ଥର ଗୁଳିଚାଳନା ଦ୍ୱାରା ଜଣେ ମୃତ ଓ ୧୨ ଜଣ ଆହତ ହୋଇଥିଲେ । କିନ୍ତୁ ବାସ୍ତବରେ ପୋଲିସ ଗୁଳିରେ ସାଗିଁଟି ମଲିକ, ସାନନ୍ଦ ସ୍ୱାଇଁ, ହାଡ଼ିବନ୍ଧୁ ପଣ୍ଡା, ନିଧି ସାମଲ ଓ କାଇପଦ୍ରା ଗ୍ରାମର ଶାନ୍ତିସେନା ଓ ମରଣସେନାର ସଖା ୨୨ ବର୍ଷ ବୟସ୍କ ମାୟାଧର ଭୂୟାଁ ଏହି ୫ ଜଣ ବ୍ୟକ୍ତି ମୃତ୍ୟୁବରଣ କରିଥିଲେ ଓ ୨୫ ଜଣ ବ୍ୟକ୍ତି ଆହତ ହୋଇଥିଲେ । ଏହାପରେ ପୋଲିସ ଗିରଫ ବ୍ୟକ୍ତିମାନଙ୍କୁ ଯାଜପୁର ଆଣିଥିଲେ ।

କାଇପଦ୍ରାର ମର୍ମନ୍ତୁଦ ଗୁଳିକାଣ୍ଡ ଖବର ବ୍ୟାପିଯିବା ପରେ ସର୍ବତ୍ର ଉତ୍ତେଜନା ପ୍ରକାଶ ପାଇ ହିଂସାକାଣ୍ଡମାନ ଘଟିଥିଲା । ଅହିୟାସ ରଥ ଚକଡ଼ାରେ ବିପ୍ଳବୀ ନେତା ପଦ୍ମନାଭ ରାୟ ଏକ ବିରାଟ ସଭା କରି କାଇପଦ୍ରାର ନିର୍ମମ ଗୁଳିକାଣ୍ଡର ପ୍ରତିବାଦ ଜଣାଇବା ପାଇଁ ବିରାଟ ଶୋଭାଯାତ୍ରାରେ ଯାଜପୁର ଯିବାକୁ ଘୋଷଣା କଲେ । ମହାରଖଣ୍ଡଠାରେ ତହସିଲ ଅଫିସ, ଅବକାରୀ ଦୋକାନଘର ଓ କାଞ୍ଜିଆ ହୁଦାକୁ ପୋଡ଼ି ଦିଆଗଲା । ସେହି ଦିନ କୁଆଁପାଳ ନିକଟରେ ବିପ୍ଳବୀମାନେ ଦୁଇଜଣ ଚୌକିଦାରଙ୍କ ପୋଷାକ ପୋଡ଼ି ଦେଲେ । ଅଗଷ୍ଟ ୨୭ ତାରିଖରେ ସଂଗ୍ରାମୀ ପଦ୍ମନାଭ ରାୟ, ବୈଦ୍ୟନାଥ ଦାଶ, ଗୋପୀନାଥ ସାହୁ, ଦୁର୍ଯ୍ୟୋଧନ ରାଉତ ପ୍ରମୁଖଙ୍କ ନେତୃତ୍ୱରେ ଦଶରଥପୁର, ବିଂଝାରପୁର ଓ ଯାଜପୁରର ବିପ୍ଳବୀମାନେ ଯାଜପୁର ଟାଉନ ଆଡ଼କୁ ଅଗ୍ରସର ହେଲେ । ଏ ଖବର ପାଇ ଯାଜପୁରର ସମସ୍ତ ସରକାରୀ ଅଫିସ ବନ୍ଦ କରି ଦିଆଗଲା । ପରିସ୍ଥିତିର ମୁକାବିଲା ପାଇଁ ଯାଜପୁରଠାରେ ଥିବା ସମସ୍ତ ପୋଲିସଙ୍କୁ ଏକତ୍ର କରି ଏସ୍. ଡ଼ି.ଓ. ଅଫିସ ପାଖରେ ରଖାଗଲା ଏବଂ କୌଣସି ସଭା ଓ ଶୋଭାଯାତ୍ରା ନକରିବା ପାଇଁ ସରକାରୀ ଆଦେଶ ଜାରି କରାଗଲା । କିନ୍ତୁ ସରକାରୀ କଟକଣାକୁ ଭ୍ରୂକ୍ଷେପ ନକରି ପ୍ରାୟ ୧୦ ହଜାର ଲୋକ ଏସ୍.ଡ଼ି.ଓ ଅଫିସ ଆଡ଼କୁ ମାଡ଼ି ଆସିଲେ । ପୋଲିସ ବାହିନୀଠାରୁ ମାତ୍ର ୫୦ ଗଜ ଦୂରରେ ଶୋଭାଯାତ୍ରା ଅଟକିଗଲା । ବିରାଟ ଜନସମୁଦ୍ରକୁ ଦେଖି ପୋଲିସ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଜନତାଙ୍କ ମଧ୍ୟରୁ କେତେଜଣ କଂଗ୍ରେସ କର୍ମୀ ଆଗକୁ ଆସି ପୋଲିସ ଓ ସରକାରୀ କର୍ମଚାରୀଙ୍କୁ ଚାକିରିରୁ ଇସ୍ତଫା ଦେଇ ସଂଗ୍ରାମରେ ସାମିଲ ହେବାକୁ ପ୍ରବର୍ତ୍ତାଇଲେ । କ୍ରମଶଃ ଉତ୍ତେଜନା ବୃଦ୍ଧି ପାଇଲା ଓ ପୋଲିସ ଜନତାଙ୍କୁ ଘଉଡାଇ ପାଇଁ ଗୁଳି ଚାଳନା କରିବାକୁ ପ୍ରସ୍ତୁତ ହୋଇ ରହିଲେ । କିନ୍ତୁ ଯାଜପୁରର ଏସ୍.ଡ଼ି.ଓ ଧୈର୍ଯ୍ୟ ଓ ସାହସର ସହ ବିପ୍ଳବୀ ନେତାମାନଙ୍କ ପାଖକୁ ଆସି ସେମାନଙ୍କର କଥା ଶୁଣି ଫେରିଯିବାକୁ ପ୍ରବର୍ତ୍ତାଇଲେ । ବିପ୍ଳବୀ ନେତା ପଦ୍ମନାଭ ରାୟ ଏସ୍.ଡ଼ି.ଓଙ୍କୁ ଖଦଡ଼ ପିନ୍ଧାଇଲେ । ଏତିକି ବେଳେ ଆକାଶରେ ଉଡ଼ାଜାହାଜ ଚକର ଦେଲା ଓ ଜନତା ଏକତ୍ରିତ ହୋଇଥିବା ସ୍ଥାନରେ ଡିନାମାଇଟ୍ ନିକ୍ଷେପ କଲା । ଫଳରେ ଭୟଭୀତ ହୋଇ ଜନତା

ଛତ୍ରଭଙ୍ଗ କଲେ । ଐତିହାସିକଙ୍କ ମତରେ ଯାଜପୁର ଛଡ଼ା ଅନ୍ୟ କୌଣସି ସ୍ଥାନରେ ଡ଼ିନାମାଇଟ୍ ନିକ୍ଷେପ କରି ବିପ୍ଳବୀମାନଙ୍କୁ ଘଉଡ଼ାଇ ଦିଆଯାଇଥିବାର ଦୃଷ୍ଟାନ୍ତ ନାହିଁ । ଯାହା ହେଲେ ବି ଯାଜପୁରର ତତ୍କାଳୀନ ଏସ୍.ଡ଼ି.ଓ. ରତ୍ନାକର ଷଡ଼ଙ୍ଗୀଙ୍କର ଉପସ୍ଥିତ ବୁଦ୍ଧି ଓ ଅସୀମ ଧୈର୍ଯ୍ୟ ଯୋଗୁ ଏକ ଗୁରୁତର ପରିସ୍ଥିତିକୁ ଏଡ଼ାଇ ଦିଆଯାଇ ପାରିଥିଲା ।

ଜଣେ ଐତିହାସିକଙ୍କ ମତରେ - ''The Coolness and patience of the S.D.O. and his teeth in handling one of the biggest crowd (Probably the biggest) that assembled in Orissa during the August Revolution helped to a great extent to event a situation with otherwise would have been disastrous.''

ସେହି ଘଟଣା ପରେ ମଧ୍ୟ ପ୍ରାୟ ୫ ହଜାର ଲୋକ ରାମବାଗ ପର୍ଯ୍ୟନ୍ତ ଶୋଭାଯାତ୍ରାରେ ଯାଇ ସେଠାକାର ପୋଷ୍ଟ ଅଫିସକୁ ପୋଡ଼ି ଦେଲେ । ଅଗଷ୍ଟ ୨୮ ତାରିଖରେ ଜେନାପୁରଠାରେ ବିପ୍ଳବୀମାନେ ନାଳବନ୍ଧର ଟେଲିଫୋନ ଓ ଟେଲିଗ୍ରାମ ତାର କାଟି ଦେଇ ସେବା ବ୍ୟବସ୍ଥା ଅଚଳ କରିଦେଲେ । ସରକାରୀ ରିପୋର୍ଟ ଅନୁସାରେ କେବଳ ଅଗଷ୍ଟ ମାସ ଶେଷ ସପ୍ତାହରେ ଯାଜପୁର ସବ୍‌ଡ଼ିଭିଜନରେ ୭୧ଟି ବିପ୍ଳବାତ୍ମକ ଘଟଣା ଘଟିଥିଲା ।ସେଥିମଧ୍ୟରେ ୨୬ଟି ସ୍ଥାନରେ ପୋଲିସ ପୋଷାକ ପୋଡ଼ି, ୬ଟି ଜଙ୍ଗଲ ଅଫିସ, ୪ଟି ପୂର୍ତ୍ତବିଭାଗ ବଂଗଳା, ୪ଟି ଡ଼ାକଘର ପୋଡ଼ି, ୫ଟି ସ୍ଥାନରେ ଅବକାରୀ ଦୋକାନ ଲୁଟ ଓ ପୋଡ଼ି, ୬ଟି ଜମିଦାରୀ କଚେରିରେ ଅଗ୍ନିସଂଯୋଗ, ଗୋଟିଏ ମେଲ ଡକାୟତି ଓ ଦୁଇଟି ଶସ୍ୟାଗାର ଲୁଣ୍ଠନ ଅନ୍ତର୍ଭୁକ୍ତ ।

ଏହି ଆନ୍ଦୋଳନ ପରେ ଯାଜପୁର ଅଞ୍ଚଳରେ ସରକାରଙ୍କ ପକ୍ଷରୁ ଅତ୍ୟନ୍ତ କଠୋର ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ପୋଲିସର ଦମନଲୀଳାକୁ ପ୍ରତିରୋଧ କରିବା ପାଇଁ କେତେକ ଗ୍ରାମର ଯୁବକମାନେ ସଂଘବଦ୍ଧ ହୋଇଥିଲେ । କାଉପଡ଼ା ଗୁଳିକାଣ୍ଡ ପରେ ବରୀ ଅଞ୍ଚଳରେ ବନ୍ଧୁକଧାରୀ ପୋଲିସ ମୁତୟନ ହୋଇଥିଲେ । ବରୀ ଆଶ୍ରମକୁ ବେଆଇନ ଘୋଷଣା କରି ସେବାଶ୍ରମର ପ୍ରାୟ ଛଅ ହଜାର ଟଙ୍କାର ଜିନିଷପତ୍ର ପୋଲିସ ନଷ୍ଟ କରି ଦେଇଥିଲେ । ବରୀ ଅଞ୍ଚଳରେ ବ୍ୟାପକ ଗିରଫଦାରୀ ଓ ଦମନମୂଳକ ଅତ୍ୟାଚାର ଚାଲିଥିଲା । ବନ୍ଧୁକଧାରୀ ପୋଲିସ ସହାୟତାରେ ବରୀ ସମେତ ଚାରୋଟି ଗ୍ରାମରୁ ମୋଟ୍ ପାଞ୍ଚହଜାର ଟଙ୍କା ସମୂହ ଜୋରିମାନା ଆଦାୟ କରାଯାଇଥିଲା । ବରୀ ଅଞ୍ଚଳରୁ ୭୨ ଜଣ ପୁରୁଷ ଓ ୧୨ ଜଣ ମହିଳା ଏପରି ୮୪ ଜଣଙ୍କୁ ଗିରଫ କରାଯାଇ ସେଥିମଧ୍ୟରୁ ୨୯ଜଣ ପୁରୁଷ ଓ ୩ ଜଣ ମହିଳାଙ୍କୁ ଅଟକ ବନ୍ଦୀ ରଖାଯାଇଥିଲା । ୪୩ ଜଣ ପୁରୁଷ ଓ ୯ ଜଣ ମହିଳା ମୋଟ୍ ୫୨ ଜଣ ବ୍ୟକ୍ତିଙ୍କୁ ବିଚାରରେ ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା । ସରକାର ଲୋକଙ୍କ ଉପରେ ପିଟୁଣୀ ଟିକସ ବସାଇଥିଲେ ।

ଦଶରଥପୁର ଅଞ୍ଚଳରେ ପୋଲିସର ଦମନମୂଳକ ଅତ୍ୟାଚାର ବେଶୀ ମାତ୍ରାରେ ଛତ୍ରପଡ଼ା ଗ୍ରାମରେ ହୋଇଥିଲା । ବିପ୍ଳବୀ ନେତା ପଦ୍ମନାଭ ରାୟ ଆତ୍ମଗୋପନ କଲେ । କିନ୍ତୁ ଅହିୟାସ-କସ୍ପା ଗ୍ରାମରୁ ବିପ୍ଳବୀ ଭଗବାନ ସାହୁଙ୍କୁ ପୋଲିସ ଗିରଫ କରି ଅହିୟାସ ହାଇସ୍କୁଲ ଟିଣ ଘର ମଧ୍ୟରେ ତାଙ୍କ ଉପରେ ଅକଥନୀୟ ଅତ୍ୟାଚାର କଲେ । ଘରର ଲୁହା କଡ଼ିରେ ତାଙ୍କର ଗୋଡ଼ ଉପରକୁ ଓ ମୁଣ୍ଡ ତଳକୁ କରି ଟଙ୍ଗାଇ ଦିଆଯାଇ ତଳେ ନିଆଁ ଲଗାଇ ଦିଆଗଲା । ଏହାପରେ ତାଙ୍କୁ ଯାଜପୁର ଆଣି ଛାତିରେ ପଥର ଲଦି ଓ ନଖରେ ପିନ୍‌କଣ୍ଟା ପୋଡ଼ି ବହୁ ନିର୍ଯ୍ୟାତନା ଦେଇଥିଲେ । ସ୍ୱାଧୀନତା ସଂଗ୍ରାମରେ ସେ ଓଡ଼ିଶାରେ ସର୍ବାଧିକ ୩୨ ବର୍ଷ ଜେଲଦଣ୍ଡ ଭୋଗିଥିଲେ । ଯାଜପୁରର ଏହି ସଂଗ୍ରାମୀ ଭଗବାନ ସାହୁ ୧୯୭୨ ମସିହାରେ ଭାରତର ସ୍ୱାଧୀନତା ପ୍ରାପ୍ତିର ପଚିଶ ବର୍ଷ ଉପଲକ୍ଷେ ସ୍ୱାଧୀନତା ସଂଗ୍ରାମରେ ସ୍ମରଣୀୟ ଯୋଗଦାନ ପାଇଁ ସ୍ୱାଧୀନତା ଦିବସରେ ଦିଲ୍ଲୀଠାରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଇନ୍ଦିରା ଗାନ୍ଧୀଙ୍କଠାରୁ ତାମ୍ରପତ୍ର ପାଇ ସମ୍ମାନିତ ହୋଇଥିଲେ । ତାଙ୍କର ନିମନ୍ତ୍ରଣପତ୍ରରେ ଓଡ଼ିଶା-୧ ବୋଲି ଲେଖାଯାଇଥିଲା ।

୧୯୪୭ ଅକ୍ଟୋବର ଶେଷବେଳକୁ ବିପ୍ଳବରେ ଶିଥିଳତା ଦେଖାଯାଇଥିଲା । ପ୍ରାୟ ସମସ୍ତ ବିପ୍ଳବୀ କାରାରୁଦ୍ଧ ହେବା ଫଳରେ ବିପ୍ଳବର ଅଗ୍ନି ପ୍ରଶମିତ ହେବାକୁ ଲାଗିଲା । ତେବେ ସେହି ସମୟରେ ବିଂଝାରପୁରର କିଶନ୍ ନଗର ଗ୍ରାମରେ ସ୍ୱାସ୍ଥ୍ୟ ବିଭାଗ କର୍ମଚାରୀ ପାତ୍ରଙ୍କ, ଯାଜପୁର ରୋଡ଼ ଓ ଜେନାପୁର ମଧ୍ୟରେ ରେଳଲାଇନରୁ ୪୦ଟି ଫିସ ପ୍ଲେଟ ଓ ୪୦ଟି ଚାବି କାଢ଼ି ନିଆଯାଇଥିଲା ।

ଭାରତଛାଡ଼ ଆନ୍ଦୋଳନରେ ଯାଜପୁରବାସୀଙ୍କ ଭୂମିକା ବିପ୍ଳବ ଇତିହାସରେ ଅତୁଳନୀୟ । ଆନ୍ଦୋଳନର ପ୍ରଥମ ଦିନରେ ହିଁ ରମା ଦେବୀଙ୍କ ସହ ବରୀ ସେବାଶ୍ରମର ପ୍ରଭାବତୀ ଦେବୀ, ବିମଳା ଦେବୀ, ଷେତ୍ରମଣି ଦେବୀ ପ୍ରଭୃତି ଗିରଫ ହୋଇ ନାରୀମାନଙ୍କ ମଧ୍ୟରେ ପ୍ରେରଣା ସୃଷ୍ଟି କରିଥିଲେ । ସମଗ୍ର ଯାଜପୁର ସବ୍‌ଡ଼ିଭିଜନରେ ଭାରତଛାଡ଼ ଆନ୍ଦୋଳନ ଏକ ସ୍ୱତଃସ୍ଫୂର୍ତ୍ତ ଗଣ ବିଦ୍ରୋହର ରୂପ ଧାରଣ କରିଥିଲା । ଇଂରେଜ ସରକାରଙ୍କୁ ବିରୋଧ କରିବା ପାଇଁ ସାଧାରଣ ଲୋକେ ଏଠି ଯେଉଁଳି ସାହସର ସହିତ ଆଗେଇ ଆସିଥିଲେ, ତାହା ଶାସନକଳକୁ ଦୋହଲାଇ ଦେଇଥିଲା ।

---

ଗ୍ରାମ - ସିଦ୍ଧେଶ୍ୱର,
ପତ୍ରାଳୟ - ରାମବାଗ
ଜିଲ୍ଲା - ଯାଜପୁର

# ଆଜାଦ୍ ହିନ୍ଦ୍ ଫୌଜର ଓଡ଼ିଆ ଯୋଦ୍ଧା ଚକ୍ରଧର ପରିଡ଼ା

*ଶ୍ରୀ ବ୍ରଜ ପାଇକରାୟ*

**ଭା**ରତୀୟ ମୁକ୍ତି ସଂଗ୍ରାମର ଅନନ୍ୟ ଯୋଦ୍ଧା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପ୍ରତିଷ୍ଠିତ ଆଜାଦ୍ ହିନ୍ଦ୍ ଫୌଜର ପୂର୍ବତନ ଓଡ଼ିଆ ରିକ୍ରୁଟିଂ ଅଫିସର ଏବଂ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ଚକ୍ରଧର ପରିଡ଼ା ପୂର୍ବତନ ଗଡ଼ଜାତ ରାଜ୍ୟ ରଣପୁର ଏବଂ ସଂପ୍ରତି ନୟାଗଡ଼ ଜିଲ୍ଲା ଅନ୍ତର୍ଗତ ଗଡ଼ ବାଣିକିଲୋ ଗ୍ରାମର ବିଶୋୟୀ ସାମନ୍ତ ହରିହର ପରିଡ଼ା ଏବଂ ଶ୍ରୀମତୀ ତାରା ଦେବୀଙ୍କ କନିଷ୍ଠ ପୁତ୍ର ରୂପେ ୧୯୧୯ ମସିହା ଫେବୃଆରୀ ମାସ ୮ ତାରିଖ ଦିନ ଜନ୍ମିତ ହୋଇଥିଲେ । ରଣପୁର ପ୍ରଜା ଆନ୍ଦୋଳନର ବିଦ୍ରୋହୀ ନେତା ଏବଂ ବ୍ରିଟିଶ ପଲିଟିକାଲ ଏଜେଣ୍ଟ ମେଜର ବେଜେଲଗେଟ ହତ୍ୟାକାଣ୍ଡରେ ଅଭିଯୁକ୍ତ ହୋଇ ଫାଶୀ ବରଣ କରିଥିବା ଶହୀଦ ଦିବାକର ପରିଡ଼ାଙ୍କର ସେ କନିଷ୍ଠ ଭ୍ରାତା । ଶ୍ରୀ ପରିଡ଼ା ଜଣେ ସୁସଂଗଠକ ଏବଂ ସମାଜସେବୀ ଭାବେ ରଣପୁର ଅଞ୍ଚଳରେ ସୁପରିଚିତ ।



୧୯୩୮ ମସିହାର କଥା । ତତ୍‌କାଳୀନ ଗଡ଼ଜାତ ରାଜ୍ୟ ରଣପୁରରେ ବିପ୍ଳବୀ ଦିବାକରଙ୍କ ନେତୃତ୍ୱରେ ପ୍ରଜା ଆନ୍ଦୋଳନ କ୍ରମଶଃ ତେଜି ଉଠୁଥାଏ । ସଂଗ୍ରାମୀ ଚକ୍ରଧର ଜ୍ୟେଷ୍ଠ ଭ୍ରାତାଙ୍କ ନିର୍ଦ୍ଦେଶରେ ବ୍ରିଟିଶ ସରକାର ଏବଂ ରଣପୁର ରାଜାଙ୍କ ଅନୁଗତ ପ୍ରଜା ଓ ଅତ୍ୟାଚାରୀ ରାଜ କର୍ମଚାରୀମାନଙ୍କ ଗତିବିଧି ସଂପର୍କରେ ଗୁପ୍ତ ତଥ୍ୟ ସଂଗ୍ରହ ସହ ବିଭିନ୍ନ ସ୍ୱାଧୀନତା ସଂଗ୍ରାମୀଙ୍କ ସହ ଯୋଗସୂତ୍ର ରକ୍ଷା କରୁଥାଆନ୍ତି । ଏକଥା କୌଣସି ସୂତ୍ରରୁ ରଣପୁର ରାଜାଙ୍କ କାନକୁ ଗଲା । ସଂଗ୍ରାମୀ ଚକ୍ରଧରଙ୍କୁ ଗିରଫ କରିବା ପାଇଁ ରାଜାଙ୍କ ଦାରୋଗା ଗିରଫ ପରୱାନା ଜାରି କଲେ । ସେତେବେଳେ ଚକ୍ରଧର ଥିଲେ ଦେଶିଙ୍ଗ ହାଇସ୍କୁଲର ଛାତ୍ର । ଗିରଫ ଏଡ଼ାଇବା ପାଇଁ ଚକ୍ରଧର ନିଜ ଗ୍ରାମ ଗଡ଼ବାଣିକିଲୋକୁ ନ ଆସି ଖୋର୍ଦ୍ଧା ଖାସ୍ ମାହାଲ୍ ଅନ୍ତର୍ଗତ ଗୌଡ଼ିଆପଡ଼ା ଗ୍ରାମରେ ନିଜ ବଡ଼ ଭଉଣୀଙ୍କ ଘରେ ଅବସ୍ଥାନ କରୁଥିଲେ ।

୧୯୩୮ ମସିହା ଜାନୁୟାରୀ ମାସ ୫ ତାରିଖ ପୌଷ ପୂର୍ଣ୍ଣିମା ଦିନ ଓଡ଼ିଶା ଗଡ଼ଜାତ ସମୂହର ପଲିଟିକାଲ ଏଜେଣ୍ଟ ମେଜର ବେଜେଲଗେଟ ରଣପୁର ପ୍ରଜାମାନଙ୍କ ଲାଠି ମାଡ଼ରେ ନିହତ ହେବାରୁ ବ୍ରିଟିଶ ପୋଲିସ୍ ବିପ୍ଳବୀ ଦିବାକର ଏବଂ ତାଙ୍କର କନିଷ୍ଠ ଭ୍ରାତା ଦ୍ୱୟ ସଂଗ୍ରାମୀ ରତ୍ନାକର ଏବଂ ସଂଗ୍ରାମୀ ଚକ୍ରଧରଙ୍କୁ ଗିରଫ କରିବା ପାଇଁ ଖୋଜି ବୁଲିଲେ । ରତ୍ନାକର ଗୁପ୍ତରେ ଓଡ଼ିଶାରୁ କଲିକତା ଯାଇ ସେଠାରେ ଆତ୍ମଗୋପନ କଲେ ଏବଂ ଚକ୍ରଧର ଓଡ଼ିଶାରୁ କଲିକତା ଯାଇ କଲିକତାରୁ ଜଳଜାହାଜ ଯୋଗେ ବର୍ମା ଚାଲିଗଲେ । ବର୍ମାରେ ପହଞ୍ଚିବାପରେ ରାଜଧାନୀ ରେଙ୍ଗୁନ ସହରର ୨୭ ନମ୍ବର ଗଳିରେ ଥିବା ଏକ ଓଡ଼ିଆ ହୋଟେଲରେ ସେ କିଛିଦିନ ପାଇଁ ରହିଲେ । କାଳକ୍ରମେ ସେଠାରେ ରହୁଥିବା ଗଂଜାମ ଜିଲ୍ଲା ବୋଇରାଣୀର ହରିହର ପଟ୍ଟନାୟକଙ୍କ ସହ ସଂଗ୍ରାମୀ ଚକ୍ରଧରଙ୍କର ସାକ୍ଷାତ ହେଲା । ସେ ସମୟରେ ହରିହର ପଟ୍ଟନାୟକଙ୍କର ଏକ ଓଡ଼ିଆ ପ୍ରେସ ରେଙ୍ଗୁନ ସହରର ୩୭ ନମ୍ବର ଗଳିରେ ଥିଲା । ସଂଗ୍ରାମୀ ଚକ୍ରଧର ଉକ୍ତ ପ୍ରେସ୍‌ରେ ମାସିକ ଟ଼ଂ୧୫.୦୦ ବେତନରେ ନିଯୁକ୍ତି ପାଇ ରହିଲେ । ଉକ୍ତ ପ୍ରେସରେ କାର୍ଯ୍ୟ କରୁଥିବା ସମୟରେ ବର୍ମାର ତରେଇଠାରେ ହେଣ୍ଡାମାଇନ ନାମକ ଏକ ଲୁହାଖଣିରେ ମାଟ୍ରିକ ପର୍ଯ୍ୟନ୍ତ ପାଠ ପଢ଼ିଥିବା ଲୋକମାନଙ୍କୁ ସୁବିଧାରେ ଚାକିରି ମିଳି ପାରୁଛି ବୋଲି ସମ୍ବାଦ ପାଇ ସେଠାକୁ ଚାଲିଗଲେ ଏବଂ

ହେଣ୍ଡାମାଉନର ୱାର୍କସପରେ ଜଣେ ମେକାନିକ ଭାବେ ନିଯୁକ୍ତି ପାଇଲେ । ସେ ସମୟକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇ ସାରିଥାଏ । ଜାପାନୀ ସୈନିକମାନେ ବର୍ମା ଆକ୍ରମଣ କରିଆଥାନ୍ତି । ୧୯୪୧ ମସିହା ଡ଼ିସେମ୍ବର ମାସ ୧୧ ତାରିଖରେ ବର୍ମାର ତଭେଇଠାରେ ଥିବା ଏକ ତେଲ ଟାଙ୍କିକୁ ଜାପାନୀ ସୈନିକମାନେ ବୋମା ମାଡ଼କରି ଧ୍ୱଂସ କରି ଦେଇଥିଲେ । ସଂଗ୍ରାମୀ ଚକ୍ରଧର କବିତା ମାଧ୍ୟମରେ ଏ ସଂପର୍କରେ ଲେଖିଥିଲେ-

''ସନ ଉଣେଇଶ ଭାଇ, ଏକ ଚାଳିଶ
ତାରିଖ ଏଗାର ସେ ଡ଼ିସେମ୍ବର ମାସ ହେ
ଏହି ଦିବସେ;
ଜାପାନୀ ବୋମାଯାନେ ଆସି ଆକାଶେ ହେ
ଏହି ଦିବସେ;
ଆକାଶ ମାର୍ଗରୁ ଯେ ବୋମା ପକାଇ
ତଭେଇ ତେଲ ଟାଙ୍କି ଦେଲେ ଜଳାଇ ହେ ।''

ତଭେଇଠାରେ ଜାପାନୀମାନଙ୍କ ବୋମାବର୍ଷଣ ପରେ ସେ ଅଞ୍ଚଳକୁ ସଂଗ୍ରାମୀ ଚକ୍ରଧର କେତେକ ସାଥୀଙ୍କ ସହ ଥରେ ଯାଇଥିଲେ । ସେ ସମୟକୁ ଉକ୍ତ ଅଞ୍ଚଳ ଜାପାନୀମାନଙ୍କ ଦ୍ୱାରା ଅଧିକୃତ ହୋଇ ସାରିଥିଲା । ସଂଗ୍ରାମୀ ଚକ୍ରଧର ଏବଂ ତାଙ୍କ ସାଥୀମାନେ ଅକସ୍ମାତ ଜାପାନୀ ସୈନ୍ୟମାନଙ୍କ ହାବୁଡ଼ରେ ପଡ଼ିଗଲେ । ଜାପାନୀମାନେ ଏମାନଙ୍କୁ ବନ୍ଧୁକ ଦେଖାଇ ଠିଆ ହେବା ପାଇଁ ନିର୍ଦ୍ଦେଶ ଦେଲେ । ହେଲେ ଏମାନେ ସବୁ ଭାରତୀୟ ବୋଲି ଜାଣିବା ପରେ ଏମାନଙ୍କର କିଛି କ୍ଷତି ନକରି ସେମାନଙ୍କ ସାଙ୍ଗରେ ଯିବା ପାଇଁ ଇସାରା ଦେଲେ । ସଂଗ୍ରାମୀ ଚକ୍ରଧର ଉକ୍ତ ସୈନିକମାନଙ୍କ ସହ ତଭେଇଠାରୁ ମିଆଁଉ ମିଆଁ ସହରକୁ ଗଲେ । ସେଠାରେ ବ୍ରିଟିଶ ସୈନ୍ୟମାନଙ୍କ ବିରୁଦ୍ଧରେ ଜାପାନୀ ସୈନ୍ୟମାନଙ୍କର ଯୁଦ୍ଧ ଲାଗିଥାଏ । ମିଆଁଉ ମିଆଁ ସହର ଛାଡ଼ି ଜାପାନୀମାନଙ୍କ ସହ ଚକ୍ରଧର ପେଗୁ ସହର ଏବଂ ତତ୍‌ପରେ ରେଙ୍ଗୁନ ଗଲେ । ରେଙ୍ଗୁନ ସହର ବର୍ମାର ରାଜଧାନୀ । ସେଠାରେ Indian Independent League ନାମରେ ଏକ ସଂଗଠନ ଭାରତର ସ୍ୱାଧୀନତା ପାଇଁ କାର୍ଯ୍ୟ କରୁଥାଏ । ସଂଗ୍ରାମୀ ଚକ୍ରଧର ପ୍ରଥମେ Indian Independent League ସହ ସଂପୃକ୍ତ ହେବାପରେ ପରବର୍ତ୍ତୀ କାଳରେ ନେତାଜୀ ସୁଭାଷଙ୍କ ଦ୍ୱାରା ସଂଗଠିତ Indian National Army (I.N.A) ବା ଆଜାଦ ହିନ୍ଦ ଫୌଜରେ ଯୋଗ ଦେଇଥିଲେ ।

୧୯୪୩ ମସିହା ଜୁଲାଇ ୫ ତାରିଖରେ ନେତାଜୀ ସିଙ୍ଗାପୁରରେ ପହଞ୍ଚି ସେଇ ବର୍ଷ ଅକ୍ଟୋବର ୨୧ ତାରିଖରେ ବ୍ରିଟିଶ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ନେତାଜୀ ସିଙ୍ଗାପୁର ଆସିବା ବେଳକୁ ସେଠାରେ ପ୍ରାୟ ପଚାଶ ହଜାର ଭାରତୀୟ ସୈନ୍ୟ ଯୁଦ୍ଧ ବନ୍ଦୀ ଭାବରେ ଜେଲ୍‌ରେ ସଢୁଥିଲେ । ୧୯୪୪ ମସିହା ଜାନୁୟାରୀ ମାସ ୭ ତାରିଖରେ ନେତାଜୀ ବର୍ମାରେ ପହଞ୍ଚିଲେ । ସଂଗ୍ରାମୀ ଚକ୍ରଧର ତାଙ୍କର ଓଡ଼ିଆ ସାଥୀମାନଙ୍କ ସହ ନେତାଜୀ ସୁଭାଷଙ୍କୁ କାମ୍ୟେଇଠାରେ ସାକ୍ଷାତ କରି ନିଜର ପରିଚୟ ପ୍ରଦାନ କଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସଂଗ୍ରାମୀ ଚକ୍ରଧରଙ୍କୁ ଓଡ଼ିଆ ଲୋକ ଜାଣି ଆନନ୍ଦ ପ୍ରକାଶ କଲେ ଏବଂ ତାଙ୍କୁ ଆଜାଦ୍ ହିନ୍ଦ୍ ଫୌଜରେ ରିକ୍ରୁଟିଂ ଅଫିସର ଭାବେ ନିଯୁକ୍ତି ଦେଲେ । ସଂଗ୍ରାମୀ ଚକ୍ରଧର କାମ୍ୟେଇଠାରେ ଅବସ୍ଥିତ ଯୁଦ୍ଧ ଟ୍ରେନିଂ ସେଣ୍ଟରରେ ଯୁଦ୍ଧ ବିଦ୍ୟା ତାଲିମ ପାଇଲେ ।

ଆଜାଦ୍ ହିନ୍ଦ୍ ଫୌଜ ରେଙ୍ଗୁନଠାରୁ ପେଗୁ ବାଟ ଦେଇ ଭାରତର ଆସାମ ସୀମା ଅଞ୍ଚଳକୁ ଅଗ୍ରସର ହେଲେ ଏବଂ ବ୍ରିଟିଶ ସେନାଙ୍କୁ ଯୁଦ୍ଧରେ ପରାଜିତ କରି କୋହିମା, ଡ଼ିମାପୁର ଏବଂ ଡ଼ିଡ଼ିମ୍ ଖଣି ଅଞ୍ଚଳ ଇତ୍ୟାଦି ଦଖଲ କରିବାକୁ ସମର୍ଥ ହେଲେ । ଆଜାଦ୍ ହିନ୍ଦ୍ ଫୌଜରେ ଗାନ୍ଧୀ ବ୍ରିଗେଡ୍, ନେହେରୁ ବ୍ରିଗେଡ୍, ସୁଭାଷ ବ୍ରିଗେଡ୍ ଏବଂ ଝାନ୍‌ସୀରାଣୀ ଲକ୍ଷ୍ମୀ ବାଇ ବ୍ରିଗେଡ଼ ଇତ୍ୟାଦି ବିଭିନ୍ନ ବ୍ରିଗେଡ଼ ରହିଥିଲା । ସଂଗ୍ରାମୀ ଚକ୍ରଧର ସୁଭାଷ ବ୍ରିଗେଡ଼ରେ ସାମିଲ ହୋଇ ମେଜର ପ୍ରେମ ସିଂହଙ୍କ ନେତୃତ୍ୱରେ ବ୍ରିଟିଶ ସେନା ବିରୁଦ୍ଧରେ ଲଢୁଥିଲେ । ଜାପାନର ହିରୋସୀମା ଏବଂ ନାଗାସାକି ସହର ଉପରେ ଆମେରିକା ବୋମାବର୍ଷଣ କରିବା ଫଳରେ ଜାପାନ ଯୁଦ୍ଧରେ ପରାଜିତ ହେଲା । ନେତାଜୀ ଜାପାନ ସରକାରଙ୍କ ସହ ଚୁକ୍ତି କରିଥିଲେ ଯେ ଆଜାଦ ହିନ୍ଦ୍ ଫୌଜକୁ ଜାପାନୀ ସେନା ଆବଶ୍ୟକ ସ୍ଥଳେ ସହାୟତା ପ୍ରଦାନ କରିବେ । ହେଲେ ୨ୟ ବିଶ୍ୱଯୁଦ୍ଧରେ ଜାପାନୀମାନେ ମିତ୍ର ଶକ୍ତିଠାରୁ ପରାଜିତ ହେବାରୁ ଆଜାଦ୍ ହିନ୍ଦ୍ ଫୌଜକୁ ସାମରିକ କିମ୍ବା ଅର୍ଥନୈତିକ କ୍ଷେତ୍ରରେ ସାହାଯ୍ୟ କରି ପାରିଲେନି । ପ୍ରତିକୂଳ ପାଗ ଏବଂ ଉପଯୁକ୍ତ ଯୁଦ୍ଧ ସରଞ୍ଜାମ ଅଭାବରେ ଆଜାଦ ହିନ୍ଦ୍ ଫୌଜ୍ ବ୍ରିଟିଶ ସେନା ଦ୍ୱାରା ପରାଜୟ ବରଣ କଲେ ।

ସଂଗ୍ରାମୀ ଚକ୍ରଧର ୧୯୪୫ ମସିହା ମାର୍ଚ୍ଚମାସ ୧୮ ତାରିଖରେ ବ୍ରିଟିଶ ସେନା ଦ୍ୱାରା ଯୁଦ୍ଧ ବନ୍ଦୀ ଭାବରେ ରେଙ୍ଗୁନ ଜେଲ୍‌ରେ ରହିଲେ । ୧୯୪୬ ମସିହା ମାର୍ଚ୍ଚ ମାସ ୨୪ ତାରିଖରେ ରେଙ୍ଗୁନ ଜେଲରୁ ଯୁଦ୍ଧ ବନ୍ଦୀ ଥିବା ଆଜାଦ ହିନ୍ଦ୍ ଫୌଜର ସୈନିକ ମାନଙ୍କୁ ମୁକ୍ତ କରାଯିବା ଫଳରେ ସଂଗ୍ରାମୀ ଚକ୍ରଧର ମୁକ୍ତି ପାଇ ଜଳଜାହାଜ ଯୋଗେ ଭାରତ ଫେରି ଆସିଲେ । ସେ ସମୟରେ କଲିକତାଠାରେ ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନଙ୍କୁ ସେମାନଙ୍କର ଦେଶପ୍ରେମ ଯୋଗୁଁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଯାଉଥିଲା । ନେତାଜୀ ସୁଭାଷଙ୍କ ଭାଇ ଶରତ ବୋଷଙ୍କ ନେତୃତ୍ୱରେ ଗଠିତ ଏକ ରିଲିଫ କମିଟି ତରଫରୁ ଆଜାଦ୍ ହିନ୍ଦ୍ ଫୌଜର ସୈନିକ ମାନଙ୍କୁ ବାଟ ଖର୍ଚ୍ଚ ଦିଆଯାଇ ସ୍ୱ ଜନ୍ମସ୍ଥାନକୁ ପଠାଇ ଦିଆଯିବାର ବ୍ୟବସ୍ଥା କରାଯାଇଥିଲା । ଚକ୍ରଧର କଲିକତାରୁ ଟ୍ରେନ ଯୋଗେ କଟକ ଫେରିଲେ । ଆଜାଦ ହିନ୍ଦ୍ ଫୌଜର ସୈନିକମାନଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ କଟକ ଟାଉନ ହଲ୍‌ଠାରେ ମଧ୍ୟ ଏକ ସଭାର ଆୟୋଜନ କରାଯାଇଥିଲା । ଚକ୍ରଧର ଉକ୍ତ ସଭାରେ ଯୋଗଦାନ କରି ସେଠାରେ ଉପସ୍ଥିତ ଥିବା ଡ଼ଃ ହରେକୃଷ୍ଣ ମହତାବ, ପବିତ୍ର ମୋହନ ପ୍ରଧାନ, ନବକୃଷ୍ଣ ଚୌଧୁରୀ ଏବଂ ସୁଧୀର ବୋଷଙ୍କୁ

ସାକ୍ଷାତ କରିଥିଲେ । ଡ଼ଃ ମହତାବ ଚକ୍ରଧରଙ୍କ ପରିଚୟ ପାଇବା ପରେ ୧୯୪୮ ମସିହାରେ ତାଙ୍କୁ ହୀରାକୁଦ ଡ୍ୟାମରେ ନିଯୁକ୍ତି ପ୍ରଦାନ କରିଥିଲେ । ପରବର୍ତ୍ତୀ ସମୟରେ ସେ ରାଉରକେଲା ଇସ୍ପାତ କାରଖାନାରେ ଆସିଷ୍ଟାଣ୍ଟ ଫୋରମ୍ୟାନ ଭାବରେ ଚାକିରି କରିଥିଲେ । ୧୯୮୦ ମସିହାରେ ଚାକିରିରୁ ଅବସର ଗ୍ରହଣ କରି ସେ ଜନ୍ମସ୍ଥାନ ଗଡ଼ବାଣିକିଲୋକୁ ପ୍ରତ୍ୟାବର୍ତ୍ତନ କଲେ । ୧୯୮୨ ମସିହାରେ ସ୍ଥାନୀୟ ଜନସାଧାରଣଙ୍କ ଅନୁରୋଧ କ୍ରମେ ସଂଗ୍ରାମୀ ଚକ୍ରଧର ପଞ୍ଚାୟତ ନିର୍ବାଚନରେ ଲଢ଼ି ଭଣପୁର ବ୍ଲକ ଅନ୍ତର୍ଗତ ଖଇରାପଲି ଗ୍ରାମ ପଞ୍ଚାୟତର ସରପଞ୍ଚ ଭାବେ ନିର୍ବାଚିତ ହୋଇ ସମାଜସେବା କାର୍ଯ୍ୟରେ ନିଜକୁ ନିୟୋଜିତ କଲେ । ୧୯୮୬ ମସିହାରେ ଚକ୍ରଧର ଆଜାଦ୍ ହିନ୍ଦ୍ ଫୌଜର ପୂର୍ବତନ ସୈନିକମାନଙ୍କୁ ସଂଗଠିତ କରି Ex-Indian National Army Association ଗଠନ କରିଛନ୍ତି ଏବଂ ଉକ୍ତ ଅନୁଷ୍ଠାନର ସଭାପତି ଦାୟିତ୍ୱ ବହନ କରିଛନ୍ତି । ସଂଗ୍ରାମୀ ଚକ୍ରଧରଙ୍କୁ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଉଲ୍ଲେଖନୀୟ ଅବଦାନ ପାଇଁ ୧୯୮୨ ମସିହା ଏବଂ ୧୯୮୮ ମସିହାରେ ଯଥାକ୍ରମେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏବଂ ପ୍ରଧାନ ମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ସ୍ୱାଧୀନତା ସଂଗ୍ରାମୀ ତାମ୍ର ସନନ୍ଦ ଓ ମାନପତ୍ର ପ୍ରଦାନ କରି ସମ୍ମାନିତ କରିଛନ୍ତି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମଧ୍ୟ ଶ୍ରୀ ପରିଡ଼ାଙ୍କୁ ମାନପତ୍ର ଏବଂ ଉପାୟନ ପ୍ରଦାନ କରି ସମ୍ବର୍ଦ୍ଧିତ କରିଛନ୍ତି ।

---

ସଭାପତି
ରାଜ୍ୟ ସ୍ତରୀୟ ଶହୀଦ ରଘୁ-ଦିବାକର ସ୍ମୃତି କମିଟି
୩୪୦, ଜାଗମରା (ବରବାରି), ଭୁବନେଶ୍ୱର - ୩୦

# ଆମେ ସ୍ୱାଭିମାନୀ ବୀର ଓଡ଼ିଆ

*ଶ୍ରୀମତୀ ଅମୂଲ୍ୟବାଳା ପଟ୍ଟନାୟକ*

ଲହୁ, ଲୁହ
ତ୍ୟାଗ, ତପସ୍ୟା, ସାଧନା, ସଂଗ୍ରାମର ପ୍ରତୀକ
'ସମ୍ବିଧାନ' ତଳେ ଶପଥ ନେଉଛୁ
ଆମେ ସ୍ୱାଭିମାନୀ
ପୂର୍ବ ଗର୍ବ ଗୌରବର ଅଧିକାରୀ
ଉତ୍ତରଦାୟାଦ୍ ଆମେ କୀର୍ତ୍ତିମାନ ବୀର ଓଡ଼ିଆର ।
'ଏଇ ଆମ ଓଡ଼ିଶା ମାଆଟି' !!
ସାରା ଜଗତରେ କେତେ ତାର ଖ୍ୟାତି,
କି ଉନ୍ନତ ତାର ଭାଷା, ସଂସ୍କୃତି, ସଭ୍ୟତା
କି ମଧୁର ତା ଅତୀତ ଗାଥା ।
ଏହି ଆମ 'ମାଟି ମାଆର' କୋମଳ ସ୍ପର୍ଶରେ
ଚଣ୍ଡାଶୋକର' ବକ୍ଷବିଦାରି ବାହାରି ଆସିଥିଲା
କ୍ରୁର ସମତାଭିପ୍ସୁ ହିଂସ୍ରକ ଭାବସରାଟି,
ପୁନରୁତ୍ଥାନ ଘଟିଥିଲା ବୁଦ୍ଧବାଣୀ, ଅହିଂସାର ଜୟ, ଧର୍ମର ଜୟ,
ଆଉ, ଦେଶେ-ଦେଶେ ବ୍ୟାପି ଯାଇଥିଲା ଶାଖା, ପ୍ରଶାଖା ମେଲାଇ ।
ଏଇ' ମାଟିର ସନ୍ତାନ ଦିଗ୍‌ବିଜୟୀ ବୀର ଖାରବେଳ,
ବିଜୟ କେତନ ଉଡ଼ାଇ, ମଥାରେ ଦୀପ୍ତିମନ୍ତ ତିଳକ ସଜାଇ,
ମାଡ଼ି ଚାଲିଥିଲେ ଆଗକୁ ଆଗକୁ
ପଛଘୁଞ୍ଚା ନଥିଲା ସେ ବୀର ସନ୍ତାନର ।
ଦୀନବନ୍ଧୁ ଗୋପବନ୍ଧୁ, ଜାତିପ୍ରାଣ ମଧୁ
ଭାଷାପ୍ରାଣ ଫକୀର ମୋହନ,
ସୁରାଜ୍ୟର ପାଇଁ ଏ ଜାତିକୁ କରିଛନ୍ତି ଧନ୍ୟ ।
ଆମେ ବିଂଶ ଶତାବ୍ଦୀର
ଓଡ଼ିଶା ମାଟିର ସୁଯୋଗ୍ୟ ସନ୍ତାନ,
ଉଚ୍ଚ ଆସନରେ ନେଇ ରଖିବା ତା' ମର୍ଯ୍ୟାଦାକୁ
ତାର ଐତିହ୍ୟ ଓ ଆଭିଜାତ୍ୟକୁ
ସାରା ଜଗତକୁ ଦେଖାଇ ଦେବା
କେତେ ସ୍ୱାଭିମାନୀ ଏ ବୀର ଓଡ଼ିଆ ।

'ମନମହଲ' ବ୍ରହ୍ମପୁର
ଜିଲ୍ଲା - ଗଞ୍ଜାମ



ସଚିବାଳୟ ସମ୍ମିଳନୀ କକ୍ଷରେ ଆହୁତ ଜିଲ୍ଲାପାଳ ସମ୍ମିଳନୀରେ ମୁଖ୍ୟ ଶାସନ ସଚିବ
ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଓ ରାଜ୍ୟ ମୁଖ୍ୟ ନିର୍ବାଚନ ଅଧିକାରୀ ଶ୍ରୀ ଅର୍ଦ୍ଧେନ୍ଦୁ ଶେଖର ପଟ୍ଟନାୟକ
ଭାଷଣ ଦେଉଛନ୍ତି



ଓଡ଼ିଶାରେ ଏକ ଚିକିତ୍ସା ମହାବିଦ୍ୟାଳୟ ଓ ହସ୍ପିଟାଲ ନିର୍ମାଣ ନିମନ୍ତେ ସ୍ଥାନ ନିରୂପଣ ପାଇଁ
ଅଷ୍ଟ୍ରେଲିଆରୁ ଆସିଥିବା ଏକ ପ୍ରତିନିଧିଦଳଙ୍କୁ ଯୋଜନା ଓ ଲୋକସମ୍ପର୍କ ଶାସନ ସଚିବ
ଶ୍ରୀ ପ୍ରସନ୍ନ କୁମାର ହୋତା 'ଏବଂ' ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଶାସନ ସଚିବ
କୁମାରୀ ମୀନା ଗୁପ୍ତା ଭୁବନେଶ୍ୱର ବିମାନ ବନ୍ଦରଠାରେ ସ୍ୱାଗତ ସମ୍ବର୍ଦ୍ଧନା ଜଣାଉଛନ୍ତି



ସ୍ୱାଧୀନତା ସଂଗ୍ରାମୀ ଓ ସମାଜ ସେବିକା, ବିଶ୍ୱଭାରତୀ ଦ୍ୱାରା ଦେଶିକୋତ୍ତମ ଉପାଧିରେ ସମ୍ମାନିତା ଯଶସ୍ୱିନୀ ମାଳତୀ ଚୌଧୁରୀ



ମୟୂରଭଞ୍ଜ ଜିଲ୍ଲାର ଦଣ୍ଡବୋସ ପଲ୍ଲୀର ନୃତ୍ୟରତା ସାନ୍ତାଳୀ କନ୍ୟାମାନେ

## ଜୟନ୍ତୀ ଶ୍ରଦ୍ଧାସୁମନ



ସୁରେନ୍ଦ୍ର ସାଏ



ବକ୍ସି ଜଗବନ୍ଧୁ



କଥା ସମ୍ରାଟ ବ୍ୟାସକବି ଫକୀର ମୋହନ



ଚନ୍ଦନ ହଜୁରୀ (ବୁଦ୍ଧି ଖୁଣ୍ଟିଆ)





ନୂଆଦିଲ୍ଲୀ ଓଡ଼ିଶା ଭବନଠାରେ ଚୀନ୍ ଶିଳ୍ପ ଓ ବାଣିଜ୍ୟ ସଂଘର ଅଧ୍ୟକ୍ଷ ଓ ଅନ୍ୟ ପ୍ରତିନିଧିମାନେ
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ସାକ୍ଷାତ କରି ଦ୍ୱିପାକ୍ଷିକ ବାଣିଜ୍ୟ ଅଭିବୃଦ୍ଧି
ସମ୍ପର୍କରେ ଆଲୋଚନା କରୁଛନ୍ତି

# ମହାନ୍ ସ୍ୱାଧୀନତା ସଂଗ୍ରାମୀ ଯଦୁମଣି ମଙ୍ଗରାଜ

*ଶ୍ରୀ ସମରେନ୍ଦ୍ର ବଳିଆର ସିଂହ*

ଯଦୁମଣି ମଙ୍ଗରାଜ - ନାଁରେ କ'ଣ କିମିଆ ଥିଲା କେଜାଣି, କାହିଁ କେତେଦୂରରୁ ଲୋକେ ଆସନ୍ତି ତାଙ୍କ ମୁଖ ନିଃସୃତ ଭାଷଣ ଶୁଣିବାକୁ, ତାଙ୍କ ସହ ଟିକେ ମିଶିବାକୁ ଓ ତାଙ୍କ ଆଶୀର୍ବାଦ ଲାଭ କରିବାକୁ । ପୁରୁଷସିଂହ ଥିଲେ ସେ । ଚେହେରାରେ ଯେପରି, କଥାରେ ସେପରି- କାମରେ ମଧ୍ୟ ସେପରି । ଅପ୍ରିୟ ସତ୍ୟକଥା କହୁଥିଲେ ସେ । 'ଦ୍ୱିତୀୟ ଯଦୁମଣି' ଥିଲେ ସେ । ଉତ୍କଳ ଘଣ୍ଟ ଯଦୁମଣିଙ୍କ ପରି ବ୍ୟଙ୍ଗୋକ୍ତି କରି ପାରୁଥିଲେ । ଶତ୍ରୁକୁ ମଧ୍ୟ ବନ୍ଧୁତ୍ୱର ରଜ୍ଜୁରେ ବାନ୍ଧି ପାରୁଥିଲେ । ସବୁର ମୂଳରେ ଥିଲା ତାଙ୍କର ଦେଶ, ଜାତି ଓ ଭାଷା ପାଇଁ ମମତା ଓ ଆବେଗର ସ୍ୱର ।

ଖ୍ରୀ ୧୮୯୪ ଜାନୁୟାରୀ ୧ ତାରିଖରେ ଏହି ମହାପୁରୁଷ ଭୂମିଷ୍ଠ ହୋଇଥିଲେ କେନ୍ଦ୍ରାପଡ଼ା ଜିଲ୍ଲାର ଲୁଣାନଦୀ ତଟବର୍ତ୍ତୀ କରିଲୋପାଟଣା ଗ୍ରାମର ଭିକାରୀ ଚରଣ ମଙ୍ଗରାଜଙ୍କ ଚତୁର୍ଥ ସନ୍ତାନଭାବେ । କନିକାର ରାଜା ମାଇନର ସ୍କୁଲରେ ପଢୁଥିବା ବେଳେ ସେ ୧୯୦୭ ମସିହାରେ ବ୍ରାହ୍ମଣୀ ନଦୀ ବନ୍ୟା ବିପନ୍ନ ଲୋକଙ୍କ ସେବା କରିବା ପାଇଁ ପଣ୍ଡିତ ଗୋପବନ୍ଧୁ, ଗୋଦାବରୀଶ ଓ ନୀଳକଣ୍ଠ ଆଦିଙ୍କ ସହ ବନ୍ୟା ପ୍ରପୀଡ଼ିତ କନିକା ଅଞ୍ଚଳରେ ସାହାଯ୍ୟ କରିଥିଲେ । ଜଣେ ମେଧାବୀ ଛାତ୍ର ଭାବରେ ସେ କଟକ ପ୍ୟାରିମୋହନ ଏକାଡେମୀରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ କରି ରେଭେନ୍ସା କଲେଜ (ତତ୍କାଳୀନ ପାଟଣା ବିଶ୍ୱବିଦ୍ୟାଳୟ)ରୁ ଆଇ.ଏସ.ସି. ଏବଂ ବିହାର ବିଦ୍ୟାପୀଠରୁ ବି.ଏସ.ସି. ପାଶ କରିଥିଲେ ।

ସଂଗ୍ରାମୀ ଯଦୁମଣି ରେଭେନ୍ସା କଲେଜରେ ଅଧ୍ୟୟନ ସମୟରୁ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦେଲେ । ସେ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ଅର୍ଥଦଣ୍ଡରେ ଦଣ୍ଡିତ ହେବା ସଙ୍ଗେ ସଙ୍ଗେ କାରାବରଣ କରିଥିଲେ । ଗାନ୍ଧିଜୀଙ୍କର ବାର୍ତ୍ତାକୁ ଲୋକମାନଙ୍କ ନିକଟରେ ପ୍ରଚାର କଲେ । ସେ ୧୯୨୪ରେ କେନ୍ଦ୍ରାପଡ଼ା ଲୋକାଲ ବୋର୍ଡର ସଭାପତି, ମ୍ୟୁନିସପାଲିଟି କାଉନସିଲର ଗୁରୁଦାୟିତ୍ୱ ବହନ କରି ସମାଜ ସେବା କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ସେ ସମୟରେ କନିକା ଜମିଦାରଙ୍କ ପକ୍ଷରୁ ୬୪ ପ୍ରକାର କର ଆଦାୟ ସହ ବେଠି ବେଗାରୀ, ମାଗଣ, ରସଦ ଆଦି ନାନାଦି ଅନ୍ୟାୟ ଜୁଲୁମ ହେଉଥିଲା । ଜମିଦାରଙ୍କ ପକ୍ଷରୁ ହେଉଥିବା ଶୋଷଣ, କଷଣ ଓ ନିଷ୍ପେଷଣ ଆଦିରେ ପ୍ରଜାକୁଳ ଅତିଷ୍ଠ ହୋଇ ତ୍ରାହି ତ୍ରାହି ଡାକ ଛାଡୁଥିଲେ । ସଂଗ୍ରାମୀ ବୀର ଯଦୁମଣିଙ୍କୁ ପ୍ରଜାମାନଙ୍କ ଉପରେ ହେଉଥିବା ଅତ୍ୟାଚାର ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରିବା ଯୋଗୁଁ କାରାବରଣ କରିବାକୁ ପଡ଼ିଥିଲା । ଖ୍ରୀ ୧୯୨୮ ଡିସେମ୍ବର ମାସରେ ପଣ୍ଡିତ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ କଲିକତାଠାରେ ଏକ ସର୍ବଦଳୀୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ଯଦୁମଣି ମଙ୍ଗରାଜ ଯୋଗ ଦେଇଥିଲେ । ଏଠାରେ ଓଡ଼ିଶା ପ୍ରଦେଶ ଗଠନ ପ୍ରତି ଗୁରୁତ୍ୱ ଦିଆ ନଯିବାରୁ ସେ କ୍ଷୁବ୍ଧ ହୋଇ ଓଡ଼ିଆମାନଙ୍କୁ ସଂଗଠିତ କରି ଏକ ବିକ୍ଷୋଭ ଶୋଭାଯାତ୍ରା ବାହାର କଲେ । ଏଥିରେ ନେତାଜୀ ସୁଭାଷ ବୋଷ ଓ ଜବାହରଲାଲ ନେହେରୁ ମିଳାମିଶା ସମାଧାନ କରିବା ପରେ ଯଦୁମଣି ଶାନ୍ତ ହୋଇ ଥିଲେ ଏବଂ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରସଙ୍ଗ ଉକ୍ତ ସଭାର କାର୍ଯ୍ୟସୂଚୀରେ ସ୍ଥାନ ପାଇଥିଲା । ଓଡ଼ିଶା ସୀମା ନିର୍ଦ୍ଧାରଣ ପାଇଁ ଆସିଥିବା ଓଡ଼ନେଲ କମିଟି ଆଗରେ ସେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ନିମନ୍ତେ ବହୁ ଅକାଟ୍ୟ ଦଲିଲ ଓ ଯୁକ୍ତି ଉପସ୍ଥାପନ କରିଥିଲେ ।

ବିପ୍ଳବୀ ଯଦୁମଣି ଖ୍ରୀ ୧୯୩୦ରେ ଆଇନ ଅମାନ୍ୟ ଆନ୍ଦୋଳନ ତଥା ଲବଣ ସତ୍ୟାଗ୍ରହରେ ଯୋଗ ଦେଲେ । ଏହି ସମୟରେ କଟକ ସହରରେ କୌଣସି ସଭାରେ ଭାଷଣ ନଦେବା ପାଇଁ ଅଦମନୀୟ ନେତା ଯଦୁମଣିଙ୍କ ଉପରେ ୧୪୪ ଧାରା ଜାରି ହୋଇଥିଲା । ଯଦୁମଣି ବାଲେଶ୍ୱରର ଇଞ୍ଚୁଡ଼ିଠାରେ ଲୁଣ ମାରି ହଜାରିବାଗ ଜେଲରେ କାରାବରଣ କଲେ । ଜେଲରେ ତାଙ୍କ ସହ ରାଜେନ୍ଦ୍ର ପ୍ରସାଦ ବନ୍ଦୀ ହୋଇଥିଲେ । ସେ ୧୯୪୩ ମସିହାରେ ମହାତ୍ମାଗାନ୍ଧୀଙ୍କୁ ନିକିରାଇ ଆଣି ଏକ ବିରାଟ ସଭା କରାଇଥିଲେ । ଗାନ୍ଧିଜୀଙ୍କର ସେ ଅତି ପ୍ରିୟ ଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଉତ୍କଳ ପ୍ରାଣ ମଙ୍ଗରାଜଙ୍କ ଉଦ୍ୟମ ଅବିସ୍ମରଣୀୟ । ଉତ୍କଳ ସମ୍ମିଳନୀ ମଞ୍ଚରେ ମଂଜୁଷା, ତରଳା, ଟେକାଲି, ବୁଡ଼ାସିଙ୍ଗାର, ବସ୍ତର, ବିନ୍ଦ୍ରା ନୂଆଗଡ଼, ଫୁଲଝର, ମେଦିନୀପୁର, ସଢ଼େଇକଳା ଖରସୁଆଁ ଓ ସୁରଗୁଜା ଆଦି ଅଞ୍ଚଳକୁ ଓଡ଼ିଶାରେ ମିଶାଇବା ପାଇଁ ତାଙ୍କର ଦମ୍ଭୋକ୍ତି ଜନସାଧାରଣଙ୍କୁ ଶତ

ଗୁଣରେ ଉତ୍ସାହିତ କରୁଥିଲା । ସ୍ୱାଧୀନଚେତା ମଙ୍ଗରାଜ ମେଦିନୀପୁର ଠାରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ସପକ୍ଷରେ ସଭା କରୁଥିବାବେଳେ କୁଚକ୍ରୀମାନଙ୍କ ଦ୍ୱାରା ମାଡ଼ ଖାଇ ଆହତ ହୋଇଥିଲେ ମଧ୍ୟ ସେଥିରୁ ବିରତ ହୋଇ ନଥିଲେ ।

ଖ୍ରୀ ୧୯୩୭ ରେ ବିଧାନ ସଭା ନିର୍ବାଚନରେ ସେ ବହୁ ଅଧିକ ଭୋଟ ପାଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ମନ୍ତ୍ରିମଣ୍ଡଳରେ ଅର୍ଥ ବିଭାଗର ପାର୍ଲାମେଣ୍ଟ ସେକ୍ରେଟାରୀ ଭାବେ କାର୍ଯ୍ୟ କରି ସେ କର୍ମଦକ୍ଷତାର ପରାକାଷ୍ଠା ପ୍ରଦର୍ଶନ କରିଥିଲେ ।

ନେତାଜୀ ସୁଭାଷ ବୋଷଙ୍କ ସହ ବାଗ୍ମୀ ଯଦୁମଣିଙ୍କ ବନ୍ଧୁତା ସ୍ଥାପିତ ହେଲା ୧୯୩୯ ମସିହାରେ । ସେ ସୁଭାଷଙ୍କ ଗଠିତ ଓଡ଼ିଶା ଶାଖା ଫରୱାର୍ଡ ବ୍ଲକର ମୁଖ୍ୟ ଦାୟିତ୍ୱରେ ରହିଲେ । କଟକ ମ୍ୟୁନିସପାଲିଟି ପଡ଼ିଆରେ ବାଗ୍ମୀ ପ୍ରବର ଯଦୁମଣି ମଙ୍ଗରାଜ ଓ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଉଦ୍‌ବୋଧନ ସମବେତ ଜନତାଙ୍କ ହୃଦୟ ସ୍ପର୍ଶ କରିଥିଲା ।

ସରେଇକଳା ଓ ଖରସୁଆଁ ଓଡ଼ିଶାରୁ ଯାଇ ବିହାରରେ ମିଶିବାରୁ ସୀମା ଆନ୍ଦୋଳନ ବ୍ୟାପକ ରୂପ ନେଇଥିଲା । ଏଥିରେ ସୁନାଲ ଓ ବେଙ୍ଗ- ପାଣିଆ ଆଦି ଶହୀଦ ହେଲେ । ୧୯୫୬ ଖ୍ରୀଷ୍ଟାବ୍ଦର ଏହି ଆନ୍ଦୋଳନରେ ଯଦୁମଣି ପ୍ରମୁଖ ଭୂମିକା ନେଇଥିଲେ । ୧୯୫୬ ମସିହାରେ ବଡ଼ଚଣା ନିର୍ବାଚନ ମଣ୍ଡଳୀରୁ ବିଧାୟକ ରୂପେ ନିର୍ବାଚିତ ହୋଇ ସେ ବିଧାନସଭାର ଉପ-ବାଚସ୍ପତି ପଦ ଅଳଙ୍କୃତ କରିଥିଲେ । ତତ୍କାଳୀନ ବାଚସ୍ପତି ପଣ୍ଡିତ ନୀଳକଣ୍ଠ ଦାଶ ଅସୁସ୍ଥତା ହେତୁ ଅଧିକାଂଶ ସମୟ ବିଧାନସଭାରେ ଅନୁପସ୍ଥିତ ରହୁଥିବାରୁ ସେ ବିଧାନସଭା କାର୍ଯ୍ୟ ହାସ୍ୟରସ, ବାକ ଚାତୁରୀରେ ରସାଣିତ କରି ପରିଚାଳନା କରୁଥିଲେ । ଫଳରେ ତାଙ୍କୁ ମଙ୍ଗରାଜ ଖାନ, ରସରାଜ ଓ ମଙ୍ଗୁଆଳ ଆଦିଭାବେ ଅଭିହିତ କରାଯାଉଥିଲା ।

ସ୍ୱର୍ଗତ ମଙ୍ଗରାଜ ଜଣେ ବାଗ୍ମୀ, ଦେଶ ସେବକ, ସୁ ସଂଗଠକ ଭାବେ ପରିଚିତ ଥିଲେ ମଧ୍ୟ ତାଙ୍କର ସାରସ୍ୱତ ପ୍ରତିଭା କୌଣସି ଗୁଣରେ କମ୍ ନଥିଲା । ହାସ୍ୟ ରସିକ ଉତ୍କଳ ଘଣ୍ଟ କବି ଯଦୁମଣିଙ୍କ ପରି ସେ ମଧ୍ୟ ଜଣେ ଆଶୁ କବି ଥିଲେ । ସେ ବଜ୍ର ନିର୍ଘୋଷ କଣ୍ଠରେ ଗାନ କରୁଥିଲେ -

ବିଳାସ ବ୍ୟସନ ଛାଡ଼ି ହୁଅ ବ୍ରହ୍ମଚାରୀ
ତୁମ ପ୍ରଦୀପ ଅନଳେ ଜଳିଉଠୁ ପୁରୀ
\+ + + + + + +
ତଳେ ଛନ୍ତି ବସୁମାତା, ଉପରେ ଧର୍ମ ଦେବତା
ମନ ମଧ୍ୟେ ଭାବୁଥିବ, ଦେଶର ଅବସ୍ଥା

ବାଗ୍ମୀ ମଙ୍ଗରାଜ 'ଚନ୍ଦ୍ର ପ୍ରଭା' ନାମକ ଏକ ଉପନ୍ୟାସ ରଚନା କରିଥିଲେ ଓ ନାୟକ ନାମରେ ଏକ ପତ୍ରିକା ପ୍ରକାଶ କରୁଥିଲେ ।

ତାଙ୍କର ଇହଲୀଳା ସମ୍ବରଣ ୧୯୬୪ ମସିହା ଏପ୍ରିଲ ୨ ତାରିଖ ପର୍ଯ୍ୟନ୍ତ ସେ ଥିଲେ କର୍ମଯୋଦ୍ଧା । ଅନ୍ୟର ମଙ୍ଗଳ ପାଇଁ ସଦା ସର୍ବଦା ଚିନ୍ତା କରୁଥିବା ଏହି ମହାପୁରୁଷ ଯୁଗ ଯୁଗ ଧରି ସ୍ମରଣୀୟ ହୋଇ ରହିବେ ।

ଏମ୍-୨୩, ବି.ଡି.ଏ. କଲୋନୀ, ଖୋର୍ଦ୍ଧା
ଜି. - ଖୋର୍ଦ୍ଧା - ୭୫୨୦୫୫

## ରାଜ୍ୟସ୍ତରୀୟ ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନାର ସମୀକ୍ଷା ବୈଠକ

ଗତ ଜାନୁଆରୀ ୭ ତାରିଖ ଦିନ ସଚିବାଳୟସ୍ଥ ସମ୍ମିଳନୀ ପ୍ରକୋଷ୍ଠରେ ରାଜ୍ୟସ୍ତରୀୟ ପ୍ରଧାନ ମନ୍ତ୍ରୀଙ୍କ ରୋଜଗାର ଯୋଜନା (ପି.ଏମ୍.ଆର. ୱାଇ.) ର ଏକ ସମୀକ୍ଷା ବୈଠକ ଅନୁଷ୍ଠିତ ହୋଇଯାଇଛି । ଏଥିରେ ଅଧ୍ୟକ୍ଷତା କରି ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଏହି ଯୋଜନାରେ ସଂପୃକ୍ତ ହିତାଧିକାରୀମାନେ ଯେପରି ଠିକ ସମୟରେ ଋଣ ପାଇପାରିବେ ଏବଂ ଋଣ ଅର୍ଥ ଶୃଙ୍ଖଳାର ସହିତ ଆଦାୟ ହୋଇପାରିବ, ସେ ଦିଗରେ ବିହିତ ପଦକ୍ଷେପ ନେବାକୁ ପରାମର୍ଶ ଦେଇଥିଲେ । ଏହି ଯୋଜନାରେ ଜଗତସିଂହପୁର ଜିଲ୍ଲାରେ ପ୍ରଶଂସନୀୟ ଭାବେ ପଣ ଆଦାୟ କରାଯାଇ ପାରିଥିବାରୁ ସଂପୃକ୍ତ ଜିଲ୍ଲାପାଳଙ୍କୁ ପ୍ରଶଂସା ପତ୍ର ଦେବା ପାଇଁ ପରାମର୍ଶ ଦେଇଥିଲେ ।

ଓଡ଼ିଶାରେ ପ୍ରଧାନ ମନ୍ତ୍ରୀଙ୍କ ରୋଜଗାର ଯୋଜନାରେ ହିତାଧିକାରୀମାନଙ୍କୁ ବ୍ୟାଙ୍କ ଋଣ ଯୋଗାଇବାରେ ଏବଂ ଋଣ ଟଙ୍କା ଆଦାୟ କରିବାରେ ଯେଉଁ ସବୁ ଅସୁବିଧା ହେଉଛି, ସେ ସଂପର୍କରେ ବୈଠକରେ ସୁବିସ୍ତୃତ ଆଲୋଚନା କରାଯାଇଥିଲା । ବ୍ୟାଙ୍କ କର୍ତ୍ତୃପକ୍ଷ ଓ ହିତାଧିକାରୀମାନଙ୍କ ମଧ୍ୟରେ ଉତ୍ତମ ସଂପର୍କ ରହିପାରିଲେ ଏବଂ ଜାଣିଶୁଣି ଋଣ ପରିଶୋଧ ନକରି ଫାଙ୍କୁଥିବା ହିତାଧିକାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଗଲେ, ତାହା ଅନ୍ୟମାନଙ୍କ ପାଇଁ ଉତ୍କଟ ଦୃଷ୍ଟାନ୍ତ ହୋଇ ରହିବା ସଙ୍ଗେ ସଙ୍ଗେ ଭବିଷ୍ୟତରେ ଋଣ ଆଦାୟରେ ଅସୁବିଧା ହେବ ନାହିଁ ବୋଲି ଆଲୋଚନାରେ ମତ ପ୍ରକାଶ ପାଇଥିଲା । ଯେଉଁ ସବୁ ଜିଲ୍ଲାରେ ଋଣ ଆଦାୟ ହାର କମ୍, ସେହିସବୁ ଜିଲ୍ଲାର ଜିଲ୍ଲାପାଳମାନେ ବ୍ୟକ୍ତିଗତ ଯତ୍ନ ସହକାରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ, ଏହି ଯୋଜନା ସଫଳ ଭାବରେ କାର୍ଯ୍ୟ କରିପାରିବ ବୋଲି ମତ ପ୍ରକାଶ ପାଇଥିଲା ।

# ସଂଗ୍ରାମର ସ୍ମୃତି

ଭାରତର ସ୍ୱାଧୀନତା ପ୍ରାପ୍ତି ଜନଗଣଙ୍କର ସଂଗଠିତ ଶକ୍ତି ଓ ସଂଗ୍ରାମର ପରିଣତି । ଏହି ସଂଗ୍ରାମରେ ବିଦ୍ୟମାନ ସମାଜର ସବୁ ଶ୍ରେଣୀର ଜନସାଧାରଣଙ୍କର ବୈପ୍ଳବିକ ଅବଦାନ । ଅରଣ୍ୟରୁ ମହାନଗରୀ ପର୍ଯ୍ୟନ୍ତ ସର୍ବତ୍ର ପରିବ୍ୟାପ୍ତ ହୋଇ ଉଠିଥିଲା ବ୍ରିଟିଶ ଶାସନ ବିରୁଦ୍ଧରେ ମୁକ୍ତି-ଆନ୍ଦୋଳନର ଲେଲିହାନ ଶିଖା ।ଛାତ୍ର, ଯୁବକ, କୃଷକ-ଶ୍ରମିକ, ଶିକ୍ଷିତ-ମୂର୍ଖ, ବାଳକ-ବୃଦ୍ଧ, ନାରୀ-ପୁରୁଷ, ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଝାସ ଦେଇଥିଲେ ଜାତୀୟ ଜାଗରଣର ମହାପ୍ଲାବନରେ । ଦେଶର ଅନ୍ୟାନ୍ୟ ରାଜ୍ୟ ଭଳି ଓଡ଼ିଶା ସ୍ୱାଧୀନତା ସଂଗ୍ରାମରେ ଗ୍ରହଣ କରିଥିଲା ମହତ୍ତ୍ୱପୂର୍ଣ୍ଣ ଭୂମିକା । ମାତୃଭୂମିର ମୁକ୍ତି ପାଇଁ ଦେଶପ୍ରେମୀ ବୀର ସଂଗ୍ରାମୀମାନେ ହସି ହସି ବରଣ କରିଥିଲେ ଦାରୁଣ, ଦୁଃଖ, ଯନ୍ତ୍ରଣା ଓ ନିର୍ଯ୍ୟାତନା । ସେମାନଙ୍କ ଦୃଢ଼ ସଂକଳ୍ପ, କଠୋର ସଂଗ୍ରାମ, ଚରମ ତ୍ୟାଗ ଦେଶର ଭବିଷ୍ୟତ ବଂଶଧରଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ । ଓଡ଼ିଶାର ସଂଗ୍ରାମୀମାନଙ୍କର ସଂଘର୍ଷମୟ ଜୀବନ ଓ ଅବିସ୍ମରଣୀୟ ସ୍ମୃତିକୁ ଏହି ପୃଷ୍ଠାରେ ସ୍ଥାନ ଦେଇ ସେମାନଙ୍କ ପ୍ରତି ଏ ଜାତିର ଗଭୀର କୃତଜ୍ଞତା ଜ୍ଞାପନ କରୁଛୁ । ସଂଗ୍ରାମୀମାନଙ୍କ ସହ ସାକ୍ଷାତକାର ବିବରଣୀ ସଂଗୃହୀତ ହୋଇଥିଲା ସୂଚନା ଓ ଲୋକସଂପର୍କ ବିଭାଗ ପକ୍ଷରୁ ୧୯୯୧ ମସିହାରେ ।

ସଂପାଦକ

## ଭୈରବ ଚନ୍ଦ୍ର ମହାପାତ୍ର

୧୯୨୧ ମସିହାରେ ପ୍ରଥମେ ଯେତେବେଳେ ମହାତ୍ମାଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା, ମୁଁ ସେତେବେଳେ ରେଭେନ୍ସା କଲେଜରେ ପଢୁଥିଲି । ସେହିବର୍ଷ ମାର୍ଚ୍ଚ ମାସରେ କଲେଜ ଷ୍ଟ୍ରାଇକ୍ ହେଲା । ସେଇଠୁ ମୁଁ କଲେଜ ଛାଡ଼ିକରି ଆସିଛି । ଆଉ କଲେଜକୁ ଯାଇନାହିଁ । ଲୁଣମରା ଆନ୍ଦୋଳନରେ ମଧ୍ୟ ମୁଁ ଥିଲି । ଯେତେବେଳେ ପାଠଛାଡ଼ି କରି ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲି, ସେତେବେଳେ ପରିବାରର ଲୋକମାନେ ମୋତେ କେହି କିଛି କହିନଥିଲେ । ମୁଁ ସ୍ୱତଃପ୍ରବୃତ୍ତ ହୋଇ କଲେଜ ଛାଡ଼ି ବାଲେଶ୍ୱରକୁ ଆସିଲି । କିନ୍ତୁ ସେଠାରେ କଂଗ୍ରେସର କୌଣସି ଅନୁଷ୍ଠାନ ନଥିବାରୁ ମୁଁ ସେଠୁ ପାଟନା ପଳେଇଲି । ସବୁଆଡ଼େ ଇଂରେଜ ସାହେବମାନଙ୍କର ରାଜୁତି । ଆମ ଦେଶର ଲୋକଙ୍କ ପାଇଁ କାମ ନାହିଁ । ସେହି ସାହେବ ସବୁ ପାଉଥିବେ । ପିଲାଦିନରୁ ସେମାନଙ୍କ ପ୍ରତି ମୋର ଘୃଣାଭାବ ଥିଲା । ବଲଖେଳ ବେଳେ ପୋଲିସ ଗଲେ ଆମେ ତାକୁ ପିଟିଛୁ । ମୁଁ ଜଣେ ଖେଳାଳି ଥିଲି । ୧୯୧୮ ରେ ରାମଚନ୍ଦ୍ର ଭଞ୍ଜ ମେମୋରିଆଲ ଚାଲେଞ୍ଜ ସିଲ ପାଇଥିଲି । ଆମ ଦେଶରେ ଏତେ ଶିକ୍ଷିତ ଲୋକ ଥାଉ ଥାଉ ସେଟେଲମେଣ୍ଟ ଅଫିସର, ପୁଲିସ ସାହେବ, ଡିଷ୍ଟ୍ରିକ୍ଟ ଅଫିସର ସମସ୍ତେ ସାହେବ । ସେତେବେଳେ ଜାଲିଆନା ବାଗ୍ ହତ୍ୟାକାଣ୍ଡ ହୋଇଗଲା । ମେଦିନୀପୁର ଲୋକମାନେ କେବଳ ସାହେବଙ୍କୁ ଦେଖି ହତ୍ୟାକଲେ । ଆମେ ଦେଖିଲୁ ସେମାନେ ନିଶ୍ଚିତ କିଛି ବୁଝିଛନ୍ତି । ଖାଲି ସାହେବଗୁଡ଼ାଙ୍କୁ ମାରୁଛନ୍ତି କାହିଁକି ? ଜାଲିଆନା ୱାଲାବାଗ ହତ୍ୟା ପରେ ବହୁତ ଦୁଃଖ ହେଲା । ଶାସନ କରିବ ବୋଲି ଲୋକଙ୍କୁ ଶୁଖିଲାରେ ଗୁଳିକରି ମାରିବ । ଇଂରେଜ ସରକାର ଉପରେ ଆମର ବହୁତ କ୍ରୋଧ ଆସିଥିଲା । ସେତେବେଳେ କଂଗ୍ରେସର ଦୁଇଟି ଶାଖା ଥିଲା । ଗୋଟିଏ ପ୍ରଚାର ବିଭାଗ ଓ ଅନ୍ୟଟି ଗଠନ ବିଭାଗ । ଗଠନ ବିଭାଗରେ ମୋତେ ରଖାଯାଇଥିଲା । ମୁଁ ଭଲଭାବରେ ହିସାବପତ୍ର ରଖୁଥିଲି ।

ଗଠନମୂଳକ କାମ ପାଇଁ ଅନେକ ଟଙ୍କା ଥିଲା ।ସେଥିରେ ଲୋକେ ଅରଟ ତିଆରି କରୁଥିଲେ, ସୂତା କାଟୁଥିଲେ , ତନ୍ତ ଲୁଗା ବୁଣୁଥିଲେ । ଗଠନ ମୂଳକ କାମ ଯିଏ କରିବ, ପ୍ରଚାରକୁ ସିଏ ଯାଇ ପାରିବ ନାହିଁ । ଅଲ ଇଣ୍ଡିଆ ସ୍ପିନରର୍ସ ଆସୋସିଏସନ ବୋଲି ଗୋଟିଏ ଡିପାର୍ଟମେଣ୍ଟ ଥିଲା । ଭାରତବର୍ଷ ପାଇଁ ସେଥିରେ ଆମ ଓଡ଼ିଶା ପାଇଁ ସେକ୍ରେଟେରୀ ଥାନ୍ତି ବ୍ରହ୍ମପୁରର ନିରଞ୍ଜନ ପଟ୍ଟନାୟକ । ମୁଁ ସେଥିରେ ରହିଯିବାରୁ ପ୍ରଚାର କାର୍ଯ୍ୟରେ ଯୋଗ ଦେଇ ପାରିନାହିଁ । ଗଠନମୂଳକ କାମ ପାଇଁ ଟଙ୍କା ପଇସା ବହୁତ ଆସିଲା ବାହାରୁ । ତା'ର ଦାୟିତ୍ୱ ମୋ ଉପରେ ଥିଲା । ଲୁଣ ମରା ପାଇଁ ଟଙ୍କା ବଣ୍ଟା କାମ ମୋରି ଜରିଆରେ ହେଉଥିଲା । ଖଦଡ଼ ଦୋକାନରେ ସମସ୍ତେ ଆସି ଚିଠି ଦେଇଯାଆନ୍ତି । ଯାକୁ ଦବୁ, ତାକୁ ଦବୁ । ସେଠି ଥିଲା ମୋର ଆଡ୍ଡା । ପ୍ରତ୍ୟକ୍ଷ ଭାବରେ ଲୁଣ ମରାରେ ମୁଁ ଯୋଗ ଦେଇନାହିଁ ।

ମୁଁ ଖଦଡ଼ ଭଣ୍ଡାରରେ ରହିଲି ପୁରା ୧୫ ବର୍ଷ । ୪୨ ସାଲ ନଭେମ୍ବର ମାସ । ପିତାମ୍ବର ପାଣି ମୋତିଗଞ୍ଜ ପୋଷ୍ଟ ଅଫିସ ପୋଡ଼ିଲେ । ମୋତିଗଞ୍ଜ ପୋଷ୍ଟ ଅଫିସ ଆମ ଖଦଡ଼ ଭଣ୍ଡାରକୁ ଅତିପାଖ । ତା ପରଦିନ ମୋତେ ପୋଲିସ ଧରି ନେଇଗଲେ ।

ସେତେବେଳେ ଚାନ୍ଦିପୁର ନିକଟସ୍ଥ ପାତ୍ରପଡ଼ା ପାଖରେ ଗୋଟିଏ ବୋମା ପଡ଼ିଥିଲା । ତାର ଟୁକୁରା ଜିନିଷ ସବୁ ମୁଁ ସଂଗ୍ରହ କରିଥିଲି । ତାକୁ ଘରେ ରଖିଲେ ପୁଲିସ ଜାଣି ପାରିବ ବୋଲି ମୁଁ ତାକୁ ଆଉ ଜଣକୁ ଦେଇଥିଲି । ପ୍ରମାଣ ଅଭାବରୁ ଇଂରେଜ ସରକାର ତାର କିଛି କରି ପାରିଲେ ନାହିଁ । ୧୯୪୨ ସାଲରେ ମୁଁ ଜେଲ ଯାଇଥିଲି ୨୦ ମାସ । ୧୯୨୧ ସାଲରେ ଯେତେବେଳେ ବିଲାତି ଲୁଗା ପିକେଟିଂ ହେଉଥିଲା, ସେ ସମୟରେ ନଭେମ୍ବର ମାସ ପ୍ରଥମାଷ୍ଟମୀ ଦିନ ଆମ ୫ଜଣଙ୍କୁ ଜେଲ ହୋଇଗଲା । ସେମାନେ ହେଲେ, ହରେକୃଷ୍ଣ ମହତାବ, ମୁଁ, ଅଭିରାମ ନନ୍ଦ, ମଥୁରାମୋହନ ବେହେରା, ପୂର୍ଣ୍ଣଚନ୍ଦ୍ର ନାୟକ । ଜୋରିମାନା ହୋଇଥିଲା ୨୫ଟଙ୍କା । ୧୯୨୧ ରେ ମୁଁ ବାଲେଶ୍ୱର ଜେଲରେ ଥିଲି ପ୍ରଥମ ୧୫ ଦିନ । ୪୨ ମସିହାରେ ବ୍ରହ୍ମପୁର ଜେଲରେ ରହିଲି । ସେ ସମୟରେ ଜେଲ ପାଖରେ ରାତି ପ୍ରାୟ ଅଢ଼େଇଟା ତିନିଟାରେ ଗୋଟିଏ ବୋମା ପଡ଼ିଲା । ଆମେସବୁ ରହିଥିଲୁ ଚାଳଘର ଗୁଡ଼ାକରେ । ମାଟିକାନ୍ଥ । ସେ ଘର କମ୍ପିଗଲା । ଆମେ ସବୁ ଉଠିପଡ଼ିଲୁ। ସକାଳୁ ଜାଣିଲୁ ସେଠାରେ ପୋଲିସି ଫୋର୍ସ ଜମାହୋଇଛନ୍ତି । ଆମକୁ ଜେଲ ଜୀବନ ଖୁବ୍ ଆନନ୍ଦ ଲାଗୁଥିଲା । କିଛି କାମଦାମ ନଥିଲା । ସରକାର ଭଲ ଭାବରେ ରଖିଥିଲେ । ଆମକୁତ ସଜା ହୋଇନାହିଁ ଖାଲି ଅଟକବନ୍ଦୀ, ତେଣୁ ଆମକୁ ବହୁତ ସମୟ ମିଳୁଥିଲା । ମହତାବ ବାବୁ, ଲିଙ୍ଗରାଜ ମିଶ୍ର, ନିତ୍ୟାନନ୍ଦ କାନୁନଗୋ, ନିତ୍ୟାନନ୍ଦ ମହାପାତ୍ର, ବିବୁଧେନ୍ଦ୍ର ମିଶ୍ର, ନବକୃଷ୍ଣ ଚୌଧୁରୀ, ଆଚାର୍ଯ୍ୟ ହରିହର ପ୍ରମୁଖ ଯେତେ ମାନ୍ୟଗଣ୍ୟ ବ୍ୟକ୍ତି ସମସ୍ତେ ବ୍ରହ୍ମପୁର ଜେଲରେ ଥିଲେ । ବ୍ରହ୍ମପୁର ଜେଲରେ ଥିଲାବେଳେ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ହୋଇଥିଲା । ଆମେ ଯେଉଁ ଆଶା ଆକାଂକ୍ଷା ନେଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲୁ ତାହା ପୂରଣତ ହେବାର ନାହିଁ । ହୋଇ ପାରିବ ନାହିଁ । କାରଣ ସେ ସମୟରେ ଲୋକସଂଖ୍ୟା ବହୁତ କମ୍ ଥିଲା । ସେକାଳର ରାଜାଙ୍କୁ ଏବର ସାଙ୍ଗେ ତୁଳନା କଲେ ବୋଧେ ସେ କାଳର ଶାସନ ଥିଲା ଭଲ । ଆମର ଦେଶୀ ଲୋକ ଯେଉଁ ଶାସନ କଲେ କେହି କାମ କଲେ ନାହିଁ । ଖାଲି ଠକେଇଲେ । ସେମାନଙ୍କ ମଧ୍ୟରେ ନୈତିକତା ନାହିଁ । ତ୍ୟାଗ ନାହିଁ, ଦେଶପ୍ରୀତି ନାହିଁ, କାମ କରିବାର ଶକ୍ତି ନାହିଁ । ମୁଁ ଦେଖୁଛି ଦେଶ ଭଲ ଆଡ଼କୁ ଗତି କରୁନାହିଁ । ଭଲର ପୁରୁଷମାନେ କାହାକଥା କାହିଁକି ଶୁଣିବେ ? ସେମାନଙ୍କୁ କିଛି ଶିକ୍ଷା ଦିଆଯାଉନି । ତାଙ୍କ କାନ୍ଧରେତ ପଡ଼ିଲାନି, ବଢ଼େଇବ କିଏ ? ଶିକ୍ଷାପଦ୍ଧତି ଆମକୁ ବହୁତ ଅଦୁଆ କରିଦେଇଛି । ତ୍ୟାଗ କେହି ଶିଖିଲେନି । ସମସ୍ତେ ଭୋଗରେ ଚାଲିଲେ, ଯୁବଶକ୍ତିମାନଙ୍କୁ ମୋର ଏତିକିକଥା - ସେମାନେ ଦେଶପ୍ରେମୀ ହୁଅନ୍ତୁ । ନିଜେ ରହିବେ, ତାଙ୍କ ସାଙ୍ଗେ ଅଲଗା ଲୋକ ରହିବେ । ସେମାନଙ୍କ ଭିତରେ ଏହି ଭାବ ରହୁ । ମୁଁ ଏକାରହେ - ଏଇ ଭାବନାଟା ଗଲେ ଦେଶର ଅନେକ ଉପକାର ହୁଅନ୍ତା ।

ଜନ୍ମସ୍ଥାନ- ମଲ୍ଲିକାଶପୁର
ବାଲେଶ୍ୱର

## ଶ୍ରୀଧର ଦାସ

ମୁଁ ଏଗାର ବର୍ଷ ବୟସରେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲି । ସେତେବେଳେ ମୁଁ ସ୍କୁଲରେ ପଢୁଥିଲି । ସ୍କୁଲରେ ପଢ଼ିଲାବେଳେ ଖଦଡ଼ ପିନ୍ଧୁଥିଲି । ଗାନ୍ଧିଜୀଙ୍କ ବାର୍ତ୍ତା ପ୍ରଚାରପତ୍ରରୁ ପଢ଼େ । ତାକୁ ମୋ ସାଙ୍ଗ ପିଲାମାନଙ୍କୁ ପଢ଼ାଏ । ମୁଁ ଯେତେବେଳେ ୫ମ ଶ୍ରେଣୀରେ ପଢୁଥିଲି ଜଣେ ପୋଲିସ୍ ସବ୍‌ଇନ୍‌ସପେକ୍ଟର ମୋ ବାପାଙ୍କ ନାମରେ ଗୋଟିଏ ମିଛ ମକଦ୍ଦମା କରି ତାଙ୍କୁ ହଇରାଣ କରିଥିଲେ । ମୁଁ ସେହିଦିନୁ ନିଷ୍ପତ୍ତି କଲି, ପୋଲିସ୍‌କୁ ଉପଯୁକ୍ତ ଶିକ୍ଷା ଦେବା ଦରକାର । ସେହି ଧାରଣା ମୋ ମନରେ ପ୍ରଥମରୁ ୧୦/୧୧ବର୍ଷ ବୟସରୁ ରହିଲା ।

ସେତେବେଳେ ଲୋକଙ୍କ ନାଁରେ ମିଛ କହି ଲାଞ୍ଚ ଖାଇବା ପୁଲିସଙ୍କର ଏକମାତ୍ର କାର୍ଯ୍ୟ ଥିଲା । ମୋର ବାପା ପୋଲିସ ଅତ୍ୟାଚାର ପରେ ପରେ ମରିଗଲେ । ତାପରେ ମୁଁ ପାଠପଢ଼ା ଛାଡ଼ି ଦେଲି ୧୪/୧୫ ବର୍ଷ ବୟସରେ । ତେଣୁ ମୋର ଇଚ୍ଛା ଅନୁସାରେ ମୁଁ ଯାହା କରୁଥିଲି ମୋତେ କେହି କିଛି କହୁନଥିଲେ । ଘରେ ବୋଉ, ଭଉଣୀ ପୋଷ୍ୟପୁତ୍ର ଭାଇ । ମୁଁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାରେ କେହି ପ୍ରତିରୋଧ କରିନଥିଲେ ।

ଗ୍ରାମରେ ପଡ଼ୋଶୀ, ବନ୍ଧୁ ବାନ୍ଧବମାନେ କହିଲେ, କୁଳାଙ୍ଗାରଟା ବାପର ସବୁଯାକ ସମ୍ପତ୍ତି ବିକାବିକି ଆନ୍ଦୋଳନରେ ପଶିଛି । ସ୍କୁଲରେ ସହପାଠୀମାନେ ମୋତେ ଥଟ୍ଟା କଲେ । ମୋତେ ଗାନ୍ଧୀ ବୋଲି ଡାକିଲେ । ଗଡ଼ଜାତ ଆନ୍ଦୋଳନ ୧୯୩୮ ମସିହାରେ ଆରମ୍ଭ ହେଲା । ମୁଁ ସେ ଆନ୍ଦୋଳନରେ ନେତୃତ୍ୱ ନେଇ କାମ କଲି । ନୟାଗଡ଼ ରାଜାଙ୍କ ବିରୁଦ୍ଧରେ ମୁଁ ଆନ୍ଦୋଳନ କରୁଥିଲି । ସେତେବେଳେ ରାଜା ଲୋକଙ୍କୁ ନାମମାତ୍ର ପଇସାରେ ବେଠି କରାଉଥିଲେ । ମୁଁ ସେ ବେଠିର ପ୍ରତିବାଦ କରିବାରୁ ପୋଲିସର ଚକ୍ଷୁଶୂଳ ହେଲି । ଗାଁ ବାଲା ଭଲ ପାଉଲେନି । ଆନ୍ଦୋଳନରେ ସଫଳ ହୋଇ ନୟାଗଡ଼ରେ ମୁଁ ମନ୍ତ୍ରୀ ହେଲି । ମୋର ମନ୍ତ୍ରୀ ହେବାକୁ ଇଚ୍ଛା ନଥିଲା । ମୋତେ ଜବରଦସ୍ତି ମନ୍ତ୍ରୀ କରାଗଲା । ସେତେବେଳେ ମୋତେ ୨୪ ବର୍ଷ ବୟସ । ମୁଁ କାହିଁକି ମନ୍ତ୍ରୀ ହେଲି, ସେ ଦୁଃଖ ଏ ପର୍ଯ୍ୟନ୍ତ ମଧ୍ୟ ମୋର ମନରୁ ଯାଇନି । ନୟାଗଡ଼ ରାଜାଙ୍କ ଦରବାରରେ ମୁଁ ମନ୍ତ୍ରୀ ହୋଇଥିଲି ।

ଯେତେବେଳେ ଯୁଦ୍ଧହେଲା ସେ ଯୁଦ୍ଧଠାରୁ ୨/୩ ବର୍ଷ କାଳ ଘରେ ଅଟକବନ୍ଦୀ ରହିଲି । ଘରୁ କୁଆଡ଼େ ମୋତେ ଯିବାକୁ ପଡ଼ିଲାନି । ୧୯୪୨ ମସିହା ଜୁଲାଇ ମାସରେ ମୋ ଉପରୁ କଟକଣା ଉଠିଲା । କଟକଣା ଉଠିବା ସଙ୍ଗେ ସଙ୍ଗେ ମୁଁ ନଦୀ ଘରେ ସଭା କଲି । ଭାରତ ଛାଡ଼ ଆନ୍ଦୋଳନ ପାଇଁ ବକ୍ତୃତା ଦେଲି ।

ମୁଁ ରହିଲେ ଦେଶୀ ବିପ୍ଳବ ହେବ ବୋଲି ରାଜା ଜାଣିକରି ମୋତେ ସାଙ୍ଗେ ସାଙ୍ଗେ ଗିରଫ କରି ଜେଲକୁ ନେଇଗଲେ । ମୁଁ ଦେଢ଼ବର୍ଷ

ନୟାଗଡ଼ ଜେଲରେ ରହିଲି । ଜେଲ୍‌ଜୀବନ ଏକପ୍ରକାର ଆନନ୍ଦ ଲାଗୁଥିଲା । ପ୍ରତି ମୁହୂର୍ତ୍ତରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ମାଡ଼ ହେଉଥିଲା । ଖାଇବାକୁ ଯାହା ଦେବାର କଥା, ତାହା ଦିଆଯାଉନଥିଲା । ବଜାରରେ ଯେତେ ପରିତ୍ୟକ୍ତ ଜିନିଷ ପରିବା, ଡ଼ାଲି ସେସବୁ ଦିଆ ହେଉଥିଲା । ମୋ ସାଙ୍ଗରେ ନୟାଗଡ଼ ଜେଲ୍‌ରେ ୮୫ ଜଣ ସ୍ୱାଧୀନତା ସଂଗ୍ରାମୀ ଥିଲେ । ସେମାନଙ୍କ ଭିତରେ ଥିଲେ ବାଞ୍ଛାନିଧି ସେନାପତି, ଲକ୍ଷ୍ମଣ ମହାରଣା, ନରସିଂହ ନନ୍ଦ, କୁବେର ସାହୁ, ଭରତ ସାହୁ, ଉଦୟ ନାଥ ପୃଷ୍ଟି, ରାମ ମହାନ୍ତି, ଲକ୍ଷ୍ମଣ ଭୂୟାଁ, ଶ୍ୟାମ ସୁନ୍ଦର ସାହୁ, ନାରାୟଣ ଚନ୍ଦ୍ର ସ୍ୱାଇଁ, ସୁଦର୍ଶନ ସ୍ୱାଇଁ, କସ୍ତୁରୀ ପରିଡ଼ା, ବୁନ୍ଧି ପରିଡ଼ା, ରଘୁନାଥ ଜାନି, ପୂର୍ଣ୍ଣଚନ୍ଦ୍ର ମଳିକ ଇତ୍ୟାଦି ।

ଆମର ସଂଗ୍ରାମ କେବଳ ନୟାଗଡ଼ ଅଞ୍ଚଳ ଭିତରେ ସୀମିତ ଥିଲା । ବେରୋବୋଇରେ ମହାତ୍ମାଗାନ୍ଧି ସେବା ସଂଘର ବୈଠକ ହୋଇଥିଲା । ସେହି ବୈଠକରୁ ପ୍ରେରଣା ପାଇ ମୁଁ ଆନ୍ଦୋଳନରେ ଯୋଗ ଦେଇଥିଲି । ଆମେ ଆଶା କରୁଥିଲୁ ସ୍ୱାଧୀନ ଭାରତରେ ସବୁ ଲୋକ ସୁଖରେ ରହିବେ । ଭଲ ଘର ଖଣ୍ଡିଏ ପାଇବେ । ଉଚ୍ଚଶିକ୍ଷା ପାଇବେ, ସରକାରୀ କର୍ମଚାରୀଙ୍କ ଉପରେ ଲୋକ ପ୍ରତିନିଧିଙ୍କର ପ୍ରଭାବ ପଡ଼ିବ ଏବଂ ଲୋକ ପ୍ରତିନିଧିମାନେ ସରକାରୀ କର୍ମଚାରୀମାନଙ୍କୁ ପ୍ରଭାବିତ କରି ତାଙ୍କୁ ଦେଶ ସେବାରେ ନିୟୋଜିତ କରିବେ । କିନ୍ତୁ ବର୍ତ୍ତମାନ ଆମେ ଦେଖିଲୁ, ଯେଉଁମାନେ କ୍ଷମତାକୁ ଗଲେ, ସେମାନେ ନିଜ ପାଇଁ ପୁଞ୍ଜି ସଂଗ୍ରହ କଲେ । ଯେଉଁମାନେ ଭୋଟ ପାଇଗଲେ ସେମାନେ ସାହେବୀ ଢଙ୍ଗ ଢାଙ୍ଗରେ ଚଳିଲେ ଏବଂ ମହାତ୍ମା ଗାନ୍ଧିଜୀଙ୍କ ଆଦର୍ଶକୁ ସମ୍ପୂର୍ଣ୍ଣ ଭୁଲିଗଲେ । ଏହା ଫଳରେ ଆମର ଯେଉଁ ଆକାଂକ୍ଷା ଥିଲା, ତାହା ଧୂଳିସାତ ହୋଇ ଯାଇଛି । ଆମେ ନିଶା ନିବାରଣ, ଅସ୍ପୃଶ୍ୟତା ନିବାରଣ, ନାରୀ ସ୍ୱାଧୀନତା, ଏଭଳି ଅନେକ କଥା ପାଇଁ ଆନ୍ଦୋଳନ କରୁଥିଲୁଁ । ନାରୀମାନଙ୍କ ମଧ୍ୟରେ ଉଚ୍ଛୃଙ୍ଖଳତା ପ୍ରକାଶ ପାଉଛି । ନାରୀମାନେ ବେଶୀ ଅତ୍ୟାଚାରିତା ହେଉଛନ୍ତି । ନେତା, ଅଫିସର ସ୍ତ୍ରୀ, ପୁରୁଷ ସମସ୍ତେ ମଦ ଖାଉଛନ୍ତି । ଏ ଅବସ୍ଥାରେ ଗାନ୍ଧିଜୀଙ୍କୁ ଏମାନେ ହତ୍ୟା କରିଛନ୍ତି ବୋଲି ମୋର ବ୍ୟକ୍ତିଗତ ମତ । ଆମେ ଯାହା ଆଶା କରିଥିଲୁ ତାହାର ସଂପୂର୍ଣ୍ଣ ବିପରୀତ ଫଳ ହେଉଛି । କିଛି ଆର୍ଥିକ ଉନ୍ନତି ହୋଇଛି । ସେ ଉନ୍ନତିରେ କିଛି ଅର୍ଥ ନାହିଁ । ବର୍ତ୍ତମାନ୍ ବୟସରେ ଆମେ ଆଉ ବିଶେଷ କିଛି କରି ପାରିବୁନି । ଦେଶବାସୀଙ୍କ ପାଇଁ ଏତିକି ମୋର ମତ ହେଉଛି, ଯେଉଁମାନେ ସୁଖ ସମ୍ଭୋଗରେ ମାତିଛନ୍ତି, ଯେଉଁମାନେ ଗାନ୍ଧିଜୀଙ୍କ ନୀତିହୀନ ରାଜନୀତି କରୁଛନ୍ତି, ଯେଉଁମାନେ ଅନୁପାର୍ଜିତ ସମ୍ପତ୍ତି ଭୋଗ କରୁଛନ୍ତି, ସେମାନଙ୍କ ପ୍ରତି କଠୋର ଶାସ୍ତି ବିଧାନ ହେବା ଦରକାର ।

ଜନ୍ମସ୍ଥାନ : ଗୋଡ଼ିପଡ଼ା
ନୟାଗଡ଼

## କୃଷ୍ଣଚନ୍ଦ୍ର ଜେନା

୧୯୩୬ ମସିହାରେ ମୁଁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲି । ଆମେ ଚାରିଭାଇ ମଙ୍ଗଳପୁର ଜମିଦାରଙ୍କର ଛାଟିଆ କାମ କରୁ । ଜମିଦାର ତାଙ୍କର ପ୍ରଜାଙ୍କ ଉପରେ ଯେତେସବୁ ଅତ୍ୟାଚାର କରନ୍ତି ଆମରି ଦ୍ୱାରା କରାନ୍ତି । ନୀଳାମ୍ବର ଦାସ ଥରେ ସଭା କରୁଥିଲେ । ସେହି ସଭା ମୋ ମନରେ କି ପ୍ରଭାବ ପକାଇଲା କେଜାଣି, ମୁଁ ଚାଲିଗଲି ତାଙ୍କ ସାଙ୍ଗରେ । ୧୯୩୬ ମସିହାରେ ମୁଁ କଂଗ୍ରେସର ସଭ୍ୟ ହେଲି । ୧୯୩୯-୪୧ ପର୍ଯ୍ୟନ୍ତ ସୋର କଂଗ୍ରେସ ଅଫିସରେ ଟ୍ରେନିଂ ନେଲି । ଗାନ୍ଧୀ ଆହ୍ୱାନ ଦେଲେ ସତ୍ୟାଗ୍ରହ କରିବା ପାଇଁ । ମୁଁ ସତ୍ୟାଗ୍ରହ କରି ଜେଲ ଗଲି ୩ ମାସ । ସେ ଜେଲରେ ସେତେବେଳେ ଥାଆନ୍ତି ସରଦାର ସୁରେନ୍ଦ୍ରନାଥ ଓ ଔପଦାର କେତେକ ସତ୍ୟାଗ୍ରହୀ ମଧ୍ୟ ଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ବେଳେ ମୋ ବଡ଼ଭାଇ ମୋତେ କହିଲେ, ଆମେତ ଜମିଦାରଙ୍କ ପାଖରୁ ଜମିବାଡ଼ି ନେଉଚେ । ତୁ କିପରି ତାଙ୍କ ବିରୁଦ୍ଧରେ ଠିଆ ହେଉଛୁ ? ସେ ଆମ ପ୍ରତି ଖରାପ ବ୍ୟବହାର କରିବେନି ? ମୁଁ କହିଲି, ଭାଇ, ଆପଣଙ୍କୁ ମଧ୍ୟ ଦିନେ ଏ ଚାକିରି ଛାଡ଼ିବା ପାଇଁ ପଡ଼ିବ । ଆମେ ଆଉ ଏ ଗୋଲାମୀ କାମ କରିବା ନାହିଁ । କଂଗ୍ରେସରେ ଯୋଗଦେବା । ଆମେ ହରିଜନ ଲୋକ । ଆମକୁ ଯେଉଁଠାତାହା କରୁଛନ୍ତି । ଆମେ ତାଙ୍କ ପଛରେ କାହିଁକି ଗୋଡ଼ାଇବା । ୧୯୪୧ ମସିହାରେ ମୁଁ ସତ୍ୟାଗ୍ରହ କଲି । ମୋତେ ୩ ମାସ ଜେଲ ଦେଲେ । ପୋଲିସ ଆମକୁ ବାଲେଶ୍ୱରରୁ ନେଇଗଲେ କଟକ । ସେଠାରେ ମନମୋହନ ଚୌଧୁରୀ ଆଦି ସତ୍ୟାଗ୍ରହୀଙ୍କ ସଙ୍ଗେ ରହିଲୁ । ଜେଲରୁ ଫେରିଲାପରେ ଆସିଲା ୪୨ ଆନ୍ଦୋଳନର ଡାକରା । ସୋରୋ, ଖଇରା, ଔପଦା ଅଞ୍ଚଳରେ ଆମର କର୍ମୀ ଥିଲେ । ଆମେ ପୁରୁଣା ଲୋକ । ଗାଁକୁ ଯାଇ କଂଗ୍ରେସ ସଭ୍ୟ ସଂଗ୍ରହ କଲୁ । ଇଂରେଜ ସରକାର କ'ଣ କରୁଛି, ରାଜା କ'ଣ କରୁଛି, ଏଗୁଡ଼ାକ ଯାଇ ସାହି ଲୋକଙ୍କୁ ବୁଝାଉ । ୧୯୪୨ ରେ ବୈଦ୍ୟନାଥବାବୁ ଆସି ଆମ ସାଙ୍ଗରେ ଯୋଗ ଦେଲେ । ସୋରୋରେ ମୁଁ ପିକେଟିଂ କରୁଥାଏ, କେତେକ କର୍ମୀଙ୍କୁ ନେଇ । ସବ୍‌ରେଜିଷ୍ଟର ଅଫିସ, ଥାନା, ଡାକ୍ତରଖାନାଠାରେ ପିକେଟିଂ ହେଉଥାଏ । ୧୯୪୨ ଆନ୍ଦୋଳନରେ ମୁଁ ୨ ବର୍ଷ ୫ ମାସ ଜେଲ୍‌ଦଣ୍ଡ ଭୋଗିଥିଲି । ୨୦ ଥର ବେତ୍ରାଘାତ ପାଇଥିଲି । ୧୯୪୨ ମସିହା ସତ୍ୟାଗ୍ରହ ସମୟରେ ୩ ମାସ ଜେଲ୍‌ଦଣ୍ଡ ହୋଇଥିଲା । ମୋର ଆଉ ଦୁଇଭାଇ ଭିକାରୀ ଜେନା, ଭୀମ ଜେନା ମଧ୍ୟ ଗିରଫ ହୋଇଥିଲେ । ହରିଜନ ଲୋକ ଆମେ । ଆମ ଗାଁରେ ଆନ୍ଦୋଳନରେ ମୁଁ ମୁଖ୍ୟ ଭୂମିକା ନେଉଥିଲି । ସ୍ୱେଚ୍ଛାସେବକମାନଙ୍କୁ ତାଲିମ୍ ଦେଉଥିଲି । ତାପରେ ବୈଦ୍ୟନାଥ ରାଉତ୍ ଆସି ପହଞ୍ଚିଲେ । ତାଙ୍କୁ ଆମେ ମୁଖ୍ୟ ନେତା ରୂପେ ବାଛିନେଲୁ । ଧାମନଗରରୁ ଆସିଲେ ସୂର୍ଯ୍ୟମଣି, ସୋରରୁ ହାଇସ୍କୁଲ ପିଲାମଧ୍ୟ ଯୋଗଦେଲେ । ୧୯୪୧ ମସିହାରେ ସତ୍ୟାଗ୍ରହ କରି ବାଲେଶ୍ୱର, କଟକ ଜେଲରେ ଥିଲି । ୧୯୪୨ ମସିହାରେ

ବୈଦ୍ୟନାଥ ବାବୁଙ୍କ ସାଙ୍ଗରେ ବାଲେଶ୍ୱର ଜେଲରୁ ଗଲୁ ଅନୁଗୁଳ । ସେ ଜେଲ ଭିତରେ ୧୩ ଦିନ ଅନଶନ କରିଥିଲୁ । ସେ ଜେଲଭିତରେ ଯେତେବେଳେ ବିଶୃଙ୍ଖଳା ହୁଏ ତାକୁ ଆମେ ସବୁ ସାମ୍ନାକରୁ । ଆମେ ବଲ ଖେଳିବୁ, ପାଠ ପଢ଼ିବୁ, ଦୁଇଥର ଗାଧୋଇବୁ । ଆମ ଖାଇବା ପିଇବା ଆମ ଲୋକଯାଇ ମେସରେ ଦେଖିବେ । ଏଇଭଳି କାମ ପାଇଁ ୧୩ଦିନ ଅନଶନ କରାଯାଇଛି । ଜେଲରେ ଲାଠି ଦୁଇଥର ହୋଇଛି ।

୧୯୪୪ ମସିହାରେ ମୁଁ ଜେଲରୁ ଖଲାସ ହେଲି । ସ୍ୱାଧୀନତା ସଂଗ୍ରାମ କାଳରେ ଆମେ ଯେଉଁ ସ୍ୱପ୍ନ ଦେଖିଥିଲୁ ସେ ସ୍ୱପ୍ନ ଫଳବତୀ ହୋଇଛି କିନ୍ତୁ ପୂରା ହୋଇନି । ଆମେ ଲୋକଙ୍କୁ ଯାହା ପ୍ରତିଶ୍ରୁତି ଦେଇଥିଲୁ, ଦେଶ ସ୍ୱାଧୀନ ହେଲେ, ଇଂରେଜ ସରକାର ଏଠୁ ଗଲେ, ଆମ ଗାଁ ଗହଳରେ ସ୍କୁଲ,କଲେଜ ରାସ୍ତାଘାଟ ହେବ । ସେଇଥିରୁ କିଛି କିଛି ହେଉଛି । ଏବେ ଯେଉଁ ରାଜନୀତି ଚାଲିଛି ସେଥିରେ ଆମେ କ'ଣ କରିବୁ ?

ଜନ୍ମସ୍ଥାନ : ଯୋଗ
ଛାତରା, ବାଲେଶ୍ୱର

## କୃଷ୍ଣ ଚନ୍ଦ୍ର ତ୍ରିପାଠୀ

ମୁଁ ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ବେଳେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲି । ଯେତେବେଳେ ନିରଞ୍ଜନ ପଟ୍ଟନାୟକ ଓ ସରଳା ଦେବୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହ ହେଲା ସେତେବେଳେ ମୁଁ ବୋଇରାଣୀ ସ୍କୁଲରେ ପାଠ ପଢୁଥିଲି । ସେସମୟରେ କ୍ରାନ୍ତିକାରୀମାନଙ୍କୁ କେହି ଯେମିତି ଖାଇବା ପିଇବା ଇତ୍ୟାଦିର ସୁବିଧା ନକରନ୍ତି, ସେଥିପାଇଁ ସରକାରଙ୍କର କଡ଼ା ନିର୍ଦ୍ଦେଶ । ଏ ସମୟରେ ଆମେ ସ୍କୁଲ ଛାତ୍ରମାନେ,ଗୋଟିଏ ସ୍ୱେଚ୍ଛାସେବକ ବାହିନୀ ଗଠନ କରି ଏହି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବୋଇରାଣୀରେ ଖାଦ୍ୟପେୟ ପରିବେଷଣ କରିଥିଲୁ । ସେହି ଦିନଠାରୁ ମୁଁ ବିଦେଶୀ ବସ୍ତ୍ର ବର୍ଜନ କରି, ସ୍ୱଦେଶୀ ବସ୍ତ୍ର ଖଦଡ଼ ଇତ୍ୟାଦି ବ୍ୟବହାର କରି ଆସୁଛି ଆଜି ପର୍ଯ୍ୟନ୍ତ । ଲବଣ ସତ୍ୟାଗ୍ରହରେ ସେତେବେଳେ ଗଞ୍ଜାମ ଜିଲ୍ଲାର ଦିବାକର ପଟ୍ଟନାୟକ, ବାଞ୍ଛାନିଧି ପଟ୍ଟନାୟକ, ଉମାଚରଣ ପଟ୍ଟନାୟକ, ବନମାଳୀ ମହାରଣା, ବିଶ୍ୱନାଥ ଦାସ ପ୍ରଭୃତି ଯୋଗ ଦେଇଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ମୁଁ ଗାନ୍ଧିଜୀଙ୍କଠାରୁ ପ୍ରେରଣା ପାଇଥିଲି ପଣ୍ଡିତ ଗୋପବନ୍ଧୁ ଦାସଙ୍କର କାରାକବିତା, ବନ୍ଦୀର ଆତ୍ମକଥା ଏସବୁ ବହି ପଢ଼ି ମୁଁ ସଂଗ୍ରାମରେ ଯୋଗଦେବା ପାଇଁ ମୁଁ ମନସ୍ଥ କରିଥିଲି ।

୧୯୩୭ ରେ ମୁଁ ବର୍ମା ପଳେଇଲି । ବହୁ ଓଡ଼ିଆ ବର୍ମାରେ ଥିଲେ । ସେଥିରୁ ୫୦ ହଜାର ଓଡ଼ିଆ ଚାଷୀ । ବର୍ମାରେ "ପ୍ରଭାତ" ନାମରେ ଦୁଇଟି ସାପ୍ତାହିକ ଓଡ଼ିଆ ପତ୍ରିକା ପ୍ରକାଶ ପାଉଥିଲା । ସେଥିରେ ମୁଁ ସାମ୍ବାଦିକତା କରୁଥାଏ । ସେଠାରେ ଗୋଟିଏ ସଙ୍ଗୀତ ଦଳ, ଭାଷଣ ବୃତ୍ତିକରି ତା ମାଧ୍ୟମରେ ଓଡ଼ିଆ ବହୁଳ ଅଞ୍ଚଳକୁ ଯାଇ ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କରୁଥିଲି । ଏହିପରି କିଛିଦିନ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଗଲା । ସେତେବେଳେ ରାସବିହାରୀ ବୋଷ ଇଣ୍ଡିଆନ ଇଣ୍ଡିପେଣ୍ଡେନସ୍ ଲିଗ୍ ଗଠନ କଲେ । ସେଥିରେ ଆମେ ସବୁ ଯୋଗ ଦେଲୁ । କିଛିଦିନପରେ, ନେତାଜୀ ସୁଭାଷ ଫୌଜ ଗଠନ କଲେ । ସେଥିରେ ଆମେ ଯୋଗ ଦେଲୁ ।

୧୯୪୩ରୁ ୧୯୪୫ ପର୍ଯ୍ୟନ୍ତ ମୁଁ ଆଜାଦହିନ୍ଦ୍ ଫୌଜରେ କାର୍ଯ୍ୟ କରିଥିଲି । ଯେତେବେଳେ ମୁଁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲି, ମୋ ପରିବାର, ଗାଁ ଲୋକେ ବହୁତ ଘୃଣା କରୁଥାନ୍ତି । କାରଣ ଆମେ ବ୍ରାହ୍ମଣ ପିଲା । ମୁସଲମାନ, ହରିଜନ ଏ ସମସ୍ତଙ୍କ ଗହଣରେ ବସି ଖାଇବା ପିଇବା ଇତ୍ୟାଦି କେହି ପସନ୍ଦ କରୁନଥିଲେ । ଏପରିକି ଆମ ବାପା ମାଙ୍କୁ କହିଲେ ତୁମେ ତାକୁ ଖାଇବାକୁ ଦିଅ ନାହିଁ କଂସା ଗିନାରେ । ସେ ସମୟରେ ମହାତ୍ମା ଗାନ୍ଧୀଙ୍କ ଉପରେ ଆମେ ଆସ୍ଥା ରଖିଥିଲୁ । ମୁଁ କହିଲି, ପତରରେ ଦେଲେ ଆମେ ଖାଇବୁ, କିଛି ପରୱା ନାହିଁ । ଆମକୁ କଂସା ଗିନାରେ ନଦିଅ କିନ୍ତୁ ତଳେ ଦେଲେ ମଧ୍ୟ ଆମେ ଖାଇବୁ ।

ଆଜାଦ୍‌ହିନ୍ଦ ଫୌଜରେ ଥିଲାବେଳେ ଓଡ଼ିଆ ଲୋକମାନଙ୍କୁ ହିନ୍ଦୁସ୍ଥାନୀ ଭାଷା ଜାଣିବା କଷ୍ଟକର ହେଉଥିଲା । ତେଣୁ ଲୋକମାନେ ଆପତ୍ତି କଲେ, ଆମେତ ଏଭାଷା ବୁଝୁନୁ । ଏ ଲୋକେ ଯେଉଁ ସବୁ ଦେଉଛନ୍ତି ଏଗୁଡ଼ିକ ଆମେ ଜାଣି ପାରୁନୁ । କ'ଣ କରିବୁ । ମୁଁ ନେତାଜୀଙ୍କୁ ଯାଇ ଦେଖାକଲି । କହିଲି, ଏଠି ଲକ୍ଷେ ଓଡ଼ିଆ ଅଛନ୍ତି, କିନ୍ତୁ ଆମପାଇଁ ପ୍ରଚାର ହୋଇପାରୁନି । ଏଠାରେ ଓଡ଼ିଆ ପ୍ରେସ ଅଛି, ପ୍ରଚାରପତ୍ର ଛପା ହୋଇ ପାରୁନି । ନେତାଜୀ ପ୍ରଚାର ମନ୍ତ୍ରୀ ଏସ୍.ଏମ୍.ଆଇ. ଆରଙ୍କୁ ଡାକି କହିଲେ, ଏତେ ଓଡ଼ିଆ ଲୋକ ଏଠି ଅଛନ୍ତି, ଏହାଙ୍କର ପ୍ରଚାର ହେଉନି କାହିଁକି ? ସେ କହିଲେ, ଆଜ୍ଞା ଆମେ କ'ଣ ଜାଣିଛୁ ! ଆମେ ତ ସିଙ୍ଗାପୁରରୁ ଆସିଛୁ । ଆପଣ ଯାହା କହିବେ ତାହା କରିବୁ । ରେଙ୍ଗୁନ୍‌ରେ ଗୋଟିଏ ସ୍ୱତନ୍ତ୍ର ଓଡ଼ିଆ ତାଲିମ କେନ୍ଦ୍ର ସ୍ଥାପନ କରିବା ପାଇଁ ନେତାଜୀ ମଞ୍ଜୁର କଲେ । ରେଙ୍ଗୁନଠାରୁ ଆଠ ମାଇଲି ଦୂର ମୟାଙ୍ଗଠାରେ ଗୋଟିଏ ଓଡ଼ିଆ କ୍ୟାମ୍ପ ହୋଇଥିଲା । ସେଥିରେ ବ୍ରିଟିଶ ଇଣ୍ଡିଆନ୍ ଆର୍ମିରେ ଯେଉଁ ଓଡ଼ିଆ ଲୋକ ଥିଲେ ଆଜାଦହିନ୍ଦ୍ ଫୌଜରେ ଯୋଗଦେଲେ । ସର୍ବୋଚ୍ଚ ଅଫିସର ରୂପରେ ଢେଙ୍କାନାଳର କର୍ଣ୍ଣେଲ ବ୍ରଜମୋହନ ପଟ୍ଟନାୟକ ନେତୃତ୍ୱ ନେଲେ । ଦାମୋଦର ପଣ୍ଡା, ଅଗାଧୁ ସାମନ୍ତରାୟ, ଗଦାଧର ମହାପାତ୍ର, ରଘୁନାଥ ବେହେରା ଏପରି ୪।୫ ଜଣଙ୍କୁ ଇନ୍ସପେକ୍ଟର ନିଯୁକ୍ତ କରାଗଲା । ନେତାଜୀ ମୋତେ ପ୍ରଚାର ଅଫିସର ରୂପରେ ଓଡ଼ିଶା ପାଇଁ ନିଯୁକ୍ତ କଲେ । ଡାକ୍ତର ବୀର କିଶୋର ଭୂୟାଁ, କର୍ଣ୍ଣେଲ ବ୍ରଜ ମୋହନ ପଟ୍ଟନାୟକ, ନୃସିଂହ ଚରଣ ଦାସ, ଅଗାଧୁ ସାମନ୍ତରାୟ, ଦାମୋଦର ପଣ୍ଡା, ବନମାଳୀ କବିରାଜ, ପୀତବାସ ପାଣିଗ୍ରାହୀ, ଉଷବାନନ୍ଦ ପ୍ରଧାନ ଫୌଜରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ।

ନେତାଜୀ ଯେତେବେଳେ ରେଙ୍ଗୁନ ରେ ପହଞ୍ଚିଲେ, ସେତେବେଳେ ଓଡ଼ିଆମାନଙ୍କ ତରଫରୁ ଆମେ ୨୧ ହଜାର ୧୧ ଟଙ୍କାର ଗୋଟିଏ ଥଳି ଦେଇଥିଲୁ । ସେତେବେଳେ ପୂର୍ବ ଏସିଆରେ ଆମେ ୩୦ ଲକ୍ଷ ଲୋକ ଥିଲୁ ଭାରତୀୟ । ସମସ୍ତଙ୍କୁ ଉଦ୍‌ବୋଧନ ଦେଇ ସେ କହିଲେ ତନ୍ ମନ୍ ଧନ - ତିନ୍ ଔର ମଦଦ୍ ଚାହିଁ ଏ ।

ସିଙ୍ଗାପୁରରେ ନେତାଜୀ ଭାଷଣ ଦେବା ସମୟରେ ଜଣେ ସେଠ ନେତାଜୀଙ୍କୁ ନମସ୍କାର କରି କହିଲେ :-

ନେତାଜୀ, ''ମେରା ପାଶ୍ ବାର ଲାଖ ରୁପିଆକା ଦୌଲତ ହୈ, ମୈ କିତନା ହିସା ଦୁଁଗା, ଆପ ଯୋ ଏଲାନ କିହେ ?'' ନେତାଜୀ ସଙ୍ଗେ ସଙ୍ଗେ କହିଲେ, ବାବୁଜୀ ଯୋ ଜଓ୍ୱାନୋ ରମାଲ ଜଙ୍ଗ ମେ ଲଡ଼୍ ରହେ ଏତୋ ଆକର ମୁଝେ ନହିଁ, ବୋଲତେ ହୈ, ଏମେରେ ପାଶ୍ ଏତନି ଖୁନ୍ ହୈ ମେଁ କିତନା ହିସା ଦୁଁଗା । ସବ ଖୁନ୍ ବହା ଦେତୋ ଆପକୋ ମେ କ୍ୟା ଜବାବ ଦୁଁଗା ।

ସେଠ କହିଲେ - ମୁଝେ ଭି ଲେଯାଇଏ, ମେରା ସବ୍ ଦୌଲତ ଲେ ଯାଇଏ । ତାଙ୍କର ଲରି ଇତ୍ୟାଦି ସମୁଦାୟ ୧୨ ଲକ୍ଷ ଟଙ୍କାର ସମ୍ପତ୍ତି ଥିଲା । ତାଙ୍କ ପୁଅ ବୋହୂ ସମସ୍ତେ ଦେଶକୁ ପଳେଇ ଆସିଥିଲେ । ସେ କେବଳ ସମ୍ପତ୍ତି ଜଗିକରି ସିଙ୍ଗାପୁରରେ ଥିଲେ । ନେତାଜୀ କହିଲେ - ଆପ ବୁଢ଼େ ଆଦମୀ । ସେଠ କହିଲେ - ନେତାଜୀ ଇସ ବକ୍ତ ଯୋ ଜଓ୍ୱାନ କୋ ଅବ ଏକଠି କିଏ ହେଁ ଏକ ଜଓ୍ୱାନ କୋ ଲାଇଏ ମୈ ଇସକା ହାତ ପକଡ଼ଲୁଁ, ମେରା ହାତକୋ. ଖିଞ୍ଚଲେ ତୋ ମୁଝେ ମତ୍ ଲିଯିଏ । ହସିଲେ ନେତାଜୀ । କହିଲେ - ଅଚ୍ଛା ଅଚ୍ଛା, ଆପକୋଭି ଏକ କାମ ମେ ଲଗାଯାଏଗା । ଯେଉଁଠି ଶେଷ ଖାଦ୍ୟ ଖାଇକରି ଜଓ୍ୱାନ ମାନେ ଯାନ୍ତି ଲଢ଼େଇକୁ, ସେଇଠି ତାଙ୍କୁ ଲଙ୍ଗର କମାଣ୍ଡର କରି ରଖିଥିଲେ । ଜଓ୍ୱାନମାନଙ୍କୁ ସେ ଜାଲିଆନବାଗ୍, ଖୁଦିରାମ, ଟିପୁସୁଲତାନଙ୍କ କଥା କହି ଉଦ୍‌ବୁଦ୍ଧ କରାଉଥିଲେ । ମୁଁ ରେଙ୍ଗୁନ ସେଣ୍ଟ୍ରାଲ ଜେଲରେ ୮ ମାସ ଜେଲ ଭୋଗ କରିଛି । ଜେଲ ଜୀବନ ଆମର ଯଦିଓ କଷ୍ଟଥିଲା କିନ୍ତୁ ସେଠି ଜଣେ ଦୁଇଜଣ କେବଳ ଇଂରାଜୀ ଅଫିସର ଥିଲେ । ଆଉ ସବୁଥିଲେ ଭାରତୀୟ ସୈନ୍ୟ । ଯୁଦ୍ଧ ଚାଲିଥାଏ । ଆମେ ବନ୍ଦୀ ହେବା ଅବସ୍ଥାରେ ସେ ସମୟରେ ଦେଉଥାଉ ଥାଉ ଖାଇ ଦେଉ । ରେଙ୍ଗୁନ ସେଣ୍ଟ୍ରାଲ ଜେଲ ଗୋଟିଏ ବିରାଟ ଏରିଆ, ପଡ଼ିଆରେ ଭାରତୀୟ ସୈନ୍ୟମାନେ ବସି ସିନେମା ଗୀତ ଗାଇ ଆନନ୍ଦ ଅନୁଭବ କରନ୍ତି । ଆମେ ନେତାଜୀଙ୍କର ଆଜାଦ୍ ହିନ୍ଦ ଫୌଜ ଗୀତ -

''କଦମ୍ କଦମ୍ ବଢ଼ାଏ ଯା
ଖୁସୀକା ଗୀତ ଗାଏଯା''

ଗୀତ ଗାଉଥାଉ । ଭାରତୀୟ ସୈନ୍ୟମାନେ ଏ ଗୀତ ଶୁଣି ଆସନ୍ତି ଆମ ପାଖକୁ । କହନ୍ତି ଫିର ଆଜାଦହିନ୍ଦ ଫୌଜ ଦୋସ୍ତୋଁ । ଫିକର ମତ କି ଯିଏ । ସେମାନେ ଆମକୁ ସପୁରୀ, ପ୍ୟାକେଟ ପ୍ୟାକେଟ ସିଗାରେଟ କିଣି ଆଣି ଦେଉଥିଲେ । ଖାଦ୍ୟପେୟ ଇତ୍ୟାଦିରେ ଯେଉଁ କଷ୍ଟଥିଲା ଆମେ ତାହା ଅନୁଭବ କରି ପାଉନଥିଲୁ । ଭାରତୀୟ ସୈନ୍ୟମାନଙ୍କ ସାହାଯ୍ୟ ସହାନୁଭୂତି ଅବିସ୍ମରଣୀୟ ।

ଗଞ୍ଜାମ ଜିଲ୍ଲାର ୭୦% ଲୋକ ଆଜାଦ ହିନ୍ଦ ଫୌଜରେ ଥିଲେ । ସେମାନଙ୍କ ଭିତରୁ ମୁଁ ପୀତବାସ ପାଣିଗ୍ରାହୀ, ଉତ୍ସବାନନ୍ଦ ପ୍ରଧାନ, ଭିକାରୀ ଦଳେଇ, ନାରାୟଣ ପୃଷ୍ଟି, ମଦନ ପ୍ରଧାନ, ଲୋବନୀ ମହାପାତ୍ର କାଳୁପାଣି ପ୍ରଧାନ, ହରିବନ୍ଧୁ କରଣ ପ୍ରଭୃତି ଆମେ ଜେଲରେ ଥିଲୁ । ଆଜାଦହିନ୍ଦ ଫୌଜର ପତନପରେ ଆମେ ଆଡଭାନ୍ସ ହେଡକ୍ୱାଟରରୁ ଧରା ପଡ଼ିଲୁ । ସେଇଠୁ ରେଙ୍ଗୁନ ସେଣ୍ଟରକୁ ଆମକୁ ଅଣାଗଲା । ଆମର ଓଡ଼ିଆ ପତ୍ରିକାଟା ବନ୍ଦ ହୋଇଯାଇଥିଲା । ସେ ପତ୍ରିକାକୁ ପୁନଃ ପ୍ରକାଶ କଲୁ । ମୁଁ ଯୁଗ୍ମ ସଂପାଦକ ହେଲି । ୩/୪ ମାସ ରହିବା ପରେ ଆମେ ଭାରତକୁ ଆସିଲୁ ।

ପ୍ରଥମେ ଟିଟାଗଡ଼ ଆସିଲୁ । ସେଠାରୁ ଆସି କଲିକତାରେ ରହିଲୁ । ନେତାଜୀଙ୍କର ପୁତୁରା ଅମୀୟ ବୋଷ କଲିକତା ରିଲିଫ କମିଟି ଗଠନ କରିଥିଲେ । ସେଠି ୭/୮ ଦିନ ରହିଲୁ । ସେମାନେ ଆମକୁ ଖାଦ୍ୟ ପେୟ ଦେଇ ଟିକେଟ କରି କଟକ ପଠାଇଲେ । କଟକ ଆସିଲାପରେ ନବକୃଷ୍ଣ ଚୌଧୁରୀଙ୍କର ସଭାପତିତ୍ୱରେ କଟକ ଟାଉନ୍ କଂଗ୍ରେସ ପକ୍ଷରୁ ଆମକୁ ଟାଉନହଲରେ ସମ୍ବର୍ଦ୍ଧନା କରାଯାଇଥିଲା । ଆମେ ଯେଉଁ ଆଶା ଆକାଂକ୍ଷା ନେଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲୁ, ସ୍ୱାଧୀନତା ପରେ ତାହା ପୂରଣ ହୋଇ ପାରିଲା ନାହିଁ । ଆମେ ଭାବିଥିଲୁ ଏ ଦେଶ ଗାନ୍ଧିଜୀଙ୍କ ନୀତି ଅନୁସାରେ ରାମରାଜ୍ୟ ହେବ । ଲୋକେ ସୁଖ ସୁବିଧାରେ ରହିବେ । କିନ୍ତୁ ସେ କଥା ହୋଇ ପାରିଲାନି । ନେତାଜୀ କହୁଥିଲେ ଏ ଦେଶ ସ୍ୱାଧୀନ ହେବା ପରେ କୃଷି, ଶିକ୍ଷା, ଶିଳ୍ପର ଉନ୍ନତି କରିବେ । ଦେଶବାସୀ ଯେମିତି ଶାସନ ଚାହିଁବେ ସେମିତି ତାଙ୍କୁ ଛାଡ଼ି ଦିଆଯିବ । କୃଷି, ଶିକ୍ଷା, ଶିଳ୍ପର ଉନ୍ନତି ହେଲେ ମଧ୍ୟ ନୈତିକତା ତ ହ୍ରାସ ପାଇଗଲା । ସନ୍ତ୍ରାସବାଦ, ଜାତିବାଦ ଆଜି ବଢ଼ି ବଢ଼ି ଗଲା । ରାମରାଜ୍ୟର ପରିକଳ୍ପନା କରିଥିଲୁ । ତା ତ ହେଲାନି । ତେଣୁ ଆମ ମନରେ ଦୁଃଖ । ଦେଶର କଥା ଦେଖି ଆମେ ଖୁବ୍ ବିବ୍ରତ । ଦେଶବାସୀଙ୍କୁ ଆମର ସନ୍ଦେଶ ହେଉଛି, ସେମାନେ ଦେଶାତ୍ମବୋଧ ଓ ଭ୍ରାତୃତ୍ୱ ଭାବନା ନେଇ ଦେଶକୁ ଗଠନ କରନ୍ତୁ । ଦେଶର ଅଖଣ୍ଡତା ଓ ସ୍ୱାଧୀନତାକୁ ରକ୍ଷା କରନ୍ତୁ ।

ଜନ୍ମସ୍ଥାନ : ପିଇଙ୍କ
ଗଂଜାମ

—o—

# ନିଷ୍ଠାରେ ଅଟଳ ପର୍ବତ ପରି : ପାର୍ବତୀଗିରି

ଶ୍ରୀ ହଳଧର ପଣ୍ଡା

ପର୍ବତ କନ୍ୟା ପାର୍ବତୀ ଦିନେ ଶିବଙ୍କର ସାନିଧ୍ୟ ଲାଭ ପାଇଁ କଠୋର ତପସ୍ୟା କରିଥିଲେ । ଶିବ ବି ପରାଭୂତ ହୋଇଥିଲେ ତାଙ୍କର କଠୋର ତପସ୍ୟା ନିକଟରେ । ଶେଷରେ ପାର୍ବତୀଙ୍କ ହାତ ପାଆନ୍ତାରେ ମିଳିଥିଲା ତାଙ୍କ ନିଷ୍ଠାର ଫଳ ।

ପର୍ବତ ପରିବେଷ୍ଟିତ ଗାଁରେ ଜନ୍ମିଥିବା ସେମିତି ଜଣେ ପାର୍ବତୀ ପୁରାଣ ପ୍ରସିଦ୍ଧ ପାର୍ବତୀଙ୍କ ଭଳି ପ୍ରବଳ ନିଷ୍ଠା ଓ ଇଚ୍ଛାଶକ୍ତି ନେଇ ଯେଉଁ ତପସ୍ୟା ଆଦରି ନେଇଥିଲେ, ତାହା ଥିଲା ସ୍ୱାଧୀନତା ସଂଗ୍ରାମ ।

ବାପା ଚାହୁଁଥିଲେ ପାର୍ବତୀଙ୍କୁ ଏକ ଭଲ ବଂଶର ବୋହୂ ହିସାବରେ ଦେଖିବାକୁ । ମାଆ ଚାହୁଁଥିଲେ ଜଣେ ସୁଗୃହିଣୀ ହିସାବରେ । କିନ୍ତୁ ବିଧି ବୋଧେ ଚାହୁଁଥିଲା ଅନ୍ୟପ୍ରକାର । ସେଥିପାଇଁ ମାତ୍ର ୮ ବର୍ଷ ବୟସରୁ ଏକ ରକ୍ଷଣଶୀଳ ଗୌଡ଼ିଆ ଘରୁ ତାଙ୍କୁ ସମାଜ ଟାଣି ଆଣିଥିଲା ରାଜରାସ୍ତାକୁ । ତାଙ୍କ ହାତରେ ଧରାଇ ଦେଇଥିଲା ଚରଖା । ମନରେ ଦେଶସେବାର ନିଶା । ସେହି କୁସୁମ କୋମଳ କଳିକା ଜୀବନରେ ପ୍ରୀତି କାହାର ମନୋହାରିଣୀ ହେବା ପୂର୍ବରୁ ପୁଲିସ୍‌ର ହୃଦ୍‌ବିଦାରିଣୀ ହୋଇଗଲା । କେତେବେଳେ ମହାତ୍ମାଙ୍କ ମାରିଚ ସହ ଜଡ଼ିତ ହେଉଥିଲା ତ ଗାଁ ଗାଁ ବୁଲି ଅହିଂସା ଆନ୍ଦୋଳନ କାରୀଙ୍କୁ ଉତ୍ସାହିତ କରୁଥିଲା ବା ଆନ୍ଦୋଳନକାରୀଙ୍କୁ ମଦଦ୍ ଦେଉଥିଲା । ସମ୍ବଲପୁରରୁ ବରଗଡ଼, ବରଗଡ଼ରୁ କଟକ ଏକ ଲମ୍ବା ଜୀବନ । ଏକ ଲମ୍ବା ଇତିହାସ । ଶୈଶବ ଯାଇ ଯୌବନ ଆସିଲା । ଯୌବନ ଯାଇ ପ୍ରୌଢ଼ ଓ ବାର୍ଦ୍ଧକ୍ୟ ଆସିଲା । ତେବେ ବି ଖିଆଲ ନଥିଲା ଏହି ତପସ୍ୱିନୀଙ୍କର ନିଜ ଜୀବନ ପ୍ରତି ଓ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି । ମାତ୍ର ତୃତୀୟ ଶ୍ରେଣୀରୁ ପାଠପଢ଼ା ଛାଡ଼ିଥିବା ଏହି ଅର୍ଦ୍ଧଶିକ୍ଷିତା ମହିୟସୀ ଜଣକ ହଜାର ହଜାର ଶିକ୍ଷା ପିପାସୀ ଅସହାୟଙ୍କ ଶିକ୍ଷାଦାତ୍ରୀ ହୋଇଗଲେ ।

ବିବାହ ହୋଇ ଘର ସଂସାର କରି କେତୋଟି ସନ୍ତାନର ଜନନୀ ହେବା ପୂର୍ବରୁ ହଜାର ହଜାର ଅସହାୟ ବାଳୁତଙ୍କର ପାଳନ କର୍ତ୍ତ୍ରୀ ହିସାବରେ ତୁଲାଇଥିଲା ନିଜ ଭୂମିକା । ପରିବାର ଲୋକେ ବିରୋଧ କରୁଥିଲେ । ଗାଁ ଲୋକେ ଥଟ୍ଟା କରୁଥିଲେ । ଝିଅ ହୋଇ ବାହାରେ ଯଥେଚ୍ଛା ଭାବେ ବୁଲୁଥିବା ଯୋଗୁ ଯଣ୍ଡିଖୋର ବୋଲି ଅପବାଦ ବି ମିଳିଲା । ତଥାପି କିଛି ଭାବାନ୍ତର ସୃଷ୍ଟି ହୋଇନଥିଲା ତା' ମନରେ । ସେ ଥିଲା ନିର୍ବିକାର । ପ୍ରଜ୍ଞାରେ ଅଟଳ ଓ ଅଚଳ । ଯେ ଲୋକ ଚେତନାର ଊର୍ଦ୍ଧ୍ୱରେ ସାରା ଜନ ସମାଜକୁ ତୋଳୁଥିଲା, ଯେ ଜୀବନବୋଧରୁ ଊର୍ଦ୍ଧ୍ୱତର ସତ୍ୟକୁ ଆବିଷ୍କାର କରି ସ୍ରଷ୍ଟାର ପବିତ୍ର ସୃଷ୍ଟି ଉପରେ ଆଶ୍ୱାସନାର ହସ୍ତ ବୁଲାଇ ଆଣୁଥିଲା, ସେ କାହିଁକି ବା ଖାତିରି କରିଥାନ୍ତା ଲୋକାପବାଦକୁ । ସେ ଯେ ପର୍ବତନନ୍ଦିନୀ ପାର୍ବତୀ । ପାର୍ବତୀ ଗିରି । ସମ୍ବଲପୁରରେ ୧୯୨୬ ମସିହା ଜାନୁୟାରୀ ମାସ ୧୯ ତାରିଖ ମାଘ ସପ୍ତମୀ ଶନିବାରରେ ଜନ୍ମ ହୋଇ ନିଜ ଜୀବନର ପ୍ରତିଟି ସ୍ପନ୍ଦନରେ ଅନୁଭବୁ ଥିଲା ମାନବବାଦର ପବିତ୍ର ସ୍ଫୁର୍ତ୍ତିକୁ । ପ୍ରତିଟି ଶବ୍ଦାୟନରେ ଉଚାରୁଥିଲା - ମାନବ ଜୟଯାତ୍ରାର ଓଁ କାର ଧ୍ୱନି ।

ସେତେବେଳେ ସମାଜରେ ବହୁତ ରକ୍ଷଣଶୀଳତା ଥିଲା । ଝିଅମାନେ ପର୍ଦ୍ଦା ପ୍ରଥା ଆଚରଣ କରୁଥିଲେ । ତେବେ ବି ସେ ଏତେବଡ଼ ଭୂମିକା କିପରି ନିର୍ବାହ କଲେ ? ଉତ୍ତରରେ ସେ କହନ୍ତି - ''ଝିଅମାନଙ୍କୁ ସେତେବେଳେ ବାହାରକୁ ଛଡ଼ା ଯାଉ ନଥିଲା । ତୃତୀୟ ଶ୍ରେଣୀ ପଢ଼ିଲେ ଝିଅଙ୍କ ପାଇଁ ପାଠ ଯଥେଷ୍ଟ ହୋଇଗଲା । ମୁଁ ତୃତୀୟ ଶ୍ରେଣୀ ପଢୁଥିଲି । ମୋର କକା ରାମଚନ୍ଦ୍ର ଗିରି କଂଗ୍ରେସ ପାଇଁ କାମ କରୁଥିଲେ । ତେଣୁ ମୁଁ କାହିଁକି ନକରିବି । ଏହି ସମୟରେ ଆମ ଗାଁରେ ଗୋଟିଏ କଂଗ୍ରେସ ସଭା ହେଲା । ସେଥିରେ ମାଳତୀ ଚୌଧୁରୀ ଯୋଗ ଦେଇଥିଲେ । ମୁଁ ତାଙ୍କୁ କହିଲି - ମୁଁ ତୁମ ସହିତ ଯିବି । ସେ କହିଲେ - ଏତେ ଛୋଟ ଝିଅ । ମୁଁ ନେବି ନାହିଁ । ମୁଁ କାନ୍ଦିଲି । ତାଙ୍କ ଗୋଡ଼କୁ ଧରି ପକାଇଲି । ମାଳତୀ ଦେବୀ ରାଜି ହେଲେ ନାହିଁ । ତାପରେ ମୁଁ ରମାଦେବୀଙ୍କ ପାଖକୁ ଗଲି । ସେଇଠୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲି ।

ଆମ ଗାଁକୁ ନାଲି ପଗଡ଼ିଆ ପୋଲିସ୍ ଗଲେ ପିଲାମାନଙ୍କ ସହ ତାଙ୍କୁ ''ଏକ ଦୋ - ନାଲି ପଗଡ଼ି ଫେକ୍ ଦୋ'' କହିବାକୁ ଭାରି ମଜା ଲାଗେ । ସବୁବେଳେ କକା ରାମଚନ୍ଦ୍ର ଗିରି କହନ୍ତି - ଇଂରେଜ ସରକାରକୁ ହଟାଇଲେ ଆମର ସରକାର ହେବ । ଆମର ଅଧିକ ଉନ୍ନତି ହେବ । ତା ଛଡ଼ା ଆମ ପରିବାରର ବଡ଼ବାପାଙ୍କ ପୁଅ ତୁଳସୀରାମ ଗିରି,

ଦ୍ୱିତୀୟା ଗିରି, ମଙ୍ଗଳ ଗିରି, ଆମ ଗାଁର ଉଜଲ୍ ପୁରୀ, ସନ୍ତୋଷ ସ୍ୱାଇଁ ବି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଅତି ପିଲାଦିନରୁ ଏ ସବୁର ପ୍ରଭାବ ମୋ ଉପରେ ପଡ଼ିଥିଲା ।

ମୁଁ ଆଗରୁ ରମାଦେବୀଙ୍କ ପାଖରେ ଥିଲି । ୧୯୪୦ ମସିହାରେ ଯେତେବେଳେ ସତ୍ୟାଗ୍ରହ ହେଲା, ଛୋଟ ଛୋଟ ଝିଅ ମାନଙ୍କୁ ଗାଁ କୁ ପଠାଇ ଦିଆଗଲା । ମୁଁ ଯାଇ କିଛିଦିନ ଗାଁରେ ରହିଲି । ତା'ପରେ ସମ୍ବଲପୁରରେ ରହି ଘରଘର ବୁଲି ସୁତାକଟା ଶିଖାଇଲି । ଶ୍ରୀଧରର ସୂପକାରଙ୍କ ମା' କମଳାଦେବୀ ଏହିଭଳି ସ୍ୱେଚ୍ଛାସେବୀଙ୍କୁ ଖାଇବାକୁ ଦେଉଥିଲେ । କଂଗ୍ରେସ କାମ କରିବାରୁ ମୋର କକା, ଭାଇମାନେ ସମସ୍ତେ ଜେଲ୍ ଗଲେ । ମାତ୍ର ମୋର ବୟସ ହୋଇନଥିବାରୁ ଇଂରେଜ ସରକାର ମୋତେ ବନ୍ଦୀ କଲାନାହିଁ । ଫଳରେ ମୋତେ କଂଗ୍ରେସ କାମ କରିବାକୁ ସୁଯୋଗ ମିଳିଲା । ମୁଁ ବରଗଡ଼ରେ ମିଟିଂ କଲି । ପ୍ରଶେସନ ବି କରୁଥାଏ ।

ପ୍ରଶେସନ୍‌ରେ - ସାରା ଭାରତରେ ହାହାକାର ଆମେ ପକେଇ ଦେବୁ,
ଗୋରା ଶାସକକୁ ଏପାରି ସେପାରି ନଚେଇ ଦେବୁ-

ଗୀତ ବୋଲାଯାଏ । ଏମିତି ମିଟିଂ କରୁ କରୁ ମୁଁ ଭାବିଲି ଆମେ ଏକ ସମାନ୍ତରାଳ ସରକାର ଗଢ଼ିବୁ ।ଇଂରେଜ ଆଇନ୍ ମାନିବୁ ନାହିଁ । ମୁଁ ପ୍ରଥମେ ଏସ୍. ଡି.ଓ ଅଫିସକୁ ଏଥିପାଇଁ ବାଛିଲି । ଏସ୍.ଡି.ଓ. ଆସିବା ପୂର୍ବରୁ ମୁଁ ତାଙ୍କ ପାଇଁ ଉଦ୍ଦିଷ୍ଟ ଆସନରେ ବସିଲି । ଅଫିସର ପାଣିବଡ଼ାର ବୃଦ୍ଧ ବିରଞ୍ଚି ନାରାୟଣ ପ୍ରଧାନଙ୍କୁ ଡ଼ାକି ତାଙ୍କୁ ପିଅନ କଲି । ଅଭିମନ୍ୟୁ ଭୋଇଙ୍କୁ ଓକିଲ ଓ ମୋର ନିଜ ଭାଇ ପୂର୍ଣ୍ଣକୁ ମର୍ଡ଼ର କେଶର ଆସାମୀ କଲି । ବିରଞ୍ଚି ନାରାୟଣ ପ୍ରଧାନ ତାଙ୍କୁ କଡ଼ପାଟିରେ ଡ଼ାକିଲାପରେ ତାଙ୍କୁ ମୁଁ ବିଚାର କରି ସଜା ଦେବି ବୋଲି କହିଲି । ଏହି ସମୟରେ ଏସ୍.ଡି.ଓ ଆସିଲେ । ମୁଁ ତାଙ୍କ ସିଟ୍‌ରେ କାହିଁକି ବସିଛି ବୋଲି ପୋଲିସ୍ ମୋତେ ଗିରଫ କଲା ଓ ହାଜତ୍‌ରେ ପୁରାଇଲା । ବିରଞ୍ଚି ପ୍ରଧାନ ଓ ଅଭିମନ୍ୟୁ ଭୋଇଙ୍କୁ ମଧ୍ୟ ପୋଲିସ୍ ମାଡ଼ଦେଇ ଅଫିସ୍‌ରୁ ନିକାଳି ଦେଲା । ଏହାପରେ ଆମ ଘରେ ମୋତେ ମୋ ମାଆ ଆଟକ କଲେ । ମୁଁ କିନ୍ତୁ ଦିନେ ରାତିରେ ଲୁଚି ପଳାଇ ଆସିଲି । ବରଗଡ଼ରେ ପହଞ୍ଚିଲା ବେଳକୁ ପୋଲିସ୍ ମୋ ନାମରେ ୱାରେଣ୍ଟ ବାହାର କରିଥାନ୍ତି । ଏ ୧୯୪୨ ମସିହାର କଥା । ସେତେବେଳେ ଫକୀର ବେହେରା ଓ ଅନ୍ୟମାନେ ଜେଲ୍‌ରେ । ମୁଁ ଲୁଚି ବୁଲିଲି । ଦିନେ ବରଗଡ଼ରୁ ଆସିଲା ବେଳେ ମୋତେ ଓ ମୋର ଭାଇକୁ ପୋଲିସ୍ ଧରିନେଲେ । ବରଗଡ଼ ସବ୍‌ଜେଲରେ ମୋର ବିଚାର ହେଲା । ମୋର ସେତେବେଳେ ୧୮ ବର୍ଷ ବୟସ ହୋଇ ନଥିଲା । ଜଜ୍ ସାହେବ କହିଲେ - ତୁମକୁ ୧୮ ବର୍ଷ ହୋଇନାହିଁ । ତେଣୁ ୫ ବର୍ଷ ପରିବର୍ତ୍ତେ ୨ ବର୍ଷ ଜେଲ୍ ଦଣ୍ଡ ହେବ ।

ଜେଲ୍ ଜୀବନ ବହୁତ ମଜାରେ କଟୁଥିଲା । ଆମେ କହୁଥିଲୁ ଦେଶ ସ୍ୱାଧୀନ ହେବ । ଏବେ ସିନା ଚାରିକାନ୍ଥ ଘେରା ପାଚେରୀ ଭିତରେ ଅଛୁ । ସେଠାରେ ଅନେକ ବହି ପଢ଼େ । ଜେଲ୍‌ରେ ପ୍ରଭାଦେବୀ, ଲୀଳାବାଇ, ରୂପାବାଇ ଆଦି ନାରୀ ସଂଗ୍ରାମୀମାନେ ବି ଥିଲେ । ତେଣୁ ବିଶେଷ ଅସୁବିଧା ହୁଏନାହିଁ । ଏମିତି ଭାବେ ସମ୍ବଲପୁର ଜେଲ୍‌ରେ ଦୁଇବର୍ଷ କଟିଗଲା । ଜେଲରୁ ଫେରିବା ପରେ ରମାଦେବୀଙ୍କ ପାଖକୁ ଆସିଲି । ସେଠାରେ କସ୍ତୁରବା ଟ୍ରଷ୍ଟ ଗଢ଼ାଗଲା । ସେଇ କାମରେ ମୁଁ ଲାଗିଗଲି ।

ଏଇଥିଲା ତାଙ୍କର ଜୀବନ, ଲଢ଼େଇ, ଜେଲ୍, ମୁକ୍ତି, ପୁଣି ଲଢ଼େଇ । ଏମିତି ଭିତରେ ବିତିଯାଉଥିଲା ଜୀବନ । ଏମିତି ଜୀବନ ଯୁଦ୍ଧ ଚାଲିଥିବା ବେଳେ ସ୍ୱାଧୀନତା ଆସିଲା । ଅନେକ ସଂଗ୍ରାମୀ ଭଳି ତାଙ୍କ ସଂଗ୍ରାମର ପୂର୍ଣ୍ଣଚ୍ଛେଦ ପଡ଼ିଲା ନାହିଁ ।

ଆହୁରି ବାକୀ ରହିଗଲା କର୍ମ ସଂପାନ । ସ୍ୱାଧୀନତାର ମହକରେ ସେ ଉଲ୍ଲସିତ ହୋଇନଥିଲେ । ସ୍ୱାଧୀନତା ପରେ ସମାଜରୁ କୁସଂସ୍କାର, ନାରୀ ନିର୍ଯ୍ୟାତନା, ଅନାଥ ବାଳିକାଙ୍କର ପାଳନ ଆଦି ଅନେକ କାମ ଏହି ସଂଗ୍ରାମୀ ମହିଳାଙ୍କୁ ଆକର୍ଷିତ କରିଥିଲା । ତେଣୁ ଫୁଲଝରମ ଠାରେ ଗୋଟିଏ ଜରାନିବାସ କରି ୨୦ ଜଣ ବୁଢ଼ାବୁଢ଼ୀଙ୍କୁ ଥଇଥାନ କରିବା ଛଡ଼ା ସେଠାରେ କସ୍ତୁରବା ମାତୃ ନିକେତନ ନାଁରେ ଗୋଟିଏ ବାଳାଶ୍ରମ ପ୍ରତିଷ୍ଠା କରି ୧୦୦ରୁ ଅଧିକ ଛୋଟ ପିଲାଙ୍କୁ ଥଇଥାନ କରିଯାଇଛନ୍ତି ।

ସମାଜରେ ଗୋ ରକ୍ଷା ପାଇଁ ସେ ପ୍ରଚାର କରୁଥିଲେ । ଗାଈ ହମାରୀ ମାତା ହେଁ । ସବକୀ ଜୀବନ ଦାତା ହେଁ ଥିଲା ତାଙ୍କର ବାର୍ତ୍ତା । ଗାଈ କ୍ଷୀର ପିଇ ଆମେ ଜୀବନ ଧାରଣ କରୁଛେ, ତାର ଖତ ନେଇ ବିଲରେ ଚାଷ କରୁଛେ ।

ସାଂପ୍ରତିକ ସମାଜରେ ନାରୀ ନିର୍ଯ୍ୟାତନା, ମଦର ବହୁଳ ପ୍ରସାର ଉପରେ ଉଦ୍‌ବେଗ ପ୍ରକାଶ କରି ପାର୍ବତୀଗିରି ଅତ୍ୟନ୍ତ ମର୍ମାହତ ହେଉଥିଲେ । ଦିନେ ସେ ମଦ ଦୋକାନ ଆଗରେ ପିକେଟିଂ କରୁଥିଲେ । ମଦଭାଟି ଖୋଲାଇ ଦେଉନଥିଲେ । ଏ ସଂପର୍କରେ ତାଙ୍କର ଏକ ଅଭିଜ୍ଞତା ବର୍ଣ୍ଣନା କରି କହିଥିଲେ - ''୧୯୪୨ ମସିହାରେ ଦିନେ ବରଗଡ଼ରେ ଗୋଟିଏ ମଦଭାଟିକୁ ମୁଁ ଗଲି । ଭାଟିବାଲା କହିଲା, କୁଆଡ଼େ ଆସିଲ ? ମୁଁ କହିଲି - ମଦଭାଟି ଭାଂଗିବି । ସେ କହିଲା, ତୁମେ ମୋ କୋଳରେ ବସିବ । ମୁଁ କହିଲି - କାହିଁକି ନ ବସିବି । ତୁମେ ମୋ ବାପା । ମୋତେ ଜନ୍ମ ଦେଇଛ । ପିଲାଦିନୁ ମୁଁ ତୁମ କୋଳରେ ବସିଛି । ତେଣୁ ଏହିକ୍ଷଣି ବସିବି । ଦୁଃଖ ନାହିଁ । ବଡ଼ ହେଲେ ତୁମେ ମୋତେ ବାହା କରାଇଦେବ । କନ୍ୟାଦାନ ତୁମେ କରିବ । ତେଣୁ ତୁମେ ମୋ ପିତୃତୁଲ୍ୟ । ଏମିତି କଥାରେ ଭାଟିବାଲା ଖୁସି ହୋଇ କହିଲା, ତୁମେ ମଦଭାଟି ଭାଂଗିପାର । ସେଇଠୁ କେତେ ମାଠିଆ ମଦ ମୁଁ ଭାଂଗିଥିଲି । କିନ୍ତୁ ସ୍ୱାଧୀନତା ଆସିଲା । ଆମେ ଗୋରା ଲୋକଙ୍କୁ ତଡ଼ିଲେ ସତ ତାଙ୍କ ମଦକୁ ଆଶ୍ରୟ ଦେଲେ । ଏହାଠାରୁ ବଳି ଦୁଃଖର କଥା କଣ ଅଛି ।''

ନାରୀ ନିର୍ଯ୍ୟାତନା ଓ ନାରୀଶିକ୍ଷା ସଂପର୍କରେ ଖେଦୋକ୍ତି ପ୍ରକାଶ କରି ସେ କହୁଥିଲେ, ପୂର୍ବରୁ ନାରୀ ନିର୍ଯ୍ୟାତନା ନଥିଲା । ଯୌତୁକ ପ୍ରଥା ନ ଥିଲା । ଏପରିକି ଶାଶୁମାନେ ବୋହୂଙ୍କୁ ଦଣ୍ଡ ଦେଉନଥିଲେ ବା ପୋଡ଼ି ଜାଳି ମାରୁ ନଥିଲେ । ଏବେ ବୋହୂଙ୍କୁ ଆଣିବା ପୂର୍ବରୁ ପଚରାଯାଉଛି କେତେ ଟଙ୍କା ଦେବ । ରଙ୍ଗିନ୍ ଦେବ କି ନାହିଁ । ଫ୍ରିଜ ଦେବକି ନାହିଁ । ଟି.ଭି. ଦେବକି ନାହିଁ । ତେଣୁ ଯେତେ ପାଠ ପଢ଼ିଥିଲେ ବି ଝିଅଙ୍କର ଅବସ୍ଥା ଭଲ ରହୁନାହିଁ ।

ଆଗେ ଝିଅମାନେ କମ୍ ପାଠ ପଢ଼ୁଥିଲେ । ତଥାପି ଶାଶୁଘରେ ତାଙ୍କର ଇଜ୍ଜତ ଥିଲା । ବର୍ତ୍ତମାନ ସେଭଳି ନାହିଁ ।

ଆମର ଆଶା ଆକାଂକ୍ଷା ପୂରଣ ପାଇଁ ତ ଆମେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲୁ । ଗାନ୍ଧିଜୀ କହିଥିଲେ, ସ୍ୱରାଜ ଆସିଲେ ସବୁ ପ୍ରକାରର ସୁବିଧା ହେବ । ସ୍ତ୍ରୀ ଲୋକମାନଙ୍କର ଅନେକ ସୁବିଧା ହେବ । ଏପରିକି ଅନ୍ଧାର ରାତିରେ ସେମାନେ ଏକୁଟିଆ ଯାଇ ପାରିବେ । ଭାରତ ସ୍ୱାଧୀନ ହେଲା କିନ୍ତୁ ସେକଥା ଆଉ ହେଲାନାହିଁ ।

' ଏଇ ତଥାକଥିତ ସ୍ୱାଧୀନତାରେ କେବଳ ପାର୍ବତୀ ଗିରି ନୁହନ୍ତି, ଅନେକ ସ୍ୱପ୍ନ ବିଳାସୀ ସଂଗ୍ରାମୀର ମୋହଭଂଗ ହୋଇଛି, ଏକଥା କହିବା ନିଷ୍ପ୍ରୟୋଜନ । ଏକ ନୂଆ ରାମରାଜ୍ୟ ଗଢ଼ିବା ସ୍ୱପ୍ନ ଦଗଧ ଫୁଲବନ ଭଳି ପୋଡ଼ିଜାଳି ପାଉଁଶ ହୋଇ ଯାଇଛି । ପାର୍ବତୀ ଗିରି ନିଜ କର୍ମରୁ ବିଚ୍ୟୁତ ହୋଇ ନଥିଲେ । ସେ ଆଶାୟୀ ଥିଲେ ଗାନ୍ଧିଜୀଙ୍କ ରାମରାଜ୍ୟ ନିଶ୍ଚୟ ଆସିବ । ସତ୍ୟ ଶାନ୍ତି ଅହିଂସାର ଜୟ ହେବ ।

---

ସୁଆଁପଦା, କେନ୍ଦୁଝର

## ଜଗନ୍ନାଥ ଧର୍ମ ଓ ସଂସ୍କୃତି ଉପରେ ବ୍ୟାପକ ଗବେଷଣା ହେବା ଆବଶ୍ୟକ

ମୁଖ୍ୟମନ୍ତ୍ରୀ

ସମସ୍ତ ଧର୍ମର ସମନ୍ୱୟ ଜଗନ୍ନାଥ ଧର୍ମ । ଓଡ଼ିଶାର ସଂସ୍କୃତି ହିଁ ଜଗନ୍ନାଥ ସଂସ୍କୃତି । ଶ୍ରୀ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ସମସ୍ତ ଦିଗ ଉପରେ ବ୍ୟାପକ ଗବେଷଣା ହେବା ଆବଶ୍ୟକ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରକାଶ କରିଛନ୍ତି ।

ଗତ ଡିସେମ୍ବର ୧୬ ତାରିଖରେ ସ୍ଥାନୀୟ ସୂଚନାଭବନଠାରେ ଭୁବନେଶ୍ୱରର ଶ୍ରୀ ଜଗନ୍ନାଥ ଗବେଷଣା ପ୍ରତିଷ୍ଠାନର ଷୋଡ଼ଶ ବାର୍ଷିକୋତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ, ଜଗନ୍ନାଥ ଧର୍ମ ଓ ସଂସ୍କୃତି ସମ୍ବନ୍ଧରେ ଜର୍ମାନୀର ପ୍ରଥିତଯଶା ଐତିହାସିକ-ଗବେଷକ ପ୍ରଫେସର ଡଃ ହରମାନ କୁଲ୍‌କେ ବହୁ ଉଚ୍ଚକୋଟୀର ପୁସ୍ତକ ରଚନା କରିଯାଇଛନ୍ତି । ଏହି ଐତିହାସିକ କୃତିଗୁଡ଼ିକ ମଧ୍ୟରେ ''ଦି କଲ୍ଟ ଅଫ ଜଗନ୍ନାଥ ଏଣ୍ଡ ରିଜିଓନାଲ ଟ୍ରାଡ଼ିସନ୍ ଅଫ୍ ଓଡ଼ିଶା'' ଜଗନ୍ନାଥ ସଂସ୍କୃତିର ବ୍ୟାପକତା ସଂପର୍କରେ ଆଲୋକପାତ କରିଛି ।

ମୁଖ୍ୟମନ୍ତ୍ରୀ କହିଲେ ଯେ, ଓଡ଼ିଶାର ନୌବାଣିଜ୍ୟର ପରଂପରା ବହୁ ପ୍ରାଚୀନ ଓ ସୁମହାନ । ଏ ସମ୍ବନ୍ଧୀୟ ବିସ୍ତୃତ ପ୍ରାମାଣିକ ତଥ୍ୟ ସଂଗୃହୀତ ହେବା ମଧ୍ୟ ଜରୁରୀ । ଓଡ଼ିଶାର କଳା, ସ୍ଥାପତ୍ୟ ଏବେ ମଧ୍ୟ ମନ୍ଦିର ଗାତ୍ରରେ ବିଦ୍ୟମାନ । କଳିଙ୍ଗର ବିଭବ, ବିଭୂତି ସମ୍ବନ୍ଧରେ ଗବେଷଣା ହେବା ଆବଶ୍ୟକ । ଶ୍ରୀ ଜଗନ୍ନାଥ ଗବେଷଣା ପ୍ରତିଷ୍ଠାନ ଏ ଦିଗରେ ଗବେଷଣା କରିବା ପାଇଁ ଶ୍ରୀ ପଟ୍ଟନାୟକ ପରାମର୍ଶ ଦେଇଥିଲେ ।

ଏହି ଉତ୍ସବରେ ସମ୍ମାନିତ ଅତିଥି ରୂପେ ଯୋଗ ଦେଇ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ପ୍ରଫେସର ଗୌରକିଶୋର ଦାସ କହିଲେ ଯେ, ଜଗନ୍ନାଥ ମନ୍ଦିରଗୁଡ଼ିକର ସ୍ଥାପତ୍ୟ, ଜଗନ୍ନାଥ ଭଜନ, ରଥଯାତ୍ରା ଓ ସର୍ବୋପରି ଜଗନ୍ନାଥ ସଂସ୍କୃତି ଉପରେ ଏହି ଅନୁଷ୍ଠାନ ଅଧିକ ଗବେଷଣା କରିବା ଉଚିତ । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରତିଷ୍ଠାନକୁ ସାହାଯ୍ୟ ଯୋଗାଇ ଦିଆଯିବ ବୋଲି ସେ କହିଥିଲେ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର କମରୁଦ୍ଦିନ ଖାଁ ଏହି ଉତ୍ସବରେ ଅନ୍ୟତମ ସମ୍ମାନିତ ଅତିଥି ରୂପେ ଯୋଗଦେଇ ଜଗନ୍ନାଥ ଧର୍ମ ଓ ସୁଫିବାଦ ମଧ୍ୟରେ ବହୁ ସାମଞ୍ଜସ୍ୟ ରହିଛି ବୋଲି ପ୍ରକାଶ କରିଥିଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ଜଗନ୍ନାଥ ଗବେଷଣା ପ୍ରତିଷ୍ଠାନ ପକ୍ଷରୁ ଐତିହାସିକ ଡକ୍ଟର ହରମାନ କୁଲ୍‌କେଙ୍କୁ ନବକଳେବର ପୁରସ୍କାର, ସାହିତ୍ୟିକ ଶ୍ରୀ ଚନ୍ଦ୍ରଶେଖର ରଥଙ୍କୁ ଶ୍ରୀ ଜଗନ୍ନାଥ ପୁରସ୍କାର, ପ୍ରଶାସକ ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ରଙ୍କୁ ଶ୍ରୀ ମନ୍ଦିର ପୁରସ୍କାର, କଣ୍ଠଶିଳ୍ପୀ ଶ୍ରୀ ଭିକାରୀ ଚରଣ ବଳଙ୍କୁ ଶ୍ରୀ ଗୀତଗୋବିନ୍ଦ ପୁରସ୍କାରରେ ସମ୍ମାନିତ କରିଥିଲେ ।

ଭାରତ ସରକାରଙ୍କ ଆର୍ଥିକ ସହାୟତାରେ ଶ୍ରୀ ଜଗନ୍ନାଥ ଗବେଷଣା ପ୍ରତିଷ୍ଠାନ ପକ୍ଷରୁ ''ଇଣ୍ଟିଗ୍ରେସନ ଅଫ୍ ଟ୍ରାଇବାଲ୍ ଆଣ୍ଡ ଆରୟନ୍ କଲଟସ୍ ଇନ୍ ଦି କଲଟ ଅଫ ଜଗନ୍ନାଥ'' ପୁସ୍ତକକୁ ମୁଖ୍ୟମନ୍ତ୍ରୀ ଉନ୍ମୋଚନ କରିଥିଲେ ।

ପରିଷଦର ସଭାପତି ପ୍ରଫେସର ଗଙ୍ଗେଶ୍ୱର ମହାପାତ୍ର ସଭାରେ ଅଧ୍ୟକ୍ଷତା କରିଥିଲେ ଏବଂ ସଂପାଦକ ଶ୍ରୀ ସୁରେନ୍ଦ୍ର ନାଥ ଦାସ ଅନୁଷ୍ଠାନ ସଂପର୍କରେ ସୂଚନା ପ୍ରଦାନ କରିଥିଲେ ।

# ଗଣତନ୍ତ୍ର ବିକାଶରେ ପଞ୍ଚାୟତିରାଜର ଭୂମିକା

ଶେଖ ଜହରୁଲ୍ ଇସ୍‌ଲାମ୍

ମାନବ ଜାତିର ଆଦି ଇତିହାସ ଅଧ୍ୟୟନ କଲେ ଜଣାଯାଏ ସର୍ବ ପ୍ରଥମେ ପରିବାର, ସମାଜ, ଶାସନ ପ୍ରଭୃତି ନଥିଲା । କାରଣ ମଣିଷ ପ୍ରକୃତିର ମୁକ୍ତ କୋଳରେ ନିଶ୍ଚିନ୍ତରେ ବିଚରଣ କରୁଥିଲା । ଜୋର ଯାହାର ମୂଲକ ତାର ଏହି ନୀତିରେ ମଣିଷ ଚଳିଲା କିଛି ଦିନ । ନିଜର ନିରାପତ୍ତାବୋଧ ବିପନ୍ନ ହେବାରୁ ମଣିଷ ପ୍ରଥମେ ଗଢ଼ିଲା ପରିବାର ଓ ତାପରେ ସୃଷ୍ଟି ହେଲା ସମାଜ । କିନ୍ତୁ ଜନସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ସମାଜ ଭିତରେ ମୁଣ୍ଡଟେକି ଉଠିଲା ହିଂସା, ଦ୍ୱେଷ ଓ ଈର୍ଷା । କେହି ଶାସକ ନଥିଲେ କିମ୍ବା ସେ ସମୟର ମଣିଷକୁ କୌଣସି ନୀତି ନିୟମ ନିୟନ୍ତ୍ରିତ କରୁ ନଥିଲା । ନିଜର ସ୍ଥିତି ବିପନ୍ନ ହେବାରୁ ମଣିଷ ଚାହିଁଲା ଜଣେ ଶାସକ, ଯାହାର ନିର୍ଦ୍ଦେଶରେ ସମସ୍ତେ ଶାନ୍ତି ଓ ସହାବସ୍ଥାନ ନୀତିରେ ନିଶ୍ଚିନ୍ତରେ ଜୀବନଯାପନ କରିପାରିବେ । ଏହି ସମୟରେ ପ୍ରଥମେ ସୃଷ୍ଟି ହେଲା ରାଜା ପଦ ।

କିଛି ଦିନ ରାଜତନ୍ତ୍ର ନୀତି ଓ ନିୟମ ଦ୍ୱାରା ନିୟନ୍ତ୍ରିତ ହୋଇ ଚାଲିଲା । ମଣିଷ ମଧ୍ୟ ରାଜାଙ୍କର ବାହୁଛାୟା ତଳେ ନିଜକୁ ନିରାପଦ ମନେକଲା । କିନ୍ତୁ ଏକଛତ୍ରବାଦ ରାଜତନ୍ତ୍ରକୁ କ୍ରମେ ଦୁର୍ବଳ କରିପକାଇଲା । ଜଣେ ରାଜା ହେଲେ ତାଙ୍କର ବଂଶଧରମାନେ ପୁରୁଷାନୁକ୍ରମେ ରାଜ୍ୟ ଶାସନ କରିବାକୁ ଲାଗିଲେ । ସେମାନେ ପ୍ରଜାଙ୍କର ସ୍ୱାର୍ଥପ୍ରତି ଦୃଷ୍ଟି ନ ଦେଇ ବିଳାସ ବ୍ୟସନରେ ମାତି ସ୍ୱେଚ୍ଛାଚାରୀ ହୋଇପଡ଼ିଲେ । କ୍ଷମତା ଓ ଧନ ଲିପ୍ସା ସେମାନଙ୍କୁ ଅତ୍ୟାଚାରୀ କରିଦେଲା । ଅତ୍ୟାଚାର ଜର୍ଜରିତ ମଣିଷ ଏହି ଅତ୍ୟାଚାରରୁ ମୁକ୍ତି ଲାଭ ପାଇଁ ବ୍ୟାକୁଳ ହୋଇ ଉଠିଲା । ସେ ଚାହିଁଲା ପରିବର୍ତ୍ତନ ଅର୍ଥାତ୍ ରାଜତନ୍ତ୍ରର ବିଲୋପ । ମଣିଷର ବିଦ୍ରୋହ ଫଳରେ ରାଜତନ୍ତ୍ର ଲୋପ ପାଇଗଲା । ଏହାର ସ୍ଥାନ ପୂରଣ କଲା ସ୍ୱାୟତ୍ତ ଶାସନ । ସ୍ୱାୟତ୍ତ ଶାସନ ହିଁ ପଞ୍ଚାୟତିରାଜର ଜନକ ।

ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନ ଏକ ସ୍ୱୟଂକ୍ରିୟ ଗ୍ରାମୀଣ ଅନୁଷ୍ଠାନ । ଭାରତରେ ଗ୍ରାମାଞ୍ଚଳର ଉନ୍ନତି ଓ ପ୍ରଗତି ଏହାର ମୁଖ୍ୟ ଲକ୍ଷ୍ୟ । ପଞ୍ଚାୟତିରାଜର ସଫଳତା ଉପରେ ଅନୁସନ୍ଧାନ କରି ବଳବନ୍ତ ରାୟ ମେହେଟ୍ଟା କମିଟି ମତ ଦେଇଥିଲେ - '' ପଞ୍ଚାୟତିରାଜ ମାଧ୍ୟମରେ କ୍ଷମତାର ବିକେନ୍ଦ୍ରୀକରଣ ଓ ଶାସନ କଳର ବିସ୍ତାରଣ ଦ୍ୱାରା ଗ୍ରାମାଞ୍ଚଳର ସାମୂହିକ ଉନ୍ନତି ହେବା ସଙ୍ଗେ ସଙ୍ଗେ ପଞ୍ଚାୟତିରାଜର ମୂଳଲକ୍ଷ୍ୟ ପୂର୍ଣ୍ଣ ହୋଇ ପାରିବ । ଏହା ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଭିତ୍ତି ଉପରେ ଏକ ସୁଦୃଢ଼ ଗ୍ରାମାଞ୍ଚଳ ଭାରତ ଗଠନ କରିପାରିବ । ପ୍ରତ୍ୟେକ ଭାରତୀୟଙ୍କର ସର୍ବନିମ୍ନ ଆବଶ୍ୟକତା ପୂର୍ଣ୍ଣ କରିବା ସରକାରଙ୍କର ଲକ୍ଷ୍ୟ । ପଞ୍ଚାୟତିରାଜର ସଫଳତା ବିନା ଏହି ଲକ୍ଷ୍ୟ ପୂରଣ ନହେଲେ ଭାରତ ନିଜକୁ ବିଶ୍ୱ ଦରବାରରେ ପ୍ରଗତି ସ୍ରୋତରେ ମିଶାଇ ଦେବା ସମ୍ଭବ ନୁହେଁ ।

ଗ୍ରାମ ପଞ୍ଚାୟତ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକମାନଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ । ଏହି ନିର୍ବାଚିତ ପ୍ରତିନିଧିମାନେ ଭାରତୀୟ ସଂବିଧାନକୁ ସମ୍ମାନ ଦେଇ ସ୍ଥାନୀୟ ଲୋକମାନଙ୍କର ସମସ୍ୟା- ଗୁଡ଼ିକର ସମାଧାନ, ଗ୍ରାମାଞ୍ଚଳର ଉନ୍ନତି ଓ ପ୍ରଗତି ପାଇଁ ଲୋକଙ୍କ ନିକଟରେ ଦାୟୀ ରୁହନ୍ତି । ଏହି ସ୍ଥାନୀୟ ସଂସ୍ଥା ବା ପଞ୍ଚାୟତ ଆଇନର ପରିସର ମଧ୍ୟରେ କେତେକ ପ୍ରଶାସନିକ, ବ୍ୟବସ୍ଥାପକ ଓ ଅର୍ଥନୀତିକ ନିଷ୍ପତ୍ତି ଗ୍ରହଣ କରିବା ପାଇଁ କ୍ଷମତା ଲାଭ କରିଥାଏ । ଗ୍ରାମାଞ୍ଚଳର ଶିକ୍ଷା, ସଭ୍ୟତା ଓ ସଂସ୍କୃତିର ବିକାଶ ପାଇଁ ପଞ୍ଚାୟତିରାଜର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ରାସ୍ତାଘାଟ ପରିଷ୍କାର କରିବା ଓ ସୁଗମ ରଖିବା, ନାଳ ନର୍ଦ୍ଦମା ସଫେଇ, ଅଳିଆ ଆବର୍ଜନା ନିଷ୍କାସନ, ପାନୀୟ ଏବଂ କୃଷି ନିମନ୍ତେ ଜଳ ଯୋଗାଣ, ସର୍ବସାଧାରଣ ଉଦ୍ୟାନ ବା ପାର୍କ ନିର୍ମାଣ, ରାସ୍ତାରେ ଆଲୋକ ଯୋଗାଣ, ଶିକ୍ଷାର ସର୍ବାଙ୍ଗୀନ ବିକାଶ ଆଦି ପଞ୍ଚାୟତି ସେବାର ଅନ୍ତର୍ଭୁକ୍ତ । ଏହି ସମସ୍ତ ଜନସେବାର ସାର୍ଥକ ରୂପାୟନ ପାଇଁ ଅର୍ଥର ଆବଶ୍ୟକତା ଅପରିହାର୍ଯ୍ୟ । ଏହି ଆବଶ୍ୟକତା ପୂରଣ ପାଇଁ ରାଜ୍ୟ ସରକାରଙ୍କଠାରୁ କିଛି ଆର୍ଥିକ ସାହାଯ୍ୟ ମିଳେ ଓ ପଞ୍ଚାୟତରେ ନିଜସ୍ୱ ଆୟପନ୍ଥା ମଧ୍ୟ ଥାଏ ।

ପଞ୍ଚାୟତିରାଜ ଏକ ସ୍ୱୟଂକ୍ରିୟ ତ୍ରିସ୍ତରୀୟ ଶାସନ ସଂଗଠନ । ଏଗୁଡ଼ିକ ହେଲା-ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ । ଗ୍ରାମ ପଞ୍ଚାୟତ ମୂଳସ୍ତରରେ, ପଞ୍ଚାୟତ ସମିତି ମଧ୍ୟ ସ୍ତରରେ ଓ ଜିଲ୍ଲା ପରିଷଦ ଶୀର୍ଷ ସ୍ତରରେ କାର୍ଯ୍ୟ କରିଥାଏ । ପଞ୍ଚାୟତିରାଜ ମାଧ୍ୟମରେ ଗ୍ରାମାଞ୍ଚଳ ଲୋକମାନେ ସ୍ଥାନୀୟ ସମସ୍ୟାଗୁଡ଼ିକର ସମାଧାନରେ ଓ ଶାସନ ପରିଚାଳନାରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରନ୍ତି । ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣ ପଞ୍ଚାୟତିରାଜର ମୁଖ୍ୟ ଉଦ୍ଦେଶ୍ୟ । ଏହାଦ୍ୱାରା ଧନୀ-ଦରିଦ୍ର-ଦୁର୍ବଳ ସବଳ ନିର୍ବିଶେଷରେ ପ୍ରତ୍ୟେକ ଭାରତୀୟ ଗଣତନ୍ତ୍ରର ମୌଳିକ ଲକ୍ଷ୍ୟ ସହିତ ପରିଚିତ ହେବା ସଙ୍ଗେ ସଙ୍ଗେ ନାଗରିକ ସ୍ୱାଧୀନତାର ଅର୍ଥ ଓ ଦେଶ ପ୍ରତି ନିଜର କର୍ତ୍ତବ୍ୟ ହୃଦୟଙ୍ଗମ କରିପାରିବେ । ପଞ୍ଚାୟତିରାଜ ବ୍ୟବସ୍ଥା ଦ୍ୱାରା ସରକାର ଗ୍ରାମ ପଞ୍ଚାୟତକୁ କ୍ଷମତା ଓ ଦାୟିତ୍ୱ ହସ୍ତାନ୍ତର କରିଆସୁଛନ୍ତି । ଗ୍ରାମାଞ୍ଚଳରେ

ବିଭିନ୍ନ ବିକାଶମୁଖୀ ଯୋଜନାଗୁଡ଼ିକର ସଫଳ ରୂପାୟନ ପଞ୍ଚାୟତିରାଜର ମୁଖ୍ୟ ଦାୟିତ୍ୱ ।

ଜନସାଧାରଣଙ୍କର ସହଯୋଗ ବିନା ଜାତୀୟ ପ୍ରଗତି ସମ୍ଭବ ନୁହେଁ । ଏଣୁ ଦେଶର ସମୃଦ୍ଧି ଓ ଜାତୀୟ ବିକାଶ କେନ୍ଦ୍ର ଓ ସ୍ଥାନୀୟ ସରକାରଙ୍କର ପାରସ୍ପରିକ ସହଯୋଗ ଉପରେ ନିର୍ଭର କରେ । କିନ୍ତୁ କେନ୍ଦ୍ର ଓ ରାଜ୍ୟ ସରକାର ସାମୁହିକ ବିକାଶ କାର୍ଯ୍ୟରେ ବ୍ୟସ୍ତ ରହୁଥିବାରୁ ଆଞ୍ଚଳିକ ସମୃଦ୍ଧି ଓ ବିକାଶର ଦାୟିତ୍ୱ ଗ୍ରାମ ପଞ୍ଚାୟତ ଗ୍ରହଣ କରି ଥାଆନ୍ତି । ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନ ବା ପଞ୍ଚାୟତିରାଜ ଗଣତନ୍ତ୍ରର ସଫଳ ରୂପାୟନ ପାଇଁ ମୁଖ୍ୟ ଭୂମିକା ଗ୍ରହଣ କରେ । ଗଣତନ୍ତ୍ରକୁ ସର୍ବାଧିକ ଜନପ୍ରିୟ ଓ ସଫଳ କରିବା ପାଇଁ ନିମ୍ନରୁ ଉଚ୍ଚ ପର୍ଯ୍ୟନ୍ତ ସମସ୍ତଙ୍କର ସହଯୋଗ ଆବଶ୍ୟକ । ଶିକ୍ଷିତ ଓ ବିଚାରବନ୍ତ ନାଗରିକ ଜୀବନକୁ ପରିପୁଷ୍ଟ କରିଥାଆନ୍ତି । ଏହି ପ୍ରକାର ନାଗରିକ ଗଢ଼ିବାରେ ପଞ୍ଚାୟତିରାଜ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ ।

ଶ୍ରେଣୀ ବିହୀନ ସମାଜ ଗଠନ ପଞ୍ଚାୟତିରାଜର ମୂଳ ଲକ୍ଷ୍ୟ । ଏହା ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଏକତା ସ୍ଥାପନ କରି ସାମାଜିକ ସଂହତିକୁ ସୁଦୃଢ଼ କରେ । ରାଜନୀତିକ, ଅର୍ଥନୀତିକ ଓ ସାଂସ୍କୃତିକ ପରୀକ୍ଷା ପାଇଁ ପଞ୍ଚାୟତିରାଜ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରିଥାଏ । ସ୍ଥାନୀୟ ଉଦ୍‌ଯୋଗର ପରିପ୍ରକାଶ ପାଇଁ ପଞ୍ଚାୟତିରାଜ ଉର୍ବର କ୍ଷେତ୍ର ପ୍ରସ୍ତୁତ କରିଦିଏ । ଏକ ନିର୍ଦ୍ଦିଷ୍ଟ ସୀମିତ ଅଞ୍ଚଳରେ ରାଜନୀତିକ ଓ ଅର୍ଥନୀତିକ ପରୀକ୍ଷା କାର୍ଯ୍ୟ ନିର୍ବିଘ୍ନରେ କରାଯାଇପାରେ । ଏହି ପରୀକ୍ଷାର ଫଳ ଓ ପଦାର୍ଥର ମୂଲ୍ୟାଙ୍କନ ସହଜରେ କରାଯାଇ ଏହାକୁ ପ୍ରଶସ୍ତ କ୍ଷେତ୍ରରେ ରୋପଣ କରାଯାଇପାରେ । ପଞ୍ଚାୟତିରାଜ ଏହି ସବୁ ଉପକାରର ମୂଳ ସ୍ରୋତ ।

ବୈଦିକ ଯୁଗରେ ପଞ୍ଚାୟତିରାଜର ଉତ୍ପତ୍ତି ଓ କ୍ରମ ବିକାଶ ଘଟିଥିଲା । ଆଧୁନିକ ଯୁଗରେ ୧୮୦୫ ମସିହାରେ ଲର୍ଡ଼ ରିପନଙ୍କ ଦ୍ୱାରା ଏହା ବିହାର, ବଙ୍ଗ ଓ ଓଡ଼ିଶାରେ ପ୍ରବର୍ତ୍ତିତ ହେଲା । କିନ୍ତୁ ସ୍ୱାଧୀନୋତ୍ତର ଯୁଗରେ ପଞ୍ଚାୟତିରାଜ ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣର ମୌଳିକ ଧାରଣା ଉପରେ ବର୍ଦ୍ଧିତମାନ ।

ମହାତ୍ମାଗାନ୍ଧୀ ସ୍ୱାଧୀନତା ପରେ ଶାସନ ପ୍ରଣାଳୀକୁ ଯଥେଷ୍ଟ ପ୍ରଭାବିତ କରିଥିଲେ । ଗ୍ରାମ ସାଧାରଣତନ୍ତ୍ର ଉପରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଅଗାଧ ବିଶ୍ୱାସ ଥିଲା । ସେ ଆହ୍ୱାନ ଦେଇଥିଲେ - ଭବିଷ୍ୟତରେ ଭାରତ ଅଗଣିତ ଗ୍ରାମମାନଙ୍କରେ ନିହିତ । ତାଙ୍କ ମତରେ, ଉଚ୍ଚସ୍ତରରେ ଗଣତନ୍ତ୍ର କେବେହେଲେ ସଫଳ ହୋଇ ପାରିବ ନାହିଁ । ଏହାର ଗଠନ ଅତି ନିମ୍ନ ସ୍ତରରୁ କରାଯିବା ଆବଶ୍ୟକ । ଗଣତନ୍ତ୍ରର ସଫଳତାକୁ ଗ୍ରାମବାସୀମାନେ ଉପଭୋଗ କରନ୍ତି । ଏହା ହିଁ ଗାନ୍ଧୀଙ୍କର ଲକ୍ଷ୍ୟ । ଗ୍ରାମ ସ୍ୱରାଜ୍ୟ ତାଙ୍କ ଦୃଷ୍ଟିରେ ପ୍ରକୃତ ରାମରାଜ୍ୟ ।

ଗାନ୍ଧୀଙ୍କ ମତରେ ପ୍ରକୃତ ଗଣତନ୍ତ୍ରର ଗଠନ ପ୍ରତ୍ୟେକ ଗ୍ରାମର ଲୋକମାନଙ୍କ ଦ୍ୱାରା ହେବା ବାଞ୍ଛନୀୟ । ଗ୍ରାମ ଗଣତନ୍ତ୍ରର ମୂଳ ଭିତ୍ତି । ଭାରତରେ ସମସ୍ତଙ୍କର ଦାୟିତ୍ୱ ସକଳ ଅଂଶ ଗ୍ରହଣ ଉପରେ ନିର୍ଭର କରେ । ଏହା କେବଳ ପଞ୍ଚାୟତିରାଜ ଦ୍ୱାରା ସମ୍ଭବ ହୋଇ ପାରିବ । ପ୍ରତ୍ୟେକ ଗ୍ରାମ ହେବ ଗୋଟିଏ ସାଧାରଣତନ୍ତ୍ର । ଏହାର ପୂର୍ଣ୍ଣ କ୍ଷମତା ପ୍ରାପ୍ତ ଗୋଟିଏ ପଞ୍ଚାୟତ ରହିବ । ମହାତ୍ମା ଗାନ୍ଧୀଙ୍କର କଳ୍ପନାର ଗ୍ରାମ ଏକ ପୂର୍ଣ୍ଣାଙ୍ଗ ସାଧାରଣ ତନ୍ତ୍ର । ଜନସାଧାରଣଙ୍କର ଗ୍ରାମ ସ୍ୱରାଜ ଉପରେ ବିଶ୍ୱାସ ରହିବା ଉଚିତ । ଗ୍ରାମ ନିଜର ଆବଶ୍ୟକତା ପୂରଣ ପାଇଁ ସମ୍ବଳର ଅଧିକାରୀ ହେବା ଉଚିତ । ଗ୍ରାମ ସାଧାରଣତନ୍ତ୍ର ନିଜ ଉଦ୍ୟମରେ ଖାଦ୍ୟ ଶସ୍ୟ ଓ ବସ୍ତ୍ର ଉତ୍ପାଦନ କରିବା ଆବଶ୍ୟକ । ଗୃହପାଳିତ ପଶୁମାନଙ୍କ ପାଇଁ ଗ୍ରାମର ପ୍ରାନ୍ତର ସୁରକ୍ଷିତ ହେବା ଜରୁରୀ । ଗ୍ରାମରେ ସାଂସ୍କୃତିକ କାର୍ଯ୍ୟକ୍ରମର ସଂଗଠନ ଏକାନ୍ତ ଆବଶ୍ୟକ । ପ୍ରତ୍ୟେକ ଗ୍ରାମରେ ବିଦ୍ୟାଳୟ ସ୍ଥାପନ ଓ ବାଧ୍ୟତାମୂଳକ ଶିକ୍ଷା ଗଣତନ୍ତ୍ରର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଗ୍ରାମର ନିଜସ୍ୱ ସର୍ବସାଧାରଣ କକ୍ଷ ରହିବା ଉଚିତ । ଗ୍ରାମ ପଞ୍ଚାୟତ ମାଧ୍ୟମରେ ଗ୍ରାମର ଶାସନ ପରିଚାଳନା, ଗ୍ରାମ ପଞ୍ଚାୟତ ବ୍ୟବସ୍ଥାପିକା, ନ୍ୟାୟ ପାଳିକା ଏବଂ କାର୍ଯ୍ୟ ପାଳିକାର ସମସ୍ତ କ୍ଷମତାର ଅଧିକାରୀ ହେବ ।

ପଞ୍ଚାୟତିରାଜ ସଂଗଠନ ଗ୍ରାମାଞ୍ଚଳର ବିକାଶ ପାଇଁ ଏକ ସମନ୍ୱିତ ଓ ପ୍ରଣାଳୀ ଯୁକ୍ତ ଅନୁଷ୍ଠାନ । ସ୍ୱାୟତ୍ତ ଶାସନ ପଦ୍ଧତି ଗଣତନ୍ତ୍ରର ପ୍ରାଣକେନ୍ଦ୍ର । ସର୍ବ ସାଧାରଣ ସ୍ୱାର୍ଥ ରକ୍ଷା ପାଇଁ ନାଗରିକମାନଙ୍କର ମନୋବୃତ୍ତି ଗଢ଼ିବାରେ ଓ ଲୋକଙ୍କ ମନରେ ଗଣତନ୍ତ୍ର ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ ସୃଷ୍ଟି କରିବାରେ ଗ୍ରାମପଞ୍ଚାୟତ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ପଞ୍ଚାୟତରାଜ ଗ୍ରାମଗୋଷ୍ଠୀ ତଥା ଜାତୀୟ ବିକାଶ ଯୋଜନାକୁ ବୃହତ୍ ଅବଦାନ ଦେଇ ଥାଏ । ସର୍ବସାଧାରଣଙ୍କର ସାମାଜିକ ଓ ଅର୍ଥନୀତିକ ମଙ୍ଗଳ ପାଇଁ ଅନୁକୂଳ ଅବସ୍ଥା ସୃଷ୍ଟି କରିବାରେ ଗ୍ରାମ ପଞ୍ଚାୟତ ମୁଖ୍ୟ ଭୂମିକା ଗ୍ରହଣ କରେ । କୌଣସି ଜନମଙ୍ଗଳ କାର୍ଯ୍ୟ ଏକ ସନ୍ନିତ ଏବଂ ପ୍ରଣାଳୀଯୁକ୍ତ ସ୍ଥାନୀୟ ଶାସନ ବା ପଞ୍ଚାୟତିରାଜ ବିନା ସମ୍ଭବ ହୋଇ ପାରିବ ନାହିଁ । ଗ୍ରାମ ପଞ୍ଚାୟତ ଗଠନାତ୍ମକ ପରିପ୍ରକାଶ ଓ ଗ୍ରାମ୍ୟ ପୁନର୍ଗଠନର ଭିତ୍ତିଭୂମି । ଗ୍ରାମ ପଞ୍ଚାୟତରେ ଗଠନ ପ୍ରଣାଳୀ ଯେତିକି ଦକ୍ଷ ଓ ତ୍ରୁଟିଶୂନ୍ୟ ହେବ, ଗ୍ରାମାଞ୍ଚଳର ବିକାଶ ସେତିକି ଦ୍ରୁତତର ହୋଇ ପାରିବ ।

ପଞ୍ଚାୟତିରାଜର ମୂଳଭିତ୍ତି ଗ୍ରାମସଭା । ପ୍ରତ୍ୟେକ ଗ୍ରାମ ସ୍ତରରେ ଗ୍ରାମ ସଭା ଗଠନ କରାଯାଏ । ଏହା ପଞ୍ଚାୟତିରାଜର ସର୍ବ ନିମ୍ନସ୍ତର । ପ୍ରତ୍ୟେକ ଗ୍ରାମ ସଭା ପାଇଁ ଗୋଟିଏ କରି ଗ୍ରାମ ପଞ୍ଚାୟତ ଗଠିତ ହୋଇଥାଏ । ଗ୍ରାମ ସଭା ଗୋଟିଏ ଗ୍ରାମ କିମ୍ବା ଲଗାଲଗି ହୋଇ ରହିଥିବା ଏକାଧିକ ଗ୍ରାମକୁ ନେଇ ଗଠିତ ହୁଏ । ଗ୍ରାମ ସ୍ତରରେ ଗଠିତ ହୋଇଥିବାରୁ ଗ୍ରାମ ସଭା ଗଣତନ୍ତ୍ରର ପ୍ରାଥମିକ ସ୍ତର । ଏହା ପ୍ରତ୍ୟକ୍ଷ ଭାବେ ଗଣତନ୍ତ୍ରର ଆଦର୍ଶ । ଗ୍ରାମ ସଭାରେ କାର୍ଯ୍ୟ ନିର୍ବାହୀ କମିଟିର ନାମ ଗ୍ରାମ ପଞ୍ଚାୟତ । ଶାସନର ଏହା ଏକ ବିଧାନ ସମ୍ମତ ଅଙ୍ଗ । ଗ୍ରାମ ପଞ୍ଚାୟତରେ ସରପଞ୍ଚ ଓ ଅନ୍ୟାନ୍ୟ ପଞ୍ଚମାନେ ଗ୍ରାମ ସଭାର ଭୋଟରମାନଙ୍କ ଦ୍ୱାରା ନିର୍ବାଚିତ ହୁଅନ୍ତି । ପଞ୍ଚାୟତ ନିର୍ବାଚନରେ କୌଣସି ଦଳୀୟ ମନୋନୟନ ନଥାଏ । ରାଜନୀତିକ ଦଳମାନଙ୍କର ନିର୍ବାଚନ ସଙ୍କେତ ଏଥିରେ ବ୍ୟବହାର କରାଯାଏ ନାହିଁ ।

ଦ୍ୱିସ୍ତରୀୟ ପଞ୍ଚାୟତରାଜର ମଧ୍ୟ ସ୍ତରରେ ପଞ୍ଚାୟତ ସମିତି ଅବସ୍ଥିତ । ପ୍ରତି ବ୍ଲକ ବା ମଣ୍ଡଳରେ ପଞ୍ଚାୟତ ସମିତି ଗ୍ରାମାଞ୍ଚଳର ବିକାଶ ପାଇଁ ସମସ୍ତ ସରକାରୀ ଯୋଜନା ଏବଂ ଅନୁଦାନ ପଞ୍ଚାୟତ ସମିତି ଜରିଆରେ କରାଯାଇ ଥାଏ । ଏହା ଗଣତନ୍ତ୍ରର କେନ୍ଦ୍ର

ବିନ୍ଦୁ । ପଞ୍ଚାୟତ ସମିତିରେ ଜଣେ ଚେୟାରମ୍ୟାନ ଓ ଜଣେ ଭାଇସ୍ ଚେୟାରମ୍ୟାନ ରୁହନ୍ତି । ଏମାନେ ମଧ୍ୟ ନିର୍ବାଚିତ ହୋଇ ଆସନ୍ତି । ଚେୟାରମ୍ୟାନ ସମିତିର ଅଧିବେଶନରେ ଅଧ୍ୟକ୍ଷତା କରନ୍ତି ।

ପଞ୍ଚାୟତିରାଜର ଶୀର୍ଷ ସ୍ଥାନରେ ରୁହେ ଜିଲ୍ଲା ପରିଷଦ । ଏହି ପରିଷଦ ଜିଲ୍ଲା ସ୍ତରରେ କାର୍ଯ୍ୟ କରେ । ଜିଲ୍ଲା ପରିଷଦ ଜିଲ୍ଲା ମଧ୍ୟରେ ଥିବା ସମସ୍ତ ପଞ୍ଚାୟତ ସମିତିର ଚେୟାରମ୍ୟାନ, ବିଧାନସଭା ସଭ୍ୟ, ପାର୍ଲିଆମେଣ୍ଟ ସଭ୍ୟ, ବିଧାନ ପରିଷଦ ସଭ୍ୟ, ଜିଲ୍ଲା ସମବାୟ ସଭାପତି, ଜିଲ୍ଲା ମଧ୍ୟରେ ଥିବା ପଞ୍ଚାୟତ ସମିତିଗୁଡ଼ିକର ପୂର୍ଣାଙ୍ଗ ସଭ୍ୟମାନଙ୍କ ଦ୍ୱାରା ନିର୍ବାଚିତ ତିନିଜଣ ସଭ୍ୟ, ତପସିଲଭୁକ୍ତ ଜାତି ଓ ଉପଜାତିଙ୍କ ମଧ୍ୟରୁ ନିର୍ଦ୍ଦିଷ୍ଟ କେତେକ ସଦସ୍ୟ, ପ୍ରଶାସନ, ସାଧାରଣ ଜୀବନ ଏବଂ ଗ୍ରାମାଞ୍ଚଳ ବିକାଶ କ୍ଷେତ୍ରରେ ଅଭିଜ୍ଞତା ଅର୍ଜନ କରିଥିବା ମହିଳା ଏବଂ ଅନଗ୍ରସର ଶ୍ରେଣୀ ମଧ୍ୟରୁ କେତେକ ନିର୍ବାଚିତ ସଭ୍ୟମାନଙ୍କୁ ନେଇ ଗଠିତ ହୁଏ । ଜିଲ୍ଲା କଲେକ୍ଟର ଜିଲ୍ଲା ପରିଷଦର ଚେୟାରମ୍ୟାନ ।

ଗ୍ରାମ ପଞ୍ଚାୟତ ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନର ମୂଳଭିତ୍ତି ସ୍ଥାପନ କରେ । ଗ୍ରାମାଞ୍ଚଳର ବିକାଶ ପାଇଁ ଏହା ଏକ ବଳିଷ୍ଠ ଅନୁଷ୍ଠାନ । ଗୋଷ୍ଠୀ ଉନ୍ନୟନ ଯୋଜନା ଗଣତନ୍ତ୍ରର ପ୍ରାଥମିକ ସ୍ତରକୁ ସବଳ ଓ ସକ୍ରିୟ କରାଇବା ଦୃଷ୍ଟିରୁ ଗ୍ରାମପଞ୍ଚାୟତର କ୍ଷମତା ଏବଂ କାର୍ଯ୍ୟ ବହୁଳ ଭାବରେ ବୃଦ୍ଧି ପାଇଛି । ଗ୍ରାମ ପଞ୍ଚାୟତରେ ସମସ୍ତ କାର୍ଯ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ବାଧ୍ୟତାମୂଳକ କାର୍ଯ୍ୟ ଓ ଇଚ୍ଛାଧୀନ କାର୍ଯ୍ୟ । ବାଧ୍ୟତାମୂଳକ କାର୍ଯ୍ୟ କରିବା ପାଇଁ ଗ୍ରାମ ପଞ୍ଚାୟତ ବାଧ୍ୟ । କିନ୍ତୁ ଇଚ୍ଛାଧୀନ କାର୍ଯ୍ୟର ପରିଚାଳନା ଆର୍ଥିକ ସମ୍ବଳ, ଆବଶ୍ୟକତା, ସମୟ ଏବଂ ଅବସ୍ଥା ଦୃଷ୍ଟିରୁ କରାଯାଇଥାଏ । ଓଡ଼ିଶା ଗ୍ରାମପଞ୍ଚାୟତ ଆଇନ ୧୯୬୫ ୪୪ ଧାରାରେ ଗ୍ରାମପଞ୍ଚାୟତର ବାଧ୍ୟତାମୂଳକ କାର୍ଯ୍ୟ ଗୁଡ଼ିକ ହେଲା :- ସର୍ବସାଧାରଣ ରାସ୍ତା ନିର୍ମାଣକ, ମରାମତି, ରକ୍ଷଣାବେକ୍ଷଣ ଓ ଉନ୍ନତି ସାଧନ । ସର୍ବସାଧାରଣ ସ୍ଥାନ ଏବଂ ରାସ୍ତା ଆଦିରେ ଆଲୋକ ବ୍ୟବସ୍ଥା, ଜଳଯୋଗାଣ, ନର୍ଦ୍ଦମା ପରିଷ୍କାର, ସର୍ବସାଧାରଣ ସ୍ଥାନରୁ ବେଆଇନ ଦଖଲ ଉଚ୍ଛେଦ, ଡ୍ରେନ, ପାଇଖାନା, ମୂତ୍ରାଗାର ଆଦିର ନିର୍ମାଣ, ରକ୍ଷଣାବେକ୍ଷଣ ଏବଂ ପରିଷ୍କାର ଜଳ ଯୋଗାଣ କାର୍ଯ୍ୟର ନିର୍ମାଣ ଓ ରକ୍ଷଣାବେକ୍ଷଣ ଏବଂ ଜଳଯୋଗାଣ ବ୍ୟବସ୍ଥା ଏହି ବାଧ୍ୟତାମୂଳକ କାର୍ଯ୍ୟର ଅନ୍ତର୍ଭୁକ୍ତ । ଅଳିଆ, ଆବର୍ଜନା ଆଦିର ପରିଷ୍କାର ଓ ପରିମଳ ସ୍ୱାସ୍ଥ୍ୟରକ୍ଷା, ମହାମାରୀ ଓ ସଂକ୍ରାମକ ରୋଗର ପ୍ରତିରୋଧ ଓ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ, ଅସ୍ୱାସ୍ଥ୍ୟକର ପରିବେଶର ଉନ୍ନତି ସାଧନ, ଅସାଧୁ ଏବଂ ମାରାତ୍ମକ କାର୍ଯ୍ୟ ବା ବୃତ୍ତିର ପ୍ରତିରୋଧ ଓ ନିୟନ୍ତ୍ରଣ, ଜନ୍ମ, ମୃତ୍ୟୁ ଏବଂ ବିବାହ ଆଦିର ହିସାବ, ପଞ୍ଚାୟତ ପରିଚାଳନା ଉପରେ ନ୍ୟସ୍ତ ସମସ୍ତ ସମ୍ପତ୍ତିର ସୁରକ୍ଷା, ରକ୍ଷଣାବେକ୍ଷଣ ଓ ଉନ୍ନତି ସାଧନ, ସର୍ବସାଧାରଣ ଚାରଣ ଭୂମି ଓ ଗ୍ରାମ ଲୋକଙ୍କର ହିତ ଦୃଷ୍ଟିରୁ ଭୂମି ସଂରକ୍ଷଣ, ପରିଚାଳନା ଓ ରକ୍ଷଣାବେକ୍ଷଣ, ଗୋମହିଷାଦି ପ୍ରାଣୀ, ଜନସଂଖ୍ୟା ଓ ଅନ୍ୟାନ୍ୟ ପରିସଂଖ୍ୟାନ ସମ୍ବନ୍ଧୀୟ ରେକର୍ଡ଼ ଆଦିର ରକ୍ଷଣାବେକ୍ଷଣ, ଗୃହପାଳିତ ପଶୁମାନଙ୍କର କ୍ରୟ ବିକ୍ରୟର ହିସାବ, ବୁଲା କୁକୁରମାନଙ୍କର ନିପାତ, ପ୍ରାଥମିକ ଶିକ୍ଷାର ପ୍ରସାର ପାଇଁ ବିଦ୍ୟାଳୟ, ଗୃହ ନିର୍ମାଣ ଏବଂ ରକ୍ଷଣାବେକ୍ଷଣ କାର୍ଯ୍ୟରେ ପଞ୍ଚାୟତ ସମିତିକୁ ସାହାଯ୍ୟ ପ୍ରଦାନ, ଗ୍ରାମ ପରିସୀମା ସଙ୍କେତ ଆଦିର ନିରୀକ୍ଷା, ହାଟ, ମେଳା, ଯାନିଯାତ୍ରା ଆଦିର ନିୟନ୍ତ୍ରଣ, ଶସ୍ୟ ନଷ୍ଟକାରୀ ପୋକମାନଙ୍କର ନିରାକରଣ ବ୍ୟବସ୍ଥା ସହିତ କୃଷି ବିକାଶ ଯୋଜନା ପ୍ରସ୍ତୁତି ଓ କାର୍ଯ୍ୟରେ ପରିଣତ କରିବା, ମୃତ୍ତିକା ସଂରକ୍ଷଣ ଯୋଜନାର କାର୍ଯ୍ୟ କାରିତା ନିରୀକ୍ଷଣ ପ୍ରଭୃତି ମଧ୍ୟ ଗ୍ରାମପଞ୍ଚାୟତର ବାଧ୍ୟତାମୂଳକ କାର୍ଯ୍ୟ ।

ଏହା ବ୍ୟତୀତ ଗ୍ରାମ ପଞ୍ଚାୟତର ଇଚ୍ଛାମୂଳକ କାର୍ଯ୍ୟ ରହିଛି । ଏହି କାର୍ଯ୍ୟଗୁଡ଼ିକ ଗ୍ରାମ ପଞ୍ଚାୟତ ନିଜର ସମ୍ବଳ, ସମୟ ଏବଂ ଆବଶ୍ୟକତା ଦୃଷ୍ଟିରୁ ହାତକୁ ନେଇଥାଆନ୍ତି । ଓଡ଼ିଶା ଗ୍ରାମପଞ୍ଚାୟତ ଆଇନ ୧୯୬୪ ର ୪୫ ଧାରାରେ ଏହି ଇଚ୍ଛାମୂଳକ କାର୍ଯ୍ୟଗୁଡ଼ିକର କଥା ଉଲ୍ଲେଖ କରାଯାଇଛି । ସେଗୁଡ଼ିକ ହେଲା-ଅଗ୍ନି ଶମ ସେବା ବ୍ୟବସ୍ଥା ଏବଂ ଅଗ୍ନୁତ୍ପାତ ସମୟରେ ଧନ ଜୀବନ ରକ୍ଷା, ସର୍ବସାଧାରଣ ସ୍ଥାନ ଏବଂ ରାସ୍ତା କଡ଼ରେ ବୃକ୍ଷରୋପଣ, ଉନ୍ନତ ଧରଣର ଗୋମହିଷାଦି ପ୍ରାଣୀ ପ୍ରଜନନ, ଗ୍ରାମ୍ୟ ଜଙ୍ଗଲର ସୁରକ୍ଷା, ପଶୁମାନଙ୍କୁ ଆକ୍ରାନ୍ତ କରୁଥିବା ସଂକ୍ରାମକ ରୋଗର ପ୍ରତିଷେଧକ, କଂସେଇ ଖାନା ନିର୍ମାଣ ଓ ତାର ରକ୍ଷଣାବେକ୍ଷଣ, ପତିତ ଏବଂ ଚାଷ ଉପଯୋଗୀ ଜମିକୁ କୃଷି କ୍ଷମ କରାଇବା, ସମବାୟ ସମିତି ଓ ସମବାୟ ଭଣ୍ଡାର ଆଦିର ବିକାଶ ସାଧନ, ଦୁର୍ଭିକ୍ଷ ଏବଂ ଅନ୍ୟାନ୍ୟ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ରିଲିଫ ଯୋଗାଣ, ପାଠାଗାର ନିର୍ମାଣ ଏବଂ ରକ୍ଷଣାବେକ୍ଷଣ ଓ ସର୍ବସାଧାରଣ ସ୍ଥାନରେ ଆମୋଦ ପ୍ରମୋଦ ବ୍ୟବସ୍ଥା, ଗ୍ରାମ ଗୋଷ୍ଠୀ କେନ୍ଦ୍ର ସ୍ଥାପନ ଏବଂ ପରିଚାଳନା, ସର୍ବସାଧାରଣ କୋଠାବାଡ଼ି ରକ୍ଷଣାବେକ୍ଷଣ, ମୂର୍ତ୍ତି ଏବଂ ଐତିହାସିକ ସ୍ଥାନଗୁଡ଼ିକର ସୁରକ୍ଷା, ସାଧାରଣହିତ ସୁବିଧା, ସ୍ୱାସ୍ଥ୍ୟ ବା ନିରାପତ୍ତା ଦୃଷ୍ଟିରୁ ଅନ୍ୟ କୌଣସି କାର୍ଯ୍ୟ ବହନ, ମାତୃ ଏବଂ ଶିଶୁ ମଙ୍ଗଳ କାର୍ଯ୍ୟ, ଗ୍ରାମ ଆଖଡ଼ା, କ୍ଲବ, ଖେଳ, ଉତ୍ସବ ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟ ସଂଗଠନ, ନଦୀଘାଟ, ଖରାଦିନିଆ ରାସ୍ତା ଏବଂ କାଂଜିଆହଦା ନିର୍ମାଣ ଓ ରକ୍ଷଣାବେକ୍ଷଣ, ଶସ୍ୟାଗାର ନିର୍ମାଣ, କୁଟୀର ଶିଳ୍ପର ନିର୍ମାଣ, ସଂଗଠନ, ବିକାଶ ଏବଂ ରକ୍ଷଣାବେକ୍ଷଣ, କୃଷି ଓ ଶିଳ୍ପ ପ୍ରଦର୍ଶନୀ ସଂଗଠନ ଏବଂ ତତ୍ତ୍ୱାବଧାନ, ବେକାରୀ ପରିସଂଖ୍ୟାନ ସଂଗ୍ରହ, ସର୍ବସାଧାରଣଙ୍କୁ ରୋଗ ନିବାରକ ଟୀକାଦାନ ଓ ପ୍ରତିଷେଧକ ଇଂଜେକସନ, ଅପମିଶ୍ରିତ ଏବଂ ଅସ୍ୱାସ୍ଥ୍ୟକର ଖାଦ୍ୟର ନିୟନ୍ତ୍ରଣ ଏବଂ ନଷ୍ଟ, ପ୍ରୌଢ଼ଶିକ୍ଷା ଓ ପ୍ରାଥମିକ ସ୍କୁଲ ନିର୍ମାଣ, ଗ୍ରାମ୍ୟ ସେବାଦଳ ଗଠନ, ଜୁଆଖେଳର ପ୍ରତିରୋଧ ଓ ନିଶାନିବାରଣ ଅଭିଯାନ, ଗ୍ରାମ୍ୟ କୃଷି ବନ୍ଧ ନିର୍ମାଣ ଓ ରକ୍ଷଣାବେକ୍ଷଣ ଇତ୍ୟାଦି ।

ପଞ୍ଚାୟତିରାଜ ଶାସନ ସଂସ୍ଥାରେ ଗ୍ରାମ ପଞ୍ଚାୟତ ଦ୍ୱାରା ବହୁବିଧ କାର୍ଯ୍ୟ ସମ୍ପାଦିତ ହୋଇଥାଏ । ଗୃହ ପରିଷ୍କାରଠାରୁ ଆରମ୍ଭ କରି ଅଟ୍ଟାଳିକା ନିର୍ମାଣ ପର୍ଯ୍ୟନ୍ତ ଏ ସମସ୍ତ କାର୍ଯ୍ୟ ଗ୍ରାମପଞ୍ଚାୟତ କରିଥାଏ । ପ୍ରକୃତରେ ଗ୍ରାମ ପଞ୍ଚାୟତରେ କାର୍ଯ୍ୟ ପରିସର ଗ୍ରାମ ଜୀବନର ଅର୍ଥନୀତିକ ନାଗରିକ ଏବଂ ସାମାଜିକ ସ୍ଥିତିକୁ ନିୟନ୍ତ୍ରଣ, ସୁନିର୍ଦ୍ଦେଶିତ ଓ ପରିମାର୍ଜିତ କରାଇବାରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥାଏ । ଗ୍ରାମ ପଞ୍ଚାୟତରେ ମୁଖ୍ୟ ସରପଞ୍ଚ ଏକ ସମ୍ମାନ ଜନକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥାଆନ୍ତି ।

ପଞ୍ଚାୟତିରାଜ ଶାସନରେ ପଞ୍ଚାୟତ ସମିତିର ଭୂମିକା ବଡ଼ ମହତ୍ତ୍ୱପୂର୍ଣ୍ଣ । ଏହା ପଞ୍ଚାୟତି ରାଜର କାର୍ଯ୍ୟ ନିର୍ବାହୀ ଅଙ୍ଗ । ଗଣତନ୍ତ୍ରକୁ ବିକେନ୍ଦ୍ରୀକରଣ କରି ଜନପ୍ରିୟ କରାଇବାରେ ପଞ୍ଚାୟତ ସମିତିର ଭୂମିକା ସୀମାହୀନ । ପଞ୍ଚାୟତ ସମିତିକୁ ପଞ୍ଚାୟତିରାଜର ହୃତପିଣ୍ଡ, ମେରୁଦଣ୍ଡ ବା ପ୍ରକୃତ କର୍ମଶାଳା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗ୍ରାମ ଜୀବନର ପୁନର୍ଜୀବୀକରଣ ପାଇଁ ସରକାରଙ୍କର ସମସ୍ତ ଯୋଜନା ପଞ୍ଚାୟତ ସମିତି ଜରିଆରେ ଖର୍ଚ୍ଚ ହୋଇଥାଏ । ସରକାରଙ୍କ ସମସ୍ତ ପ୍ରକାର ବିକାଶମୂଳକ ଯୋଜନା କାର୍ଯ୍ୟକାରୀ ହେବାର ଏକମାତ୍ର ଗତିପଥ ପଞ୍ଚାୟତ ସମିତି । ବିକାଶମୂଳକ କାର୍ଯ୍ୟରେ ପଞ୍ଚାୟତ ସମିତି ବିଭିନ୍ନ ଭୂମିକା ଗ୍ରହଣ କରିଥାଏ । ଉନ୍ନତ କୃଷି ଉତ୍ପାଦନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଇବା ପଞ୍ଚାୟତ ସମିତିର କାର୍ଯ୍ୟ । ଉନ୍ନତ ବିହନ, ରାସାୟନିକ ସାର ବଣ୍ଟନ, ଗ୍ରାମବାସୀମାନଙ୍କ ମଧ୍ୟରେ ଆଧୁନିକ ଚାଷ ଓ ବୈଜ୍ଞାନିକ ପଦ୍ଧତି ସମ୍ବନ୍ଧରେ ପ୍ରଚାର ଏବଂ ଆଧୁନିକ କୃଷିଯନ୍ତ୍ରପାତିର ବ୍ୟବହାର ଓ ଉପାଦେୟତା ସମ୍ବନ୍ଧରେ ଲୋକଙ୍କୁ ବୁଝାଇବା ପଞ୍ଚାୟତ ସମିତିର କାର୍ଯ୍ୟ । କୂପ ଓ ନଳକୂପ ଖନନ, ଜଳସେଚନ ପାଇଁ ବଡ଼ ବଡ଼ ପୁଷ୍କରିଣୀ ବା ବନ୍ଧ ନିର୍ମାଣ କରି ଜଳ ସଞ୍ଚୟ ଓ ବଣ୍ଟନ ମଧ୍ୟ ପଞ୍ଚାୟତ ସମିତିର କାର୍ଯ୍ୟ । ଉନ୍ନତ ଗୋ ପ୍ରଜନନ କାର୍ଯ୍ୟ ପନ୍ଥାଗ୍ରହଣ, ଦୁଗ୍ଧ ଉତ୍ପାଦନ କେନ୍ଦ୍ର, ଦୁଗ୍ଧ ଯୋଗାଣ, ମତ୍ସ୍ୟ ଚାଷର ବିକାଶ ପ୍ରଭୃତି ପଞ୍ଚାୟତ ସମିତିର କାର୍ଯ୍ୟ ପରିସରଭୁକ୍ତ ।

ସ୍ୱାସ୍ଥ୍ୟ ଏବଂ ଗ୍ରାମାଞ୍ଚଳ ପରିମଳ କ୍ଷେତ୍ରରେ ଜଳ ଯୋଗାଣ ବ୍ୟବସ୍ଥା, ପ୍ରତିଷେଧକ ଟୀକାଦାନ, ମହାମାରୀ ଓ ସଂକ୍ରାମକ ରୋଗ ନିୟନ୍ତ୍ରଣ ମଧ୍ୟ ପଞ୍ଚାୟତ ସମିତିର କାର୍ଯ୍ୟ । ସାମାଜିକ ଶିକ୍ଷା, ଅଗଣିତ ଗ୍ରାମବାସୀଙ୍କ ନୂତନ ନୈତିକ ଚେତନା, ସାମାଜିକ ଓ ସାଂସ୍କୃତିକ ଜ୍ଞାନ ବୃଦ୍ଧି କରିବାରେ ପଞ୍ଚାୟତ ସମିତିର ମହତ୍ତ୍ୱପୂର୍ଣ୍ଣ ଭୂମିକା ବିଶେଷ ଉଲ୍ଲେଖନୀୟ । ସାମାଜିକ ଶିକ୍ଷା ମାଧ୍ୟମରେ ଗ୍ରାମବାସୀମାନଙ୍କୁ ଆତ୍ମନିର୍ଭରଶୀଳ ଓ ପରିଶ୍ରମୀ କରାଇବା, ଗୋଷ୍ଠୀ ଉନ୍ନୟନ ଯୋଜନା ପ୍ରତି ଲୋକଙ୍କର ଦୃଷ୍ଟି ଆକର୍ଷଣ କରିବା ପଞ୍ଚାୟତ ସମିତିର ମହାନ କର୍ତ୍ତବ୍ୟ । ପାଠାଗାର ନିର୍ମାଣ, ଗ୍ରାମ୍ୟଗୋଷ୍ଠୀ କେନ୍ଦ୍ର, ଯୁବସଂଗଠନ, ମହିଳା ସମିତି, କୃଷକ ସମାଜ ଗଠନ ଓ କ୍ରୀଡ଼ା ମାଧ୍ୟମରେ ଶାରୀରିକ ସଂସ୍କୃତି ସୃଷ୍ଟି ମଧ୍ୟ ପଞ୍ଚାୟତ ସମିତିର କର୍ତ୍ତବ୍ୟ । ସମବାୟ ଆନ୍ଦୋଳନକୁ ସଫଳ କରାଇବା ପଞ୍ଚାୟତ ସମିତିର ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ । ଜଳସେଚନ, କୃଷି ଓ ଅନ୍ୟାନ୍ୟ ସମବାୟ ସମିତିଗୁଡ଼ିକର ଗଠନ ଓ ଯତ୍ନ ନେବା ପଞ୍ଚାୟତ ସମିତି ମାଧ୍ୟମରେ କରାଯାଇଥାଏ । ଗ୍ରାମ ରାସ୍ତା ନିର୍ମାଣ ଓ ମରାମତି, ରକ୍ଷଣାବେକ୍ଷଣ ଓ ପୋଲ ପ୍ରଭୃତି ନିର୍ମାଣ କରାଇ ଯୋଗାଯୋଗର ସୁବ୍ୟବସ୍ଥା କରିବା ପଞ୍ଚାୟତ ସମିତିର କର୍ତ୍ତବ୍ୟ । ଏହା ବ୍ୟତୀତ ପଞ୍ଚାୟତ ସମିତିର ଆହୁରି ବହୁ ବିକାଶ ମୂଳକ କାର୍ଯ୍ୟ ରହିଛି । ସେଗୁଡ଼ିକ ହେଲା - ସ୍କୁଲ ଓ ସ୍ୱାସ୍ଥ୍ୟ କେନ୍ଦ୍ରର ବିକାଶ, ବିଶ୍ରାମାଗାର, ସର୍ବସାଧାରଣ ପାର୍କ ଏବଂ ଜଳାଶୟ ନିର୍ମାଣ ଓ ରକ୍ଷଣାବେକ୍ଷଣ । ସ୍କୁଲ ଗୃହ ନିର୍ମାଣ ଓ ରକ୍ଷଣାବେକ୍ଷଣ । ପ୍ରାଥମିକ ଶିକ୍ଷାର ପ୍ରସାର, ରିଲିଫ କାର୍ଯ୍ୟ ସଂଗଠନ, ମେଳା, କୃଷି ଓ ଶିଳ୍ପ ପ୍ରଦର୍ଶନୀ ସଂଗଠନ ଏବଂ ତତ୍ତ୍ୱାବଧାନ, ଅସମର୍ଥ ଓ ମାରାତ୍ମକ ବ୍ୟାଧିର ନିରାକରଣ, ବୃକ୍ଷରୋପଣ ଏବଂ ଗ୍ରାମ ଜଙ୍ଗଲ ସୃଷ୍ଟି ଇତ୍ୟାଦି ।

ଏହା ବ୍ୟତୀତ ପଞ୍ଚାୟତ ସମିତିର ପ୍ରତିନିଧିମୂଳକ କାର୍ଯ୍ୟ ମଧ୍ୟ ଅଛି । ସରକାରଙ୍କର ପ୍ରତିନିଧି ରୂପେ ପଞ୍ଚାୟତ ସମିତି କେତେକ କାର୍ଯ୍ୟ ସମ୍ପାଦନ କରିଥାଏ । ସରକାରୀ ଅର୍ଥ ଦ୍ୱାରା ପ୍ରଯୋଜିତ ଗୋଷ୍ଠୀ ଉନ୍ନୟନ ଯୋଜନାକୁ ପଞ୍ଚାୟତ ସମିତି ପ୍ରତିନିଧି ରୂପେ ସମ୍ପାଦନ କରିଥାଏ । ପଞ୍ଚାୟତ ସମିତି ସରକାରୀ ଋଣ ବଣ୍ଟନରେ ପ୍ରତିନିଧିତ୍ୱ କରେ । ଏହା ବ୍ୟତୀତ ଗ୍ରାମ ପଞ୍ଚାୟତଗୁଡ଼ିକର ପରିଦର୍ଶନ ଓ ନିରୀକ୍ଷା କାର୍ଯ୍ୟ ପଞ୍ଚାୟତ ସମିତି କରେ । ବିକାଶମୂଳକ ଯୋଜନାଗୁଡ଼ିକକୁ କାର୍ଯ୍ୟକାରୀ କରାଇବାରେ ସମିତି ପଞ୍ଚାୟତମାନଙ୍କୁ ଆର୍ଥିକ ଏବଂ ବୈଷୟିକ ସାହାଯ୍ୟ ଯୋଗାଇ ଦେଇଥାଏ ।

କେତେକ ପ୍ରଶାସନିକ କାର୍ଯ୍ୟ ତୁଲାଇବା ମଧ୍ୟ ପଞ୍ଚାୟତ ସମିତିର ଦାୟିତ୍ୱ । ପଞ୍ଚାୟତ ସମିତି ଦୁଇ ପ୍ରକାର କାର୍ଯ୍ୟପାଳିକାକୁ ନେଇ ଗଠିତ । ସେ ଦୁଇଟି ହେଲା- ରାଜନୀତି କାର୍ଯ୍ୟପାଳିକା ଏବଂ ପ୍ରଶାସନିକ କାର୍ଯ୍ୟପାଳିକା । ସମିତିର ଚେୟାରମ୍ୟାନ୍ ଜନସାଧାରଣଙ୍କର ପ୍ରତିନିଧି । ଏଣୁ ତାଙ୍କୁ ରାଜନୀତିକ କାର୍ଯ୍ୟପାଳିକା କୁହାଯାଏ । କିନ୍ତୁ ବି.ଡ଼ି.ଓ ବା ମଣ୍ଡଳ ଅଧିକାରୀ ନିର୍ବାଚିତ ପ୍ରତିନିଧି ନୁହନ୍ତି । ସେ ଜଣେ ସରକାରୀ କର୍ମଚାରୀ । ବାସ୍ତବ କ୍ଷେତ୍ରରେ ସେ ଶାସନ କାର୍ଯ୍ୟ ପରିଚାଳନା କରୁଥିବାରୁ ତାଙ୍କୁ ପ୍ରଶାସନିକ କାର୍ଯ୍ୟପାଳିକା କୁହାଯାଏ ।

ପଞ୍ଚାୟତ ସମିତିର କାର୍ଯ୍ୟଗୁଡ଼ିକର ସଫଳତା ପାଇଁ ରାଜନୀତିକ ଓ ପ୍ରଶାସନିକ କାର୍ଯ୍ୟପାଳିକା ମଧ୍ୟରେ ପାରସ୍ପରିକ ସହଯୋଗ ଓ ସମନ୍ୱୟତା ଏକାନ୍ତ ଆବଶ୍ୟକ । ବି.ଡ଼ି.ଓ ଏବଂ ପଞ୍ଚାୟତ ସମିତିର ଚେୟାରମ୍ୟାନଙ୍କ ମଧ୍ୟରେ ସହଯୋଗ ରହିଲେ ପଞ୍ଚାୟତ ସମିତି ଲକ୍ଷ୍ୟ ପୂରଣ ହେବା ସଙ୍ଗେ ସଙ୍ଗେ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥା ସୁଦୃଢ଼ ଓ ତ୍ରୁଟିହୀନ ହେବ । ପଞ୍ଚାୟତ ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନର ମେରୁଦଣ୍ଡ ।

ପଞ୍ଚାୟତ ସମିତିର ଶୀର୍ଷରେ ଥିବା ଜିଲ୍ଲା ପରିଷଦର ଗଣତନ୍ତ୍ରର ସୁରକ୍ଷା ପାଇଁ ଜାତୀୟ କର୍ତ୍ତବ୍ୟ ରହିଛି । ଜିଲ୍ଲା ପରିଷଦ ଜିଲ୍ଲା ସ୍ତରରେ କାର୍ଯ୍ୟକରେ । ପ୍ରକୃତରେ ପଞ୍ଚାୟତ ସମିତି ସମସ୍ତ ବିକାଶମୂଳକ କାର୍ଯ୍ୟ କରିଥାଏ । ଜିଲ୍ଲା ପରିଷଦ, ପଞ୍ଚାୟତ ସମିତି ଓ ଗ୍ରାମ ପଞ୍ଚାୟତ ଉପରେ ନିୟନ୍ତ୍ରଣ ରକ୍ଷା କରେ । ଜିଲ୍ଲା ପରିଷଦର କାର୍ଯ୍ୟାବଳୀ ଦୁଇ ଭାଗରେ ବିଭକ୍ତ -କାର୍ଯ୍ୟପାଳିକା ଓ ସମନ୍ୱୟ । ଜିଲ୍ଲା ପରିଷଦ ପଞ୍ଚାୟତ ସମିତିର ବାର୍ଷିକ ଆୟବ୍ୟୟ ଅଟକଳକୁ ନିରୀକ୍ଷା ଏବଂ ଗ୍ରହଣ କରିବା, ସମିତି ଗୁଡ଼ିକର ଦକ୍ଷକାର୍ଯ୍ୟ ସମାପନ ପାଇଁ ପ୍ରଶାସନିକ ନିର୍ଦ୍ଦେଶ ଦେବା; ପଞ୍ଚାୟତ ସମିତିଠାରୁ ଯେକୌଣସି ବାର୍ତ୍ତା, ଖବର ଓ ରେକର୍ଡ଼ ମାଗିବା ପ୍ରଭୃତି କରିପାରିବେ ।

ଜିଲ୍ଲା ପରିଷଦର ସମନ୍ୱୟ କାର୍ଯ୍ୟଗୁଡ଼ିକ ହେଲା - ପଞ୍ଚାୟତ ସମିତିର ବିକାଶମୂଳକ ଯୋଜନାଗୁଡ଼ିକର ସମନ୍ୱୟ କରିବା, ଏକାଧିକ ପଞ୍ଚାୟତ ସମିତିମାନଙ୍କ ମଧ୍ୟରେ କାର୍ଯ୍ୟକାରୀ ହେଉଥିବା ସମଜାତୀୟ କାର୍ଯ୍ୟରେ ସମନ୍ୱୟ କରିବା, ରାଜ୍ୟ ସରକାରଙ୍କର ଆର୍ଥିକ ଅନୁଦାନକୁ ସମିତିମାନଙ୍କ ମଧ୍ୟରେ ବଣ୍ଟନ କରିବା, ପଞ୍ଚାୟତ ଓ ସମିତିମାନଙ୍କରେ ଘଟୁଥିବା ବେନିୟମ କାର୍ଯ୍ୟଗୁଡ଼ିକ ଜିଲ୍ଲାପାଳ ଓ ରାଜସ୍ୱ କମିଶନରଙ୍କୁ ଜଣାଇବା, ଜିଲ୍ଲାର ସ୍ଥାନୀୟ ସଂସ୍ଥାମାନଙ୍କର କାର୍ଯ୍ୟାବଳୀ ସମ୍ବନ୍ଧରେ

ପରିସଂଖ୍ୟାନ ସଂଗ୍ରହ କରିବା ଓ ରାଜ୍ୟ ସରକାରଙ୍କ ଦ୍ୱାରା ଅର୍ପିତ କାର୍ଯ୍ୟଗୁଡ଼ିକ ସମ୍ପାଦନ କରିବା ଇତ୍ୟାଦି ।

ଏ ସବୁ ବ୍ୟତୀତ ଜିଲ୍ଲା ପରିଷଦର କେତେକ ଉପଦେଶାତ୍ମକ କାର୍ଯ୍ୟ ମଧ୍ୟ ରହିଛି । ସେଗୁଡ଼ିକ ହେଲା - ଜିଲ୍ଲା ପରିଷଦ ଓ ପଞ୍ଚାୟତ ସମିତିଗୁଡ଼ିକୁ କର୍ତ୍ତବ୍ୟ ସମ୍ପାଦନ କରିବାରେ ଉପଦେଶ ଦେବା । ଜିଲ୍ଲାର ସମସ୍ତ ବିକାଶମୂଳକ କାର୍ଯ୍ୟ ପାଇଁ ସରକାରଙ୍କୁ ଉପଦେଶ ଦେବା ସହିତ ପଞ୍ଚାୟତସମିତି ଓ ପଞ୍ଚାୟତମାନଙ୍କର କାର୍ଯ୍ୟ ବଣ୍ଟନ ପାଇଁ ସରକାରଙ୍କୁ ସୁପାରିଶ କରିବା । ଜିଲ୍ଲା ପରିଷଦର କ୍ଷମତା ବିପୁଳ । ସେହି ତୁଳନାରେ ଦାୟିତ୍ୱ ମଧ୍ୟ ଅନେକ । ପଞ୍ଚାୟତ ସଂଗଠନରେ ସୁଦକ୍ଷ ସମନ୍ୱୟ ଏବଂ ନିୟନ୍ତ୍ରଣ ରକ୍ଷା ପାଇଁ ଜିଲ୍ଲା ପରିଷଦକୁ ସୃଷ୍ଟି କରାଯାଇଛି । ଗ୍ରାମ୍ୟ ଜୀବନକୁ ସରସ, ସୁନ୍ଦର, ପୂର୍ଣ୍ଣାଙ୍ଗ କରିବା ଦିଗରେ ଜିଲ୍ଲାପରିଷଦ ସର୍ବଦା କ୍ଷମତା ବିକେନ୍ଦ୍ରୀକରଣ ନୀତିକୁ ସମର୍ଥନ କରିବା ଉଚିତ ।

ପଞ୍ଚାୟତିରାଜ ସରକାରୀ କର୍ମଚାରୀ ଓ ବେସରକାରୀ ସଦସ୍ୟମାନଙ୍କୁ ନେଇ ଗଠିତ । ପ୍ରତ୍ୟେକ ଗଣତାନ୍ତ୍ରିକ ଶାସନ ପଦ୍ଧତିର ସଫଳତା ପାଇଁ ବେସରକାରୀ ସଦସ୍ୟ ଓ ସରକାରୀ କର୍ମଚାରୀଙ୍କ ମଧ୍ୟରେ ମଧୁର ସମନ୍ୱୟ ଏବଂ ସହଯୋଗ ଏକାନ୍ତ ଆବଶ୍ୟକ । ଗଣତନ୍ତ୍ରକୁ ପ୍ରାଥମିକ ସ୍ତରରୁ ଦୃଢ଼ ଓ ଶକ୍ତିଶାଳୀ କରିବାକୁ ହେଲେ ଏହି ସରକାରୀ କର୍ମଚାରୀ ଓ ବେସରକାରୀ ସଦସ୍ୟଙ୍କ ମଧ୍ୟରେ କ୍ଷୀର ନୀର ସମ୍ପର୍କ ଆବଶ୍ୟକ ।

ଜିଲ୍ଲାପାଳ ପଞ୍ଚାୟତିରାଜର କେନ୍ଦ୍ରବିନ୍ଦୁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜିଲ୍ଲାର ସର୍ବକ୍ଷମତା ସମ୍ପନ୍ନ ଅଧିକାରୀ ରୂପେ ସେ ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନ ଉପରେ ବିପୁଳ କ୍ଷମତା ଉପଭୋଗ କରନ୍ତି । ସେ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକରେ କାର୍ଯ୍ୟ ନିର୍ବାହ ଓ ସମନ୍ୱୟ କରନ୍ତି । ଜିଲ୍ଲାପାଳ ଗୋଷ୍ଠୀ ଉନ୍ନୟନ ଯୋଜନାର ମୁଖ୍ୟ ଅଧିକାରୀ । ଜିଲ୍ଲାପାଳ ପଞ୍ଚାୟତିରାଜ ଶାସନରେ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି । ସ୍ଥାନୀୟ ପଞ୍ଚାୟତ ସଂସ୍ଥାମାନଙ୍କ ଦ୍ୱାରା ଗୃହୀତ କୌଣସି ପ୍ରସ୍ତାବ କିମ୍ବା ବାଇ-ଲ-ରାଜ୍ୟସରକାରଙ୍କ ଦ୍ୱାରା ପ୍ରଣୀତ ଆଇନର ଉଲ୍ଲଙ୍ଘନରେ ଜିଲ୍ଲାପାଳ ସେହି ପ୍ରସ୍ତାବ କିମ୍ବା ବାଇ-ଲ-କୁ ବାତିଲ କରିଦେଇପାରିବେ । ଜିଲ୍ଲାପାଳ ପଞ୍ଚାୟତିରାଜ ସଂସ୍ଥାଗୁଡ଼ିକର ପରିଦର୍ଶନ କାର୍ଯ୍ୟ କରନ୍ତି । କୌଣସି ଅଭିଯୋଗ ପ୍ରମାଣିତ ହେଲେ ସେ ପଞ୍ଚାୟତିରାଜ ସଂସ୍ଥାର କର୍ମଚାରୀମାନଙ୍କୁ କାର୍ଯ୍ୟରୁ ଅନ୍ତର କରିଦେଇପାରିବେ । ଜିଲ୍ଲାପାଳ, ପଞ୍ଚାୟତ ସମିତି ଓ ପରିଷଦର କାର୍ଯ୍ୟକୁ ତଦାରଖ, ନିରୀକ୍ଷା କରି ପାରିବେ ଓ ଆବଶ୍ୟକୀୟ ନିର୍ଦ୍ଦେଶ ଦେଇପାରିବେ । ଜିଲ୍ଲାପାଳ ଜିଲ୍ଲାର ସମସ୍ତ ବିକାଶମୂଳକ ଯୋଜନାର ସମନ୍ୱୟକାରୀ ହୋଇଥିବାରୁ ପଞ୍ଚାୟତିରାଜ ସହିତ ତାଙ୍କର ନିରବଚ୍ଛିନ୍ନ ସମ୍ପର୍କ ରହିଛି । ସ୍ଥାନୀୟ ସ୍ୱାୟତ୍ତ ଶାସନ ମାଧ୍ୟମରେ ଗଣତାନ୍ତ୍ରିକ ପରମ୍ପରାକୁ ଅକ୍ଷୁଣ୍ଣ ରଖିବାରେ ଜିଲ୍ଲାପାଳଙ୍କର ଭୂମିକା ଅତ୍ୟନ୍ତ ମହତ୍ତ୍ୱ ଓ ଗୁରୁତ୍ୱପୂର୍ଣ୍ଣ ।

ପଞ୍ଚାୟତିରାଜ ଶାସନରେ ମଣ୍ଡଳ ଅଧିକାରୀ (ବି.ଡି.ଓ.)ଙ୍କର ଭୂମିକା ମଧ ମହତ୍ତ୍ୱପୂର୍ଣ୍ଣ । ମଣ୍ଡଳ ଅଧିକାରୀ ପଞ୍ଚାୟତ ସମିତିର ମୁଖ୍ୟ କାର୍ଯ୍ୟ ନିର୍ବାହୀ ଅଧିକାରୀ । ତାଙ୍କର ସାମର୍ଥ୍ୟ, କୌଶଳ, ସଂହତି, କର୍ତ୍ତବ୍ୟ ନିଷ୍ଠା, ପ୍ରଗତିବାଦ ଏବଂ ସାଧୁତା ଉପରେ ପଞ୍ଚାୟତିରାଜ ସଫଳତା ନିର୍ଭର କରେ । ମଣ୍ଡଳ ଅଧିକାରୀ ପଞ୍ଚାୟତ ସମିତି ସମ୍ପାଦକ ଓ ମଣ୍ଡଳର (ବ୍ଲକ) ମୁଖ୍ୟନିର୍ବାହୀ ଅଧିକାରୀ । ପଞ୍ଚାୟତ ସମିତି ଓ ତାହାର କମିଟିଗୁଡ଼ିକର ନିଷ୍ପତ୍ତି ବାସ୍ତବ କ୍ଷେତ୍ରରେ ରୂପାୟନ ପାଇଁ ମଣ୍ଡଳ ଅଧିକାରୀ ଦାୟୀ । ସେ ପଞ୍ଚାୟତ ସମିତିର ପ୍ରଶାସନିକ ମୁଖ୍ୟ । ସେ ସମିତିର କର୍ମଚାରୀ ଓ ସରକାରୀ ପଦାଧିକାରୀମାନଙ୍କ ଉପରେ ଶୃଙ୍ଖଳାଗତ ନିୟନ୍ତ୍ରଣ ରକ୍ଷା କରନ୍ତି । ସମିତିର ବାର୍ଷିକ ଆୟବ୍ୟୟ ଅଟକଳ (ବଜେଟ) ମଣ୍ଡଳ ଅଧିକାରୀ ପ୍ରସ୍ତୁତ କରନ୍ତି । ସମସ୍ତ ନେଣ ଦେଣ ତାଙ୍କରି ନାମରେ ଚାଲେ । ସମିତିର ସମସ୍ତ ଅର୍ଥର ଟିକିନିଖି ବିବରଣୀ ଓ ଆୟ-ବ୍ୟୟ ପାଇଁ ସେ ମୁଖ୍ୟତଃ ଦାୟୀ ।

ପଞ୍ଚାୟତ ସମିତିର ନିର୍ବାଚିତ ସଂସ୍ଥା ସମ୍ବନ୍ଧରେ ମଣ୍ଡଳ ଅଧିକାରୀଙ୍କର କେତେକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ରହିଛି । ସେ ସମିତିର ଆଲୋଚନା ଓ ବିତର୍କରେ ଅଂଶ ଗ୍ରହଣ କରନ୍ତି । କିନ୍ତୁ ସେଥିରେ ସେ ଭୋଟ ଦେଇପାରିବେ ନାହିଁ । ମଣ୍ଡଳ ଅଧିକାରୀ ଇଚ୍ଛା କଲେ ସ୍ୱତନ୍ତ୍ର ଅଧିବେଶନ ଡାକି ପାରିବେ । ଚେୟାରମ୍ୟାନଙ୍କର ପରାମର୍ଶରେ ମଣ୍ଡଳ ଅଧିକାରୀ ଅଧିବେଶନର କାର୍ଯ୍ୟକ୍ରମ ପ୍ରସ୍ତୁତ କରନ୍ତି । ପଞ୍ଚାୟତ ସମିତିର ମଣ୍ଡଳ ସ୍ତରୀୟ ଷ୍ଟାଣ୍ଡିଂ କମିଟିରେ ସେ ସଦସ୍ୟ ଅଟନ୍ତି । ସେ ଏସ.ଡି.ଓ. ଏବଂ ଜିଲ୍ଲାପାଳଙ୍କୁ ସମିତିର ସର୍ବଶେଷ ବିକାଶମୂଳକ କାର୍ଯ୍ୟ ସମ୍ବନ୍ଧରେ ସୂଚିତ କରାଇଥାଆନ୍ତି ।

ପଞ୍ଚାୟତିରାଜ ଓ ଗୋଷ୍ଠୀ ଉନ୍ନୟନ ଦୁଇ ଯମଜଭ୍ରାତା । ଗ୍ରାମବାସୀମାନଙ୍କୁ ସେମାନଙ୍କର ଅଜ୍ଞତା, ଦାରିଦ୍ର୍ୟ ରକ୍ଷଣଶୀଳତା ଓ ଯୁଗ ଯୁଗ ଧରି ଶିକାର ହୋଇଥିବା କୁସଂସ୍କାରରୁ ମୁକ୍ତ କରିବାରେ ପଞ୍ଚାୟତିରାଜ ଓ ଗୋଷ୍ଠୀ ଉନ୍ନୟନ ସଂସ୍ଥା ମିଳିତ ଉଦ୍ୟମ କରିଥାଆନ୍ତି । ଗ୍ରାମାଞ୍ଚଳର ପୁନର୍ଗଠନ ଓ ପୁନର୍ଜୀବିକରଣ ଉଭୟ ସଂସ୍ଥାର ସକ୍ରିୟ ସହଯୋଗ ଦ୍ୱାରା ସମ୍ଭବ ହୋଇପାରେ ।

ଗୋଷ୍ଠୀ ଉନ୍ନୟନ ବିଭାଗ ଅଧୀନରେ ପଞ୍ଚାୟତିରାଜ କାର୍ଯ୍ୟ କରେ । ଗୋଷ୍ଠୀ ଉନ୍ନୟନ ବିଭାଗର ମୁଖ୍ୟକାର୍ଯ୍ୟ ହେଲା - ପଞ୍ଚାୟତିରାଜ, ଗ୍ରାମଗୋଷ୍ଠୀ ଉନ୍ନୟନ ଯୋଜନା, ଗୋଷ୍ଠୀ ବିକାଶ ଏବଂ ପଞ୍ଚାୟତରାଜ ସଂଗଠନ ସହିତସଂପୃକ୍ତ ସରକାରୀ ଏବଂ ବେସରକାରୀ କର୍ମଚାରୀମାନଙ୍କ ପାଇଁ ପ୍ରଶିକ୍ଷଣ ବ୍ୟବସ୍ଥା । ଗୋଷ୍ଠୀ ଉନ୍ନୟନ ଯୋଜନା ଯେକୌଣସି ସ୍ଥାନୀୟ କଲ୍ୟାଣକର କାର୍ଯ୍ୟକ୍ରମ ସହିତ ସଂଶ୍ଳିଷ୍ଟ । ଗୋଷ୍ଠୀ ଚିନ୍ତାଧାରା ଗୋଷ୍ଠୀ ପ୍ରଚେଷ୍ଟା ଓ ଗୋଷ୍ଠୀ ଉପକାର ଉପରେ ଏଥିରେ ବିଶେଷ ଗୁରୁତ୍ୱ ଦିଆଯାଇଥାଏ । ପକ୍କାରାସ୍ତା ନିର୍ମାଣ, ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା, ସ୍କୁଲଗୃହ ନିର୍ମାଣ, ପ୍ରୌଢ଼ଶିକ୍ଷା କେନ୍ଦ୍ର ପ୍ରଚଳନ ନାରୀମଙ୍ଗଳ ସମିତି ଗଠନ ଏବଂ କୃଷିର ଆଧୁନିକୀକରଣ ଗୋଷ୍ଠୀ ଉନ୍ନୟନ ଯୋଜନାର କେତେକ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ।

ପଞ୍ଚାୟତିରାଜ ଓ ଗ୍ରାମାଞ୍ଚଳ ରାଜନୀତି ପରସ୍ପର ସହିତ ଜଡ଼ିତ । ଗଣତନ୍ତ୍ରର ବିକେନ୍ଦ୍ରୀକରଣ ଓ ଗ୍ରାମାଞ୍ଚଳର ଉନ୍ନତି ସାଧନ ପଞ୍ଚାୟତିରାଜ ମୂଳଲକ୍ଷ୍ୟ । ପଞ୍ଚାୟତିରାଜର ପ୍ରଧାନ ଉଦ୍ଦେଶ୍ୟ ହେଲା ଗ୍ରାମାଞ୍ଚଳ ବିକାଶ ନୀତିର ଗଣତାନ୍ତ୍ରିକ ପରିଚାଳନା । ପ୍ରାଥମିକ ସ୍ତରରେ ଗଣତନ୍ତ୍ରକୁ ଦୃଢ଼ କରିବା ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନର ଲକ୍ଷ୍ୟ । ଲୋକପ୍ରିୟତା ଓ ଜନସମର୍ଥନ ଦିଗରେ ସ୍ଥାନୀୟ ନେତୃତ୍ୱର ବିଶେଷ

ସୁଯୁକ୍ତ ରହିଛି । ଗ୍ରାମ ପୁନର୍ଗଠନରେ ସ୍ଥାନୀୟ ଅଧିବାସୀ ଅଂଶ ଗ୍ରହଣ କରିବା ଗୁରୁତ୍ୱପୂର୍ଣ୍ଣ । ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣ ବ୍ୟବସ୍ଥାରେ କ୍ଷମତା ଲୋକମାନଙ୍କୁ ହସ୍ତାନ୍ତର କରାଯାଇଥାଏ ।

ଗ୍ରାମାଞ୍ଚଳ ରାଜନୀତିର ଅନ୍ୟ ଲକ୍ଷଟି ହେଲା ଗଣତନ୍ତ୍ରର ବିକେନ୍ଦ୍ରୀକରଣ । ଉତ୍ତମ ଶାସନ ପାଇଁ ଦଳୀୟ ରାଜନୀତିର ଆବଶ୍ୟକତା ରହିଛି । ସ୍ଥାନୀୟ ସଂସ୍ଥାମାନଙ୍କର କାର୍ଯ୍ୟ କ୍ଷମତାର ଫଳପ୍ରଦ ଭୂମିକା ଓ ସେମାନଙ୍କର ଉନ୍ନତ ଧରଣର ସେବାପ୍ରଦାନ କେବଳ ସାଂଗଠନିକ ପ୍ରଣାଳୀ, ଆର୍ଥିକ କ୍ଷମତା, ରାଜସ୍ୱ ନିୟନ୍ତ୍ରଣ, ପ୍ରଶାସନିକ ଓ ବୈଷୟିକ ନିପୁଣତା ଉପରେ ନିର୍ଭର କରେ ନାହିଁ ବରଂ ନାଗରିକମାନଙ୍କ ଆଗ୍ରହ, ଉଦ୍ଦୀପନା ଓ ସହଯୋଗ ଉପରେ ନିର୍ଭର କରେ ।

କେତେକଙ୍କର ମତରେ ସଂଗଠିତ ରାଜନୀତି ଦଳର ହସ୍ତକ୍ଷେପ ଯେତେକମ ହେବ, ପଞ୍ଚାୟତିରାଜର ସଫଳତା ସେତିକି ଅଧିକ ହେବ । ପ୍ରକୃତରେ ଲକ୍ଷ୍ୟକଲେ ଦେଖାଯିବ ଯେ ଗ୍ରାମ ସ୍ୱାୟତ୍ତ ଶାସନ ବା ଗ୍ରାମ ପଞ୍ଚାୟତର ଭୂମିକା ଲୋକମଙ୍ଗଳ କାର୍ଯ୍ୟରେ ଗୌଣ ହୋଇପଡ଼ିଛି । କାରଣ ରାଜନୀତିକ ଦଳମାନେ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକୁ ନିଜ ରାଜନୀତିକ ଅଭିଳାଷ ପୂରଣ ପାଇଁ ଅସ୍ତ୍ର ରୂପେ ବ୍ୟବହାର କରୁଛନ୍ତି । ରାଜନୀତିକ ଦଳମାନେ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ କ୍ଷମତାର ମଞ୍ଚଭୂମି ରୂପେ ବ୍ୟବହାର କରୁଛନ୍ତି । କିନ୍ତୁ ଗଣତନ୍ତ୍ରର ମୂଳ ଭିତ୍ତି ଓ ପ୍ରବେଶ ଦ୍ୱାର ପଞ୍ଚାୟତିରାଜ । ରାମ ରାଜ୍ୟ ସ୍ଥାପନ, ଦେଶରେ ନିର୍ମଳ ଗଣତନ୍ତ୍ରର ପ୍ରତିଷ୍ଠା ପାଇଁ ଏହା ଉଦ୍ଦିଷ୍ଟ । ଏଣୁ ଏହା ରାଜନୀତିକ ଦଳମାନଙ୍କର କ୍ଷମତା କବଳରୁ ମୁକ୍ତ ରହିବା ଉଚିତ ।

ସାଡ଼ଲମ୍ କମିଟି ଏ ସମ୍ବନ୍ଧରେ ମତ ଦେଇଛନ୍ତି - ପଞ୍ଚାୟତ ନିର୍ବାଚନମାନଙ୍କରେ ରାଜନୀତିକ ଦଳର ହସ୍ତକ୍ଷେପ ପାଇଁ କୌଣସି ଆଇନଗତ ପ୍ରତିବନ୍ଧକ ରହିବା ଉଚିତ ନୁହେଁ । ପଞ୍ଚାୟତିରାଜ ନିର୍ବାଚନ ସମ୍ବନ୍ଧରେ ରାଜନୀତିକ ଦଳମାନଙ୍କର କୌଣସି ପ୍ରତିନିଧିତ୍ୱ ରହିବା ଅନାବଶ୍ୟକ ।

ବାସ୍ତବ କ୍ଷେତ୍ରରେ ପଞ୍ଚାୟତି ରାଜରୁ ରାଜନୀତିର ମୂଳୋତ୍ପାଟନ କରାଯାଇପାରିବ ନାହିଁ । ଅବଶ୍ୟ ପଞ୍ଚାୟତିରାଜ କ୍ଷମତାର ନୂତନ ଦିଗ ଖୋଲି ଦେଇଛି । ଏହାଦ୍ୱାରା ବ୍ୟକ୍ତି ବିଶେଷ କିମ୍ବା ରାଜନୀତିକ ଅନୁଷ୍ଠାନମାନେ ପଞ୍ଚାୟତିରାଜଠାରୁ କ୍ୱଚିତ ଦୂରେଇ ଯାଇ ପାରିବେ । ଯେଉଁ ରାଜନୀତିକ ଦଳମାନେ ରାଜ୍ୟର ରାଜନୀତିରେ ଲାଗିରହିବା ପାଇଁ ଆଗେଇ ଆସିଥାଆନ୍ତି, ସେମାନେ କେବେହେଲେ ପ୍ରାଥମିକ ସ୍ତର ଗଣତନ୍ତ୍ର ଠାରୁ ଦୂରରେ ରହିପାରିବେ ନାହିଁ । ଏଣୁ ପଞ୍ଚାୟତିରାଜରେ ରାଜନୀତିକ ଦଳମାନଙ୍କର ଭୂମିକା ଓ ପ୍ରଭାବ ଅପରିହାର୍ଯ୍ୟ । ସ୍ଥାନୀୟ ସ୍ୱାୟତ୍ତ ଶାସନ ବ୍ୟାପାରରେ ରାଜନୀତିକ ଦଳମାନଙ୍କର ଯାହା ବିଶ୍ଳେଷଣ ଦିଆଯାଇଛି । ଏଣୁ ସ୍ଥାନୀୟ ସମସ୍ୟାଗୁଡ଼ିକର ଅଣ ରାଜନୀତିକ ସମାଧାନ ସମ୍ଭବ ହେଉ ନାହିଁ । ସ୍ଥାନୀୟ ସଂସ୍ଥାମାନଙ୍କର ନୀତିଗତ ନିଷ୍ପତ୍ତି କ୍ଷେତ୍ରରେ ରାଜନୀତିକ ପ୍ରଭାବକୁ ଏଡ଼ାଇ ଦେବା ସମ୍ଭବ ହେଉ ନାହିଁ ।

ସ୍ୱାଧୀନତା ପୂର୍ବରୁ ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନ କାର୍ଯ୍ୟ କରୁଥିଲା । କିନ୍ତୁ ବିଦେଶୀ ଶାସନର ପ୍ରଭାବରେ ଗ୍ରାମବାସୀମାନେ ନିଜସ୍ୱ ଶାସନ ରୀତିରେ ଅଂଶ ଗ୍ରହଣ କରିବା ପାଇଁ ସୁଯୋଗ ପାଉନଥିଲେ । କେବଳ ଅଭିଜାତ ବଂଶର ବ୍ୟକ୍ତିମାନେ ଗ୍ରାମାଞ୍ଚଳ ରାଜନୀତି ପ୍ରତି ଆକୃଷ୍ଟ ହେଉଥିଲେ । ଏହା ଫଳରେ ଗ୍ରାମ୍ୟ ରାଜନୀତି କ୍ଷେତ୍ର ମୁଷ୍ଟିମେୟ ଲୋକଙ୍କର କ୍ରୀଡ଼ାସ୍ଥଳୀ ଥିଲା । ସ୍ୱାଧୀନତା ପରେ ଗଣତନ୍ତ୍ରର ବିକାଶ ଓ ବିକେନ୍ଦ୍ରୀକରଣ ଫଳରେ ଗ୍ରାମ୍ୟବିକାଶ ଓ ଗ୍ରାମାଞ୍ଚଳ ଶାସନ ପରିଚାଳନା ଦିଗକୁ ଜନତାର ରାଜନୀତିକ ସଚେତନତା ସୃଷ୍ଟି କରିବା ସମ୍ଭବ ହେଲା । ଏଣୁ ଗ୍ରାମାଞ୍ଚଳ ରାଜନୀତିରେ ନେତୃମାନେ ଦଳୀୟ ସ୍ୱୀକୃତି ଲାଭ କଲେ ।

ଗଣତନ୍ତ୍ର ସର୍ବଦା ଜନମତ ଦ୍ୱାରା ପ୍ରଭାବିତ ହୋଇଥାଏ । ଗ୍ରାମ୍ୟ ଜନ ମତରେ ସମଷ୍ଟିର ନାମ ଜାତୀୟ ଜନମତ । ଗ୍ରାମାଞ୍ଚଳ ଅଧିବାସୀ ମାନଙ୍କର ମଙ୍ଗଳ ପାଇଁ ଉଦ୍ଦିଷ୍ଟ ସ୍ୱମତ ସୁନିର୍ଦ୍ଦିଷ୍ଟ ଭାବରେ ପ୍ରକାଶିତ ହେଲେ ତାହା ଜାତୀୟ ଜନମତ ନାମ ଧାରଣ କରେ । ରାଜନୀତିକ ଦଳମାନେ ଲୋକଙ୍କର ଏହି ମତକୁ ନିର୍ଦ୍ଦିଷ୍ଟ ପଥରେ ପରିଚାଳିତ କରନ୍ତି । ଗ୍ରାମାଞ୍ଚଳର ସମସ୍ୟା ଗୁଡ଼ିକ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କରେ ଆଲୋଚିତ ହୋଇ ସମାଧାନର ପନ୍ଥା ବାହାର କରାଯାଏ । ଗ୍ରାମାଞ୍ଚଳ ସମସ୍ୟାକୁ ଜାତୀୟ ସମସ୍ୟାର ଅଙ୍ଗ ବିଶେଷ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗ୍ରାମ୍ୟ ସମାଜର ବିଭିନ୍ନ ଜାତି, ଗୋଷ୍ଠୀ ଏବଂ ଧର୍ମ ଗୋଷ୍ଠୀକୁ ଏକଛତ୍ରତଳେ ରଖିବା ଗଣତନ୍ତ୍ରର ମୂଳ ଲକ୍ଷ୍ୟ । ରାଜନୀତି ଦଳ ଏହି ଦାୟିତ୍ୱ ବହନ କରିଥାଆନ୍ତି । ଗ୍ରାମ୍ୟ ସମାଜର ଆଧୁନିକୀକରଣରେ ରାଜନୀତିକ ଦଳର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଗ୍ରାମାଞ୍ଚଳ ବିକାଶ ଯୋଜନାର ଗତିଶୀଳତା ଗ୍ରାମ୍ୟ ନେତୃତ୍ୱର ଦକ୍ଷତା ଓ ଦୂରଦୃଷ୍ଟି ଉପରେ ନିର୍ଭର କରେ । ଏଣୁ ଗ୍ରାମ୍ୟ ନେତୃତ୍ୱ ସୃଷ୍ଟି ପାଇଁ ରାଜନୀତିକ ଦଳମାନଙ୍କର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । କିନ୍ତୁ କେତେକ ରାଜନୀତି ଦଳ ନିଜର ଉଦ୍ଦେଶ୍ୟ ପୂରଣ ପାଇଁ ହିଂସା ଓ ଶକ୍ତିର ଆଶ୍ରୟ ନିଅନ୍ତି । ଏହା ଫଳରେ ସ୍ଥାନୀୟ ସଂସ୍ଥାଗୁଡ଼ିକ ଦଳୀୟ ଗୋଷ୍ଠୀ କନ୍ଦଳର ଶିକାର ହୋଇ ଜନସେବାଠାରୁ ଦୂରେଇ ଯାଆନ୍ତି । ଏହା ସ୍ୱାୟତ୍ତ ଶାସନର ମହାନ୍ ଉଦ୍ଦେଶ୍ୟକୁ ନଷ୍ଟ କରିଦିଏ । ଏଣୁ ଗଣତନ୍ତ୍ରର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ସ୍ଥାନୀୟ ଅନୁଷ୍ଠାନଗୁଡ଼ିକ ଦଳୀୟ ସଂକୀର୍ଣ୍ଣ ରାଜନୀତି ଓ ଜାତିଆଣ ସ୍ୱାର୍ଥଠାରୁ ଦୂରେଇ ଯିବା ଆବଶ୍ୟକ । ଏ କ୍ଷେତ୍ରରେ ରାଜନୀତି ଦଳ ନୀତିହୀନ ନହୋଇ ଗ୍ରାମ୍ୟ ସମାଜ ଓ ଗ୍ରାମ୍ୟ ଶାସନକୁ ବଞ୍ଚାଇ ରଖିବା ପାଇଁ ଚେଷ୍ଟା କରିବା ଉଚିତ । କାରଣ ନିର୍ମଳ ପଞ୍ଚାୟତିରାଜ ମହାତ୍ମା ଗାନ୍ଧୀଙ୍କର କଳ୍ପିତ ରାମରାଜ୍ୟର ମୂଳଶାଳା ।

ଓଡ଼ିଶା କୋହିନୂର ପ୍ରେସ ପତ୍ରିକା ପ୍ରକାଶକ
ସୂତାହାଟ,
କଟକ - ୭୫୩୦୦୦

(୧୯୯୬-୯୭ ବର୍ଷ ପାଇଁ ହିନ୍ଦୀ ଭାଷାରେ ଲିଖିତ ପ୍ରବନ୍ଧ ମଧ୍ୟରେ ସର୍ବଭାରତୀୟ ସ୍ତରରେ ସର୍ବୋତ୍କୃଷ୍ଟ ରଚନା ରୂପେ ପୁରସ୍କୃତ ।)

OGP—MP—PTS (I&PR) 51—8,000—19-1-1998



ରାଜଭବନ ଅଭିଷେକ ଗୃହରେ ମାନ୍ୟବର ମୁଖ୍ୟ ବିଚାରପତି ଶ୍ରୀଶୈଳେନ୍ଦ୍ର ନାଥ ଫୁକନ
ପଶ୍ଚିମବଙ୍ଗର ରାଜ୍ୟପାଳ ଶ୍ରୀ କେ.ଭି. ରଘୁନାଥ ରେଡ୍ଡୀଙ୍କୁ ଓଡ଼ିଶାର ରାଜ୍ୟପାଳ ରୂପେ ଶପଥ
କରାଉଛନ୍ତି




ଶହୀଦ୍ ସଂଗ୍ରାମୀ ସଦନ ଭୁବନେଶ୍ୱରଠାରେ ଏକାଦଶ ସ୍ୱାଧୀନତା ସଂଗ୍ରାମୀ ଦିବସ
ମହୋତ୍ସବ-୯୮ ପାଳନ ଅବସରରେ ଉପମୁଖ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ
ଏକ ସ୍ମରଣିକା ଉନ୍ମୋଚନ କରୁଛନ୍ତି

Licence No. C.R.N.P. 5—Licensed to post without Pre-payment



ଓଡ଼ିଶାର ବରୁଣେଇଠାରେ ଅନୁଷ୍ଠିତ ଭାରତସ୍କାଉଟ୍ ଏବଂ ଗାଇଡ୍‌ର ତୃତୀୟ ପାର୍କ ଏବଂ ତ୍ରୟୋଦଶ ଜାତୀୟ ଜାମ୍ବୋରୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଓ ଭାରତର ପୂର୍ବତନ ସ୍ୱରାଷ୍ଟ୍ରମନ୍ତ୍ରୀ ଏସ.ବି. ଚୌହାନ ଉପସ୍ଥିତ ଅଛନ୍ତି



କଟକ ଜବାହରଲାଲ ନେହେରୁ ଇନଡୋର ଷ୍ଟାଡିୟମଠାରେ ଅନୁଷ୍ଠିତ ଓଡ଼ିଶା ଗ୍ରାମପଞ୍ଚାୟତ କର୍ମଚାରୀ ସଂଘର ରାଜ୍ୟସ୍ତରୀୟ ସମାବେଶରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଭାଷଣ ଦେଉଛନ୍ତି

PRINTED AT ORISSA GOVERNMENT PRESS, CUTTACK-753010

